# ସାରଳା ରତ୍ନଭଣ୍ଡାର
# ରସ ସାଗର

*ଅଭିମତ*

ପ୍ରଫେସର ଶ୍ରୀଯୁକ୍ତ ବିଧୁଭୂଷଣ ଦାସ

*ସଂକଳୟିତା*

ବିନୋଦ ବିହାରୀ ଦାସ

# ସାରଳା ରତ୍ନଭଣ୍ଡାର ରସସାଗର

# सारला रत्न भण्डार रस सागर

*ଉପଦେଷ୍ଟା, ପୃଷ୍ଠପୋଷକ, ସ୍ମାରକ ଓ ନିର୍ଦ୍ଦେଶକ:*

## ମା' ସାରଳା


| | |
|---|---|
| *ପ୍ରସ୍ତାବନା ଓ ସଂଯୋଜକ* | ଶ୍ରୀ ଚକ୍ରଧର ପ୍ରଧାନ |
| *ସମ୍ପାଦନା ନିର୍ଦ୍ଦେଶକ* | ଶ୍ରୀ ମହେଶ୍ୱର ମୂଳିଆ |
| *କାର୍ଯ୍ୟକାରୀ ସମ୍ପାଦକ* | ଶ୍ରୀ ନିର୍ମଳକାନ୍ତ ମହାନ୍ତି |
| *ପ୍ରଚ୍ଛଦ ଶିଳ୍ପୀ* | ଶ୍ରୀ ଶିବ ପାଣିଗ୍ରାହୀ |
| *ଡି.ଟି.ପି.* | ଶ୍ରୀ ଜ୍ଞାନ ପ୍ରକାଶ ପତି |
| *ମୁଦ୍ରଣ* | ମୟୂର ଅଫସେଟ୍ ପ୍ରିଣ୍ଟର୍ସ<br>ଡି ୧/୧, ମଞ୍ଚେଶ୍ୱର ଶିଳ୍ପାଞ୍ଚଳ, ଭୁବନେଶ୍ୱର |
| *ପ୍ରକାଶ କାଳ* | ଗଣେଶ ଚତୁର୍ଥୀ (୧୭-୯-୧୯୯୬) |
| *ଦ୍ୱିତୀୟ ପ୍ରକାଶନ* | ପ୍ରଥମାଷ୍ଟମୀ (୩-୧୨-୧୯୯୬) |
| *ବ୍ୟବସାୟ ପରାମର୍ଶକ* | ଶ୍ରୀ ବନଓ୍ୱାରି ଲାଲ ଅଗ୍ରଓ୍ୱାଲ |
| *ପ୍ରକାଶକ ଓ ସର୍ବସ୍ୱତ୍ୱାଧିକାରୀ ©* | ବିପିନ ବିହାରୀ ଏଜୁକେସନାଲ ଆଣ୍ଡ ପବ୍ଲିକ୍ ଚେରିଟେବୁଲ ଟ୍ରଷ୍ଟ (ରେଜିଷ୍ଟାର୍ଡ଼), ବାଗଲପୁର, ପୋ: ଅଠାନ୍ତର-୭୫୨୧୦୨ |
| *ପୃଷ୍ଠଭୂମିରେ* | ଭାନୁ, ଶିରୀଶ, ଦେବେନ୍ଦ୍ର, ରତନ, ଅବନୀ, ଭୁବନ, ସୁବିମଳ, ବୈଦ୍ୟନାଥ, ପୀତାମ୍ବର, ମାଧବ, ସୁନାକର, ମିଞ୍ଜୁ ପ୍ରଭୃତି । |
| *ମୂଲ୍ୟ* | ସାଧାରଣ : ସତସ୍ତରୀ ଟଙ୍କା ମାତ୍ର<br>ବନ୍ଧେଇ : ପଞ୍ଚାନବେ ଟଙ୍କା ମାତ୍ର |

# ଉତ୍ସର୍ଗ

ଅର୍ଦ୍ଧଶତାବ୍ଦୀ ପୂର୍ବର ଆମ ଛାତ୍ରସମାଜର ଯେଉଁ ସ୍ୱାଧୀନଚେତା ଟାଣୁଆ ଛାତ୍ରନେତା, ସ୍ୱାଧୀନତା ପୂର୍ବରୁ, ରେଭେନ୍ସା କଲେଜର ପଶ୍ଚିମ ଛାତ୍ରାବାସର ସ୍ୱାଧୀନତା ଘୋଷଣା କରିପାରିଥିଲେ; ଯାହାର ସ୍ନେହ ଓ ପ୍ରେରଣାକୁ ପାଥେୟ କରି ଆମେ କଲମଧରି ଲେଖିବା ପାଇଁ ଉତ୍ସାହିତ ହୋଇଥିଲୁ, ସେହି ନିର୍ଭୀକ ସାମ୍ବାଦିକ, 'ପୌରୁଷ'ର ପ୍ରାଣ-ପ୍ରତିଷ୍ଠାତା, ପ୍ରଜ୍ଞାସମ୍ପନ୍ନ, ବିଦ୍ୟାବାଗୀଶ, ସାରସ୍ୱତ ସାଧକ, ସଂସ୍କୃତ ଭାଷାବିତ୍, ଓଡ଼ିଆ ଭାଷା ଓ ସଂସ୍କୃତିର ପୃଷ୍ଠପୋଷକ, ଜନନାୟକ, ଲେଖକ, ରାଜନୀତିଜ୍ଞ, ଓଡ଼ିଶାର ଦୀର୍ଘତମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ କରକମଳରେ ଏହି କ୍ଷୁଦ୍ର ପୁସ୍ତିକାକୁ ଅର୍ପଣ କରୁଛି ।

- ସଙ୍କଳୟିତା -

# ସୂଚୀପତ୍ର

ପ୍ରଫେସର ଶ୍ରୀଯୁକ୍ତ ବିଧୂଭୂଷଣ ଦାସ
୩୧୯୫, ଶହିଦ ନଗର, ଭୁବନେଶ୍ୱର

# ଅଭିମତ

ଶ୍ରଦ୍ଧେୟ ବିନୋଦ ବିହାରୀ ଦାସଙ୍କଦ୍ୱାରା ସଂକଳିତ ''ସାରଳା ରତ୍ନ ଭଣ୍ଡାର ଓ ରସ ସାଗର'' ଗୋଟିଏ ମୂଲ୍ୟବାନ ଗ୍ରନ୍ଥ'। ଏହା ପଛରେ ରହିଛି ତାଙ୍କର ଗବେଷଣା ପାଇଁ ଅଦମ୍ୟ ଉତ୍ସାହ। ଯେଉଁ ଗବେଷଣା ଲୋକ ମଙ୍ଗଳ ପାଇଁ ଉଦ୍ଦିଷ୍ଟ। ଚାଣକ୍ୟଙ୍କର ଅର୍ଥଶାସ୍ତ୍ର ପୁରାଣ, ଭାଗବତ ଏବଂ ନାନା ପ୍ରକାର ଲୋକସାହିତ୍ୟରୁ ସେ ଅର୍ଥନୀତି, ସମାଜତତ୍ତ୍ୱ, ନୃତତ୍ତ୍ୱ, ରାଜନୀତି ଓ ଲୋକାଚାର ସହିତ ସମ୍ପୃକ୍ତ ଅନେକ ମୂଲ୍ୟବାନ ଉକ୍ତିକୁ ସଂଗ୍ରହ କରିଛନ୍ତି ଏବଂ ଆଧୁନିକ ପାଠକମାନଙ୍କ ମଧ୍ୟରେ ତାକୁ ପରିବେଷଣ କରିବାକୁ ଉଦ୍ୟମ କରିଛନ୍ତି। ଏହି ତଥ୍ୟ ଓ ମୂଲ୍ୟ ଭିତ୍ତିକ ସଂକଳନ ପାଇଁ ସେ ସମସ୍ତଙ୍କର ଅଭିନନ୍ଦନର ପାତ୍ର।

ଏହି ସଂକଳନର ବଡ଼ ତାତ୍ପର୍ଯ୍ୟ ହେଉଛି , ଆଧୁନିକ ଓ ଉତ୍ତର ଆଧୁନିକ ଯୁଗର ପାଠକମାନଙ୍କୁ ଗୋଟିଏ ଜାତିର ଅବଚେତନ ସ୍ତରରେ ଯେଉଁ ପ୍ରଜ୍ଞା ଲୁକ୍କାୟିତ ଥାଏ ତାହା ସହିତ ପରିଚିତ କରାଇବା। ଆଜି ଯେଉଁ ଯାନ୍ତ୍ରିକ ଓ ଭୌତିକ ସଭ୍ୟତା ସାରା ପୃଥିବୀରେ ବ୍ୟାପିଛି, ତାହା ମଣିଷର ପାରମ୍ପରିକ ମୂଲ୍ୟବୋଧକୁ ପ୍ରଚଣ୍ଡ ଭାବରେ ଆନ୍ଦୋଳିତ କରୁଛି ଏବଂ ମଣିଷକୁ କକ୍ଷଚ୍ୟୁତ କରି ବିଚ୍ଛିନ୍ନତା, ନିଃସଙ୍ଗତା, ହିତାହିତ ଜ୍ଞାନ ଶୂନ୍ୟତା ପରି ସାମାଜିକ ବ୍ୟାଧିଦ୍ୱାରା ଆକ୍ରାନ୍ତ କରି ତାକୁ ଅମଣିଷରେ ପରିଣତ କରୁଛି। ଏହିଥିରୁ ସୃଷ୍ଟି ହେଉଛି ପ୍ରଜନ୍ମ ବ୍ୟବଧାନ (Generation gap)। ଏହି ନୂତନ ପ୍ରଜନ୍ମର ସଦସ୍ୟମାନେ ଇତିହାସ, ପରମ୍ପରା, ଶାଶ୍ୱତ ମୂଲ୍ୟବୋଧ ଉପରେ ଆସ୍ଥା ରଖନ୍ତି ନାହିଁ। କାରଣ ବର୍ତ୍ତମାନ ଆକାଶରେ ଯେଉଁ ନୂଆ ସୂଚନା ରାଜପଥର (Highway of skills) ଆବିର୍ଭାବ ହୋଇଛି ଏବଂ ଯେଉଁ ରାଜପଥ ଦେଇ କୋଟି କୋଟି ସୂଚନା ଏହି ନୂତନ ଯୁଗର ଅଧିବାସୀମାନଙ୍କୁ ବିବ୍ରତ କରୁଛି, ସେମାନଙ୍କୁ ଛିନ୍ନମୂଳ ପ୍ରାଣୀରେ ପରିଣତ କରୁଛି ଏବଂ ସାମୂହିକ ଓ ବ୍ୟକ୍ତିଗତ ଜୀବନରେ ସଂକଟ ସୃଷ୍ଟି କରୁଛି। ସେହି ସଙ୍କଟରୁ ଉଦ୍ଧାର ପାଇବା ପାଇଁ ଯେଉଁ ବୁଦ୍ଧିଦୀପ୍ତ, ଚିନ୍ତାଶୀଳ ବ୍ୟକ୍ତିମାନେ ସେମାନଙ୍କର ବହୁମୂଲ୍ୟ ପରାମର୍ଶ ଦେବାକୁ ଲାଗିଛନ୍ତି ସେମାନଙ୍କର ଲେଖାରେ କେତୋଟି ମୁଖ୍ୟ ବିଷୟ ହେଉଛି; ଏହି ଯାନ୍ତ୍ରିକ ସଭ୍ୟତା ଗୋଟିଏ ଗଣ ସମାଜ (Mass Society) ସୃଷ୍ଟି କରି ମଣିଷକୁ ତାର ବ୍ୟକ୍ତିତ୍ୱ ଲୋପ କରାଇ ଗଣମଣିଷର (Mass

man) ରେ ପରିବର୍ତ୍ତନ କରିଛି ଏବଂ ଏହି ଗଣମଣିଷ ପାଖରେ ନୀତି, ନ୍ୟାୟ, ବିବେକର ଗୁରୁତ୍ୱ ରହୁନାହିଁ ।

ଆଜି ପୃଥିବୀକୁ ଭୂମଣ୍ଡଳୀୟ ଗ୍ରାମ (Global village) ନାମରେ ଅଭିହିତ କରାଯାଇଛି ।ସେହି ଗ୍ରାମ ଆଜି ଏକବିଂଶ ଶତାବ୍ଦୀର ଦ୍ୱାର ଦେଶରେ ଉପସ୍ଥିତ । ଏହି ଏକବିଂଶ ଶତାବ୍ଦୀର ରୂପରେଖ ବିଷୟରେ ଯେଉଁ ଚିତ୍ର ଆମ ଆଗରେ ଉପସ୍ଥାପିତ କରାଯାଉଛି ତାହା ବିସ୍ମୟକର ଏବଂ ମଣିଷର ଭବିଷ୍ୟତ ସ୍ଥିତି ବିଷୟରେ ମଧ୍ୟ ପ୍ରଶ୍ନବାଚୀ ।

ଏହି ପରିପ୍ରେକ୍ଷୀରେ ଏହି ଆଧୁନିକ, ଉତ୍ତର ଆଧୁନିକ ଯୁଗର ଦୁଇଜଣ ପ୍ରବକ୍ତା ହେଉଛନ୍ତି ମାର୍ଟିନ ହାଇଡଗେର ଏବଂ ମିସେଲ୍ ଫୁକୋ । ହାଇଡଗେରଙ୍କ ମତରେ ମଣିଷ ତାର ନିଜ ଅନ୍ତରର ସତ୍ତା (Being) ବିଷୟରେ ଅବହିତ ହେଉନାହିଁ । ସେ ତାହାର ବାହାରର ସତ୍ତା (Becoming) ବିଷୟରେ ବେଶି ତତ୍ପର ଏବଂ ସେଥିପାଇଁ ତାର ଆଜି ଏ ଦୂରବସ୍ଥା । ଫୁକୋ ଇତିହାସର ଅର୍ଥକୁ ବ୍ୟାଖ୍ୟା କରି କହିଛନ୍ତି ଯେ ମଣିଷର ଇତିହାସ ସ୍ୱଳ୍ପକାଳୀନ ,ଏହା ନାନା ପ୍ରକାରର ଉତ୍‌ଥାନ ପତନ ମଧ୍ୟ ଦେଇ ଗତି କରୁଛି ଏବଂ ସେହି ଇତିହାସ ସମୁଦ୍ରର ବେଳାଭୂମି ଉପରେ ତରଙ୍ଗ ଦ୍ୱାରା ଅଙ୍କିତ କେତୋଟି ରେଖା ସହିତ ସମାନ । ଏହି ରେଖାକୁ କେଉଁ ବିକ୍ଷୁବ୍ଧ ତରଙ୍ଗ କେତେବେଳେ ଆସି ଧୋଇ ନେଇଯିବ ତାହା କେହି କହିପାରିବେ ନାହିଁ ।ଏହି ପରିପ୍ରେକ୍ଷୀରେ ଆଣବିକ ଅସ୍ତ୍ରର ଭୟାବହ ପରିଣତି ସମ୍ପର୍କରେ ଚିନ୍ତା କରାଯାଇପାରେ । ବର୍ତ୍ତମାନ ପୃଥିବୀରେ ଯେତିକି ପରମାଣୁ ଅସ୍ତ୍ର ଗଚ୍ଛିତ ଅଛି ତାହା ଆମର ଏହି ଭୂମଣ୍ଡଳୀୟ ଗ୍ରାମକୁ ବହୁବାର ନିଶ୍ଚିହ୍ନ କରିଦେଇ ପାରିବ । ଏହି ବିଷୟ ଚିନ୍ତାକଲାବେଳେ ମନରେ ଯେଉଁ ପ୍ରଶ୍ନ ଉଠେ ତାହା ହେଉଛି ମଣିଷର ନୈତିକ -ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ଯୋଗୁଁ ନିଜକୁ ନିୟନ୍ତ୍ରିତ କରିବା ପାଇଁ ତାହାର ଅକ୍ଷମତା ।

ଏହି ଅକ୍ଷମତା ଯେଉଁ ପରିମାଣରେ ବଢ଼ିଚାଲିଛି ସେହି ପରିମାଣରେ ତାହାର ଆତ୍ମସର୍ବସ୍ୱତା ବା ମୁଁତ୍ୱ ତାହାର ମାନବିକତାକୁ ହ୍ରାସ କରୁଛି । ଏହି ଅମାନବିକତାରୁ ରକ୍ଷା ପାଇବାକୁ ହେଲେ ଆଜି ଯେଉଁ ପ୍ରକାର ଆବଶ୍ୟକତା ଅନୁଭୂତ ହେଉଛି ତାହା ମହାକାଶର ରାଜପଥ ବା (Cyber space)ରୁ ଆସିବା ସନ୍ଦେହ ଜନକ । କାରଣ ସେଠି ବ୍ୟବସାୟିକ ଲାଭର ନ୍ୟସ୍ତସ୍ୱାର୍ଥ ସଂଶ୍ଳିଷ୍ଟ ଅନ୍ୟ ଯେଉଁ ଉତ୍ସଟି ଏହି ପ୍ରଜ୍ଞାକୁ ବିତରିତ କରିପାରିଥାନ୍ତା, ତାହା ହେଉଛି ଆମର ଶିକ୍ଷା ପ୍ରଣାଳୀ । ତାହା ଆଜି ସମ୍ପୂର୍ଣ୍ଣ ଭାବରେ ବିପର୍ଯ୍ୟସ୍ତ ଆମ ଦେଶରେ ।

ବିକଶିତ ଓ ଅଗ୍ରଗାମୀ ଦେଶମାନଙ୍କରେ ଏହି ବିପର୍ଯ୍ୟୟ ଯେ ଦେଖା ନ ଦେଇଛି ତାହା ନୁହେଁ, କିନ୍ତୁ ସେ ଦେଶମାନଙ୍କରେ ଗବେଷଣା ଓ ଅନୁସନ୍ଧାନ ଦ୍ୱାରା ସମାଧାନ ସୂତ୍ର ବାହାର କରିବା ପାଇଁ ସଦାସର୍ବଦା ଚେଷ୍ଟା ଚାଲିଛି । ଏହାର ଗୋଟିଏ ମୁଖ୍ୟ ଉଦାହରଣ ହେଉଛି ମର୍ଟିମର ଆଡଲର୍‌ଙ୍କର Back to Basics ପାଇଁ ଆହ୍ୱାନ । ଯେଉଁ ଆହ୍ୱାନ ବର୍ତ୍ତମାନ ଆମେରିକା, ଇଂଲଣ୍ଡ ଓ ଜର୍ମାନୀରେ ରାଜ୍ୟଶାସନ ସ୍ତରରେ ଆଦୃତ । ଏହି Back to Basicsର ଅର୍ଥ ହେଉଛି ଆମ ସଭ୍ୟତା ଓ ସଂସ୍କୃତିର ମୂଳ ଉତ୍ସକୁ ଫେରିଯିବା ଏବଂ ସେହିଠାରୁ ଆମର ସାମ୍ପ୍ରତିକ ଅବସ୍ଥାକୁ ବିଶ୍ଳେଷଣ ଓ ମୂଲ୍ୟାୟନ କରିବା । ଏହି Basics ଆମର ସ୍ୱକୀୟ ରୀତି ନୀତି ଆଚାର ବ୍ୟବହାର, ଚାଲିଚଳଣୀ ସହ ସଂପୃକ୍ତ । ନୂଆ ପୀଢ଼ି ଏହିସବୁ ସହିତ ଆଜି ଅପରିଚିତ, ଯଥା - ପିଠାପଣା, ବେଶଭୂଷା, ଗହଣାଗାଣ୍ଠି । ଯେଉଁ ବାଦ୍ୟ ଯନ୍ତ୍ରର ନାମ ସଂକଳନରେ ରହିଛି ତାହା ସହିତ ଆଧୁନିକ ପାଠକ ଅପରିଚିତ । ଆଧୁନିକ ଯୁଗର କେତେଜଣ ଲୋକ କୋଣାର୍କ ବା ଭୁବନେଶ୍ୱର ମନ୍ଦିରର ଗାତ୍ରରେ ଖୋଦିତ ନାରୀମୂର୍ତ୍ତିର ଗହଣାଗାଣ୍ଠିକୁ ଚିହ୍ନିପାରିବେ ? ଏହିପରି ଅନେକ ଉଦାହରଣ ମିଳିବ ଏହି ଗ୍ରନ୍ଥରୁ, ଯାହା ଆମର ସାମ୍ପ୍ରତିକ ଅପସଂସ୍କୃତିମୂଳକ ଭିତ୍ତି ଭୂମିରୁ ବିଚ୍ଛିନ୍ନ ।

ଏହି ଦୃଷ୍ଟିରୁ 'ସାରଳା ରତ୍ନ ଭଣ୍ଡାର ଓ ରସ ସାଗର'ର ଉପାଦେୟତା ବିଚାର୍ଯ୍ୟ । ପୂର୍ବରୁ କହିଛି ଯେ ଏହି ଉକ୍ତି ଗୁଡ଼ିକୁ ନାନା ଦିଗରୁ ଆଲୋଚନା କରାଯାଇପାରେ ; ଯେତେବେଳେ ଏହି ଉକ୍ତି ଗୁଡ଼ିକ ପ୍ରଚଳିତ ହୋଇଥିଲା ସେତେବେଳର ସମାଜ ଓ ସଭ୍ୟତା ଆଜିର ସମାଜ ଓ ସଭ୍ୟତା ଠାରୁ ପୃଥକ୍ ଥିଲା । 'ଦନେଇ ବଚନ' ବା 'କୃଷିବଚନ' ରେ କୃଷି କର୍ମ ପାଇଁ ଯେଉଁ ସବୁ ନୀତି ନିର୍ଦ୍ଧାରଣ କରାଯାଇଛି ଆଜିର ସବୁଜ ବିପ୍ଳବ, ଶ୍ୱେତ ବିପ୍ଳବ ଓ ନୀଳବିପ୍ଳବ ପରିପ୍ରେକ୍ଷୀରେ ତାହାର ପ୍ରାସଙ୍ଗିକତାକୁ ପ୍ରଶ୍ନ କରାଯାଇପାରେ ।

ସେହିପରି ଚାଣକ୍ୟ ନୀତିରେ ବା ଅନ୍ୟାନ୍ୟ ଉକ୍ତିରେ ନାରୀମାନଙ୍କ ବିଷୟରେ ଯାହା କୁହାଯାଇଛି, ଯଥା- ସ୍ତ୍ରୀମାନଙ୍କୁ ଆଦୌ ବିଶ୍ୱାସ କରିବା ଉଚିତ ନୁହେଁ ବା 'ସ୍ୱଭାବେ ସ୍ତ୍ରୀ ଜନ୍ମ ହୋଇ, ଧର୍ମ ଅଧର୍ମ ନ ଜାଣଇ' ତାହା ଆଜିର Feminist ଆନ୍ଦୋଳନ ପରିପ୍ରେକ୍ଷୀରେ ଗ୍ରହଣୀୟ ନୁହେଁ, ଏହି ଦୃଷ୍ଟିଭଙ୍ଗୀ କେବଳ ଯେ ପୁରୁଷ ପ୍ରାଧାନ୍ୟର ପରିଚାୟକ ତାହା ନୁହେଁ । ଏହା ମଧ୍ୟ ଆମ ଭାରତୀୟ ଜୀବନ ଦର୍ଶନର ବିରୋଧୀ । ଏହି ପର୍ଯ୍ୟାୟର ଉକ୍ତି ବା ବଚନ ଗୁଡ଼ିକର ଐତିହାସିକ ମୂଲ୍ୟ ଯଥେଷ୍ଟ । ଇତିହାସର କ୍ରମ ବିବର୍ତ୍ତନରେ ଆମର ସାମାଜିକ ପରିବର୍ତ୍ତନକୁ ଅନୁଧ୍ୟାନ କରିବାକୁ ଯଥେଷ୍ଟ ସାହାଯ୍ୟ

କରିବ । କିନ୍ତୁ ଦେଶକାଳ ପାତ୍ରରେ ପରିବର୍ତ୍ତନ ସତ୍ତ୍ୱେ ଏହି ସବୁ ଉକ୍ତି ଗୁଡ଼ିକୁ ଯେତେବେଳେ ମୂଲ୍ୟବୋଧ ଦୃଷ୍ଟିକୋଣରୁ ବିଚାର କରାଯିବ, ସେଥିରୁ ଅନେକ ଉପାଦେୟ ତଥ୍ୟ ମିଳିବ । ଏହି ତଥ୍ୟ ଆଧୁନିକ ଯୁଗରେ ଜୀବନ ଯାପନ ପାଇଁ ନୂତନ ପ୍ରଜନ୍ମକୁ ଦିଗ୍‌ଦର୍ଶନ ଦେବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏଠାରେ ସତର୍କତା ଅବଲମ୍ବନ କରିବା ଆବଶ୍ୟକ । କାରଣ ଯେଉଁ ସବୁ ବ୍ୟାବହାରିକ ଉକ୍ତି ଜାତି, ଗୋତ୍ର, ସମ୍ପ୍ରଦାୟ କିମ୍ବା ଅନ୍ଧବିଶ୍ୱାସ ଉପରେ ପର୍ଯ୍ୟବସିତ, ତାକୁ ପରିତ୍ୟାଗ କରି ଯେଉଁ ସବୁ ମୂଲ୍ୟବୋଧ ଚିରନ୍ତନୀ ଓ ଶାଶ୍ୱତ, ଯାହା ମଣିଷର ଚରିତ୍ରକୁ ନୈତିକ ମୂଲ୍ୟବୋଧ ଦୃଷ୍ଟି କୋଣରୁ ଆମକୁ ବୁଝିବାକୁ ଏବଂ ମୂଲ୍ୟାୟନ କରିବା ପାଇଁ ସହାୟତା କରିବ, ତାହାର ଅନେକ ଉଦାହରଣ ଏହି ସଂକଳନରେ ରହିଛି ।

ଆମ ଦେଶରେ ଏହି ମୂଲ୍ୟବୋଧ ସାଧାରଣ ଲୋକମାନଙ୍କ ଭିତରେ 'ଭାଗବତ ଟୁଙ୍ଗି'ରେ କିମ୍ବା ଅନ୍ୟାନ୍ୟ ସାଧାରଣ ସ୍ଥାନରେ ପୁରାଣ, ଭାଗବତ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥର ପଠନ ଓ ପାଠନ ଆଲୋଚନା ଦ୍ୱାରା ପ୍ରଚାରିତ ହେଉଥିଲା । ସେହି ସଂସ୍ଥାମାନଙ୍କ ପରିବର୍ତ୍ତରେ ଆସିଛି ବର୍ତ୍ତମାନ 'ଗ୍ରାମ ପାଠାଗାର' । କିନ୍ତୁ ସେଠାରେ ଏହିପରି ଜୀବନଧର୍ମୀ କାର୍ଯ୍ୟକ୍ରମ ବିଶେଷ ଦେଖାଯାଉ ନାହିଁ ।

ଏହା ବ୍ୟତୀତ ଆମର ବିଦ୍ୟାଳୟମାନଙ୍କର ଛାତ୍ର ଛାତ୍ରୀମାନଙ୍କୁ ନୈତିକ ଶିକ୍ଷା ପୂର୍ବେ ନିୟମିତ ଭାବରେ ଦିଆଯାଉଥିଲା ଏବଂ କୋମଳମତି ଛାତ୍ରଛାତ୍ରୀଙ୍କ ମନରେ ତାହା ରେଖାପାତ କରି ଜୀବନର ଗତିପଥରେ ସହାୟତା କରୁଥିଲା- 'ପାଠ ମିଠା ଯେବେ ମନରେ ରହେ' । ଏଥିପାଇଁ ଗୁରୁମାନଙ୍କର ପୂର୍ବେ ଯେଉଁ ଉଦ୍ୟମ ଥିଲା ତାହା ଲୋପ ପାଇ ଆସୁଛି । କାରଣ ଯେଉଁ ଚାରିତ୍ରିକ ଆଦର୍ଶ ବଳରେ ସେମାନେ ଛାତ୍ରଛାତୀ ମାନଙ୍କୁ ଅନୁପ୍ରାଣିତ କରୁଥିଲେ ତାହାର ଅନୁପସ୍ଥିତି ବ୍ୟାପକ ହେବାରେ ଲାଗିଛି । 'ଗୁରୁ ହୋଇ ନ ତିଆରଇ ବାଟ'। ଆଜିର ଯୁଗଧର୍ମ (zeitgeist) ଯୋଗୁଁ ମଣିଷର ବ୍ୟକ୍ତିଗତ ପାରିବାରିକ ଏବଂ ସାମାଜିକ କିମ୍ବା ଆଧିଦୈବିକ ଆଧିଭୌତିକ ଓ ଆଧ୍ୟାତ୍ମିକ ଜୀବନରେ ଯେଉଁସବୁ ବିଶୃଙ୍ଖଳା ବ୍ୟାପିବାରେ ଲାଗିଛି ତାକୁ ପ୍ରତିରୋଧ କରିବାକୁ ହେଲେ ଏହିପରି ସଂକଳନର ପ୍ରଭୂତ ଆବଶ୍ୟକତା ରହିଛି । ମୋର ଆଶା ଓ ବିଶ୍ୱାସ ସଂକଳକଙ୍କର ଏହି ମହତ୍ ଉଦ୍ଦେଶ୍ୟ ସଫଳ ହେବ ।

ତା ୧୭-୯-୧୯୯୬ | ପ୍ରଫେସର ବିଧୁଭୂଷଣ ଦାସ



ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକ
ଦି' ୟୁନିଭର୍ସ, ମୈତ୍ରୀସରଣୀ,
କଟକ-୧

# କିଞ୍ଚିତ କଥନ

'ସାରଳା ରତ୍ନ ଭଣ୍ଡାର ରସସାଗର' ବହିର ଲେଖକ ଆଡ୍‌ଭୋକେଟ ବିନୋଦ ବିହାରୀ ଦାସ ମୋର ପାରିବାରିକ ବନ୍ଧୁ । ତାଙ୍କ ପରିବାର ସହିତ ଆମ ପରିବାରର ସମ୍ପର୍କ ବହୁଦିନରୁ । କିନ୍ତୁ ସେ ଯେତେବେଳେ ଏହି ପାଣ୍ଡୁଲିପିଟି ମୋତେ ଧରାଇଦେଇ ଏହାର ଭୂମିକା ଲେଖିବାପାଇଁ କହିଲେ, ମୁଁ ଆଚମ୍ବିତ ହୋଇଗଲି । ଦି' ପହର ହୋଇଥିଲା । ଆମ୍ବ ଗଛରେ କୋଇଲିର କୁହୁତାନ ଶୁଭୁଥିଲା ଏବଂ ନିଦ ପାଇଁ ସାହାଯ୍ୟକାରୀ ହୋଇଥିଲା । କିନ୍ତୁ ବିନୋଦବାବୁଙ୍କର ଅନୁରୋଧ ଶୁଣି ନିଦ ଭାଙ୍ଗିଗଲା ।

ବିନୋଦ ବିହାରୀ ଦାସ, ଓକିଲ, ଲେଖକ ହେଲେଣି ଅନେକ ଦିନରୁ । ବର୍ତ୍ତମାନ 'ସାରଳା ରତ୍ନ ଭଣ୍ଡାର ରସ ସାଗର'ର ଲେଖକ । ସେ ରାଜ୍ୟରେ ତ ଖୁବ କମ୍ ଲୋକଙ୍କର ଅନୁପ୍ରବେଶ ଘଟିଛି । ଓଡ଼ିଶାର ଇତିହାସ ଦୀର୍ଘ ୪୦୦ ବର୍ଷ ଅନ୍ଧକାରାଚ୍ଛନ୍ନ । ଇତିହାସ ଯେଉଁଠି ଲିଖିତ ନୁହେଁ, ଶିଳାଲେଖ, ତାମ୍ରପତ୍ର ଏବଂ ପରିଶେଷରେ ଲୋକ କଥା ଉପରେ ନିର୍ଭର କରିବାକୁ ତ ପଡ଼ିବ । କିନ୍ତୁ ଓଡ଼ିଶାରେ ଯେତିକି ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଚାଲିଥିଲା ଏଇ ଇତିହାସର ପୃଷ୍ଠା ଉନ୍ମୋଚନ କରିବା ପାଇଁ ତାହା ତ ବନ୍ଦ ହୋଇଯାଇଛି ।

ବହିଟି ଉତ୍ସର୍ଗ କରାହୋଇଛି ଓଡ଼ିଶାର ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ । ଲେଖକ ସ୍ମୃତିଚାରଣରେ ଜାନକୀ ବାବୁଙ୍କର ପଶ୍ଚିମ ଛାତ୍ରାବାସର ରହଣୀ ଓ ସେଇଠି 'ସାଧାରଣତନ୍ତ୍ର' ଘୋଷଣାରୁ (୧୯୪୬ ମସିହା ଡ଼ିସେମ୍ବର ମାସର କଥା) । ଆରମ୍ଭ କରିଛନ୍ତି । ପ୍ରସିଦ୍ଧ ୟୁନିୟନ ଜ୍ୟାକ ବିରୋଧୀ ଆନ୍ଦୋଳନର ଅନ୍ୟତମ ନାୟକ ସେତେବେଳେ ସେ । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଇତିହାସର ପୃଷ୍ଠାରେ ମୁଖ୍ୟମନ୍ତ୍ରୀ ଭାବରେ କେତେକାଳ ସ୍ମୃତ ହୋଇ ରହିବେ ମୁଁ କହି ପାରିବି ନାହିଁ । ଓଡ଼ିଶାର ପ୍ରବୁଦ୍ଧ ଜନନାୟକ ଏକଦା ମୁଖ୍ୟମନ୍ତ୍ରୀ ଭାରତବର୍ଷର ପ୍ରସିଦ୍ଧ ଚିନ୍ତକ ନବକୃଷ୍ଣ ଚୌଧୁରୀ ବର୍ତ୍ତମାନ ବିସ୍ମୃତିର ଗର୍ଭରେ । କିନ୍ତୁ ଜାନକୀବାବୁ ସ୍ମୃତ ହୋଇ ରହିବେ ତାଙ୍କର ପାଣ୍ଡିତ୍ୟ, ତାଙ୍କର ରଚିତ ପୁସ୍ତକାବଳୀ ପାଇଁ । ମୋର ଏହି ଉକ୍ତି ସହିତ ସେ ନିଜେ ଏକମତ, ଏହା

ଆନନ୍ଦର କଥା । ସେ ଓଡ଼ିଶାର ଇତିହାସ ସମ୍ପର୍କରେ ଗଭୀର ଆଗ୍ରହୀ । ତେଣୁ ଆଶା କରାଯାଏ ଯେ ତାଙ୍କର ନେତୃତ୍ୱରେ ଶିଶୁପାଳଗଡ଼ ଏବଂ ବାରବାଟୀ ଦୁର୍ଗର ଅସମ୍ପୂର୍ଣ୍ଣ ଖନନ କାର୍ଯ୍ୟ ସମ୍ପୂର୍ଣ୍ଣ ହେବ । ଓଡ଼ିଶାର ଅନ୍ଧକାରାଚ୍ଛନ୍ନ ଅଧ୍ୟାୟ ଉପରେ ଆଲୋକପାତ ହୋଇପାରିବ ।

ବିନୋଦ ବାବୁଙ୍କ ଏହି ଲେଖା, ତାଙ୍କ ବକ୍ତବ୍ୟ ଅନୁସାରେ "ମା ସାରଳାଙ୍କ କୃପାରୁ" । ସାରଳା ହିଁ ତାଙ୍କର ପ୍ରେରଣା, ତାଙ୍କର ଲେଖନୀର ମୂଳଧାର । ଆଗ ଲେଖକମାନେ ସମସ୍ତେ ଭଗବତ କୃପାର କରୁଣାରୁ ଲେଖକ ବା କବି ହୋଇପାରିଛନ୍ତି ବୋଲି ନିଜ କାବ୍ୟର ଶେଷରେ "ଭଣଇ... ଦାସ" ଲେଖୁଥିଲେ ବୋଲି ମୋର ଧାରଣା । ବିନୋଦ ବିହାରୀଙ୍କ ସାଙ୍ଗିଆ ଯେଉଁ 'ଦାସ' ଉକ୍ତ ଲେଖକମାନେ ସେ 'ଦାସ' ନୁହନ୍ତି । ସେମାନେ ହେଉଛନ୍ତି ଭଗବତ କୃପାର ଦାସ । କିନ୍ତୁ ବିନୋଦବାବୁ ଏହି ବହି ଲେଖି ସେହି 'ଦାସ'ରେ ପରିଣତ ହୋଇଛନ୍ତି । ତାଙ୍କର କଲମ ଦୀର୍ଘଜୀବୀ ହେଉ । ଅଧିକ ପୋଷା ମାନୁ ।

ମୁଁ ଆହୁରି ଆଚମ୍ବିତ ହେଲି ଯେତେବେଳେ ସେ ମୋତେ ଏହାର ଉପକ୍ରମଣିକା ଲେଖିବାକୁ କହିଲେ । ମୁଁ ଏବଂ ସାହିତ୍ୟ ? ପୁଣି ପ୍ରାଚୀନ ସାହିତ୍ୟ ? ଯେଉଁଥିରେ ମୋର ପ୍ରବେଶ ଶୂନ ଠାରୁ ଟିକେ ବେଶୀ । କିନ୍ତୁ ଅନୁରୋଧ ଭାଙ୍ଗିବା ସମ୍ଭବ ନୁହେଁ । ମଧୁର ସମ୍ପର୍କ କାହିଁକି ତିକ୍ତ ହେବ ସେଥିପାଇଁ ? ତେଣୁ ଲେଖିବି ମୋର ମତ ଯାହା । ଭୁଲ ହେଉ ବା ଠିକ ହେଉ । ଏହା ତେଣୁ ସମୀକ୍ଷା ନୁହେଁ, ମତ ମାତ୍ର । ଅନ୍ୟମାନଙ୍କର ବିଚାର ପାଇଁ ।

ବେଦର ଅନ୍ୟନାମ ଶୃତି । ଅର୍ଥାତ ଶୁଣିକରି ଅନ୍ୟ ଲୋକକୁ କୁହାଯାଇଛି ।

ଜଣଙ୍କ ପରେ ଜଣେ, ଗୋଟିଏ ଗୋଷ୍ଠୀ ପରେ ଆଉ ଗୋଟିଏ ଗୋଷ୍ଠୀ, ଗୋଟିଏ ପୀଢ଼ି ପରେ ଆଉ ଗୋଟିଏ ପୀଢ଼ି । ଲିଖିତ ହେଲାବେଳକୁ ଏହା ବହୁ ବ୍ୟକ୍ତି, ବହୁ ପୀଢ଼ି, ବହୁ ଗୋଷ୍ଠୀ ଦ୍ୱାରା ଉନ୍ନତ, ସମୃଦ୍ଧ ହୋଇ ସାରିଛି । ତେଣୁ ଏହାର କେହି ଜଣେ ଲୋକଙ୍କର କୃତିତ୍ୱ ନୁହେଁ । କୌଣସି ଜଣଙ୍କର ନାମରେ ଏହା ନାମିତ ବା ଭଣିତା ହୋଇନାହିଁ । ଏହା 'ଗଣ'ର, ବ୍ୟକ୍ତିର ନୁହେଁ । ଠିକ୍ ସେହିପରି 'ଚର୍ଯ୍ୟାପଦ' ବା 'ବୋଲି' । ସାରଳା ଦାସ କେବଳ ମହାଭାରତର ରଚୟିତା ନୁହନ୍ତି । ସେ ଓଡ଼ିଆ ସାହିତ୍ୟର ଜନକ ମଧ୍ୟ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସାରଳା ମହାଭାରତର ଟୀକା

ପ୍ରଣୟନ କଲାବଳେ ଦେଖିଥିଲେ ଯେ ସାରଳା ଦାସ ଯେଉଁ ଓଡ଼ିଆ ଭାଷା ଲେଖିଛନ୍ତି, କାଳକ୍ରମେ ତାହାର ଅନେକ ପରିବର୍ତ୍ତନ ହୋଇଯାଉଛି ଏବଂ ସେହିଯୋଗୁଁ ଏକ ଶୁଦ୍ଧ ସଂସ୍କରଣର ଆବଶ୍ୟକତା ପଡୁଛି । ଏହାଛଡ଼ା ସେ ଦେଖିଥିଲେ ସାରଳା ମହାଭାରତର ଅଭିନବତ୍ୱ । ବାଣ ହରଣ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ପ୍ରଭୃତି ଖଣ୍ଡ ତାଙ୍କର ନୂତନତ୍ୱ । ମୂଳ ମହାଭାରତ ଯେପରି ଭାରତବର୍ଷର ବିଭିନ୍ନ ଲେଖକଙ୍କ ଦ୍ୱାରା ସମୃଦ୍ଧ ହେଉଛି ଠିକ୍ ସେହିପରି ସାରଳା ଦାସ ମଧ୍ୟ ମହାଭାରତକୁ ନିଜେ ସମୃଦ୍ଧ କରି ସେଇ ଉଜ୍ଜ୍ୱଳ ପରମ୍ପରାର ଅଧିକାରୀ ହୋଇଛନ୍ତି । ଠିକ୍ ସେହିପରି କୃଷି ବଚନ, ଖନା ବଚନ, ଡାକ ଋଷି ବଚନ । ଏହାର ଲେଖକ ଠିକ୍ କିଏ ତାହା ଜଣାଯାଏନା । ମୋର ମନେହୁଏ ଏଗୁଡ଼ିକ କୌଣସି ଗୋଟିଏ ଲୋକର ଦାନ ନୁହେଁ । ଏଗୁଡ଼ିକ ହିଁ ଲୋକଗୀତ । ଏଗୁଡ଼ିକ ସମଗ୍ର ଜାତିର ସମ୍ପତ୍ତି । ବ୍ୟକ୍ତିର ନୁହେଁ । ଏ ସମ୍ପର୍କରେ ଯେଉଁମାନେ ପାଇଓନିୟର ଭଳି ଗବେଷଣା କରି ଯାଇଛନ୍ତି ସେମାନେ ଆମର ନମସ୍ୟ । 'ଢ଼ଗଢ଼ମାଳି' ମଧ୍ୟ ସେହିପରି । ଏଗୁଡ଼ିକ ଆମ ଲୋକସଂସ୍କୃତିର ଆଧାର । ଗୋପାଳଚନ୍ଦ୍ର ପ୍ରହରାଜଙ୍କଠାରୁ ଚକ୍ରଧର ମହାପାତ୍ରଙ୍କ ପର୍ଯ୍ୟନ୍ତ । ନୀଳମଣି ବିଦ୍ୟାରତ୍ନଙ୍କଠାରୁ ଆରମ୍ଭ କରି କୁଞ୍ଜ ବିହାରୀ ଦାସଙ୍କ ପର୍ଯ୍ୟନ୍ତ ସବୁ ଗବେଷକ ଆମର ଅଭିନନ୍ଦନୀୟ, ସ୍ମରଣୀୟ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଏନ୍.ସି. ପଣ୍ଡା ମଧ୍ୟ ଏ ସମ୍ପର୍କରେ ଗବେଷଣା କରି ବହୁ ମୂଲ୍ୟବାନ ତଥ୍ୟ ସଂଗ୍ରହ କରିଛନ୍ତି । ଏହା ସତ୍ତ୍ୱେ ଏ ସମ୍ପର୍କରେ ଯେତିକି ଗବେଷଣା ହେବାର କଥା ତାହା ହୋଇପାରିନାହିଁ । ହେବା ଉଚିତ । ବିଶ୍ୱବିଦ୍ୟାଳୟମାନେ ଏ ସମ୍ପର୍କରେ ସ୍ୱତନ୍ତ୍ର ବିଭାଗ ଖୋଲିବା ଉଚିତ । କାରଣ ଲୋକଗୀତି ଧୀରେ ଧୀରେ ଲୋପ ପାଇଯିବାକୁ ବସିଲାଣି । ଡକ୍ଟର ସୀତାକାନ୍ତ ମହାପାତ୍ର ଆଦିବାସୀମାନଙ୍କର ଗୀତ ସଂଗ୍ରହ କଲାବେଳେ କେତେକ ଲୋକ ଗୀତରେ 'ଟ୍ରାକ୍ଟର' ଭଳି ଆଧୁନିକ ଶବ୍ଦକୁ ଝୁଣ୍ଟିଛନ୍ତି । ଲୋକଗୀତି କେବଳ ଯେ ଲୋପ ପାଇଯିବାର ଆଶଙ୍କା ରହିଛି ତାହା ନୁହେଁ । ଏଗୁଡ଼ିକ ଆଧୁନିକ ସଭ୍ୟତାର, ମାର୍ଚ୍ଚ ଆଗରେ ଲୁପ୍ତ ଏବଂ ବିକୃତ ହୋଇଯିବାର ଆଶଙ୍କା ଦେଖାଦେଇଛି । ସୀତାକାନ୍ତ ମହାପାତ୍ର ସେଇ ଗୋଟିଏ ଲୋକ ଗୀତିକୁ କିଛି ବର୍ଷ ପରେ ଶୁଣିଲାବେଳେ କିଭଳି ତାହାର ପରିବର୍ତ୍ତନ ହୋଇ ଯାଇଛି ତାହା ଉଲ୍ଲେଖ କରିଛନ୍ତି । ସେଥିଯୋଗୁଁ ବିଲୁପ୍ତ ବା ବିକୃତ ହୋଇଯିବା ପୂର୍ବରୁ ସେଗୁଡ଼ିକୁ ଧରି ରଖିବା ଉଚିତ । ସାରଳା ଦାସଙ୍କ ପୂର୍ବରୁ ଓଡ଼ିଆ ଭାଷାର ଲିଖିତ ଚରିତ୍ର କ'ଣ ଥିଲା ତାହା ଜଣା ନାହିଁ । ତେଣୁ ସେଗୁଡ଼ିକୁ 'ଲୋକଗୀତି' ବୋଲି ଧରାଯାଇପାରେ ଏବଂ ତାହା ମଣିଷ ସମାଜର ବିକାଶ କାଳରୁ

ହିଁ ଧୀରେ ଧୀରେ ଜନଶ୍ରୁତିରେ ରହି ଆସିଛି, ସମୃଦ୍ଧ ହୋଇଛି, ବିକଶିତ ହୋଇଛି । ରାଘବାନନ୍ଦ ଦାସ, ଅବଦୁଲ ମଜିଦ, ଭଗବାନ ହୋତା ବା ପରବର୍ତ୍ତୀ କାଳରେ ଭାଷାତତ୍ତ୍ୱର ଗବେଷକ ଦେବୀ ପ୍ରସନ୍ନ ପଟ୍ଟନାୟକ (ବୁଲୁ) ମଧ୍ୟ ଲୋକଗୀତି ଓ ଲୋକସଂସ୍କୃତିର ସଂଗ୍ରହ ପାଇଁ ଅବଦାନ ଦେଇ ଯାଉଛନ୍ତି । ଦେଖାଯିବ ଯେ ଲୋକ ଗୀତିର ଭାଷା, ବିଷୟବସ୍ତୁ ଯେପରି ବଦଳି ଯାଉଛି ଠିକ ସେଇପରି ଏହାର ସୁର ମାନଙ୍କରେ ମଧ୍ୟ ପରିବର୍ତ୍ତନ ଘଟିଯାଉଛି ।

ପୃଥିବୀର ଯେକୌଣସି ଦେଶର ଲୋକଗୀତିର ସୁରମାନଙ୍କରେ ଅଭୂତପୂର୍ବ ସାମଞ୍ଜସ୍ୟ ଦେଖାଯାଏ । କାରଣ ସବୁର ସୁର ଆସିଛି କୁଆଁରୀ ପ୍ରକୃତିରୁ, ଛଳ ଛଳ ନଇ, ଝରଣାର କୁଳୁକୁଳୁ ଶବ୍ଦ, ପାହାଚର ଖୋଲ ଦେଇ, ନିରନ୍ଧ୍ର ବୃକ୍ଷଲତା ଦେଇ ବୋହୁଥିବା ସାଇଁ ସାଇଁ ପବନର ସୁର ହେଉଛି ଏଇ ସବୁର ସୁର । ତେଣୁ ସେଗୁଡ଼ିକ ମଧ୍ୟରେ ସୁରର ଯେପରି ଐକ୍ୟ ରହିଛି, ସେହିପରି ଐକ୍ୟ ରହିଛି ବିଷୟବସ୍ତୁର । କାରଣ ମଣିଷର ଚିନ୍ତା, ମଣିଷର ଆନନ୍ଦ ଓ ବିଷାଦ ସର୍ବତ୍ର ସମାନ । ସେଗୁଡ଼ିକର ସମାରୋହ ନରୱେରେ ହୋଇପାରୁଛି- ଆନ୍ତର୍ଜାତିକ ଲୋକ ଗୀତି ଅନୁଷ୍ଠାନ ଦ୍ୱାରା । ଆମର ଏଠି ହୋଇନାହିଁ ଏ ପର୍ଯ୍ୟନ୍ତ ।

ବିନୋଦବାବୁ ବର୍ତ୍ତମାନ ସେଇ ଧାଡ଼ିରେ । ଆଇନ ବହିର ଲୂତାଜାଲ ଭିତରୁ ମୁକ୍ତି ଖୋଜି ସେ ଯେ ଏହି ସ୍ତରରେ ପହଞ୍ଚି ପାରିଛନ୍ତି ତାହା ଆକସ୍ମିକ ନା ଅଭିପ୍ରେତ ? ଜୟସେନଙ୍କ ପରି ସେ ଆଧ୍ୟାତ୍ମିକ ସାଧନାରେ ବ୍ରତୀ ହେବେ ଏବଂ ଅନ୍ତରାୟ (ନାଁ ସାହାଯ୍ୟକାରୀ ?) ହେଉଥିବା ପାର୍ଥିବ ସମ୍ପଦକୁ ବ୍ୟବହାର କରିବେ ସେଇ ସାଧନା ପାଇଁ, ଏଇ ଆଶା ଆମେ କରୁଛୁ ।

ସେ ଐତିହାସିକ ନୁହଁନ୍ତି । ତେଣୁ ଇତିହାସଗତ ସମୀକ୍ଷାରେ ଭୁଲ ଭ୍ରାନ୍ତି ଦେଖାଯିବ । ସ୍ୱାଭାବିକ ମଧ୍ୟ । ହୁଏନସାଂଙ୍କର ବିବରଣୀ ଠିକ୍ । କିନ୍ତୁ ସେଥିରେ ଥିବା ସ୍ଥାନ- ପୁଷ୍ପଗିରି, ଚେଲିତୋଲା ପ୍ରଭୃତି କେଉଁଠି ତାହା ଏପର୍ଯ୍ୟନ୍ତ ଚିହ୍ନଟ ହୋଇପାରିନାହିଁ । ଠିକ୍ ସେହିପରି କଳିଙ୍ଗ ଯୁଦ୍ଧର କଥା । ଧଉଳୀ ଶିଳାଲେଖ ଛଡ଼ା ଆଉ କିଛି ଐତିହାସିକ ତଥ୍ୟ ଆମ ହାତରେ ନାହିଁ । ହଙ୍ଗେରୀୟ ଗବେଷକ ଚାର୍ଲସ ଫାବ୍ରି ଜର୍ମାନ ଗବେଷିକା ଏସ୍‌ମ୍ୟାନ, ଗବେଷକ କୁଲକେଙ୍କ ଅବଦାନ ପ୍ରଭୃତ । କିନ୍ତୁ ଓଡ଼ିଶାରେ ସେଥିପାଇଁ ଉଦ୍ୟମ କେତେଦୂର ? ପୁରୁଖା ଐତିହାସିକମାନଙ୍କ ମଧ୍ୟରେ କେବଳ ସତ୍ୟ ନାରାୟଣ ରାଜଗୁରୁ ହିଁ ଜୀବିତ ।

ସୁଧାକର ପଟ୍ଟନାୟକ, ପ୍ରଭାତ ମୁଖାର୍ଜୀ, ଘନଶ୍ୟାମ ଦାସ, ନବୀନ ଚନ୍ଦ୍ର ସାହୁ, କେଦାରନାଥ ମହାପାତ୍ର ପ୍ରଭୃତି ଆଉ ନାହାନ୍ତି । ଏପରିକି ରମେଶଚନ୍ଦ୍ର ମହାପାତ୍ର ମଧ୍ୟ ଆମକୁ ଅକାଳରେ ଛାଡ଼ି ଯାଇଛନ୍ତି । ଅଧୁନାତନ ଐତିହାସିକ ମାନଙ୍କ ମଧ୍ୟରେ କରୁଣା ସାଗର ବେହେରା, ମହେଶ ପ୍ରସାଦ ଦାସ, ରାଜେନ୍ଦ୍ର ପ୍ରସାଦ ଦାସ, ହରିଶ୍ଚନ୍ଦ୍ର ଦାସ ପ୍ରଭୃତି ବ୍ୟକ୍ତିଗତ ଭାବରେ ଉଦ୍ୟମ କରି ଆସିଛନ୍ତି । କିନ୍ତୁ ସମବେତ ଉଦ୍ୟମ କାହିଁ, ରାଷ୍ଟ୍ରୀୟ ଉଦ୍ୟମ କାହିଁ ?

ମଣିଷ ଜାତିର ଆଦ୍ୟ ସଂସ୍କୃତି । କୃଷିକୁ କେନ୍ଦ୍ରକରି ଗଢ଼ି ଉଠିଛି ସାହିତ୍ୟ, କଳା, ସଂସ୍କୃତି । କୃଷି ବଚନ ଗଢ଼ି ଉଠିଛି ତାହାରି ଉପରେ । ଆମର ପୂଜା, ପାର୍ବଣ, ପଦ୍ଧତି ମଧ୍ୟ କୃଷି ଭିତ୍ତିକ । ଖନା ବଚନ ତ ସମ୍ପୂର୍ଣ୍ଣ ଭାବରେ କୃଷକ ପାଇଁ । ପ୍ରକୃତି ନିଜେ ହିଁ ସୂଚନା ଦେଇଥାଏ ଆଗାମୀ ସମୟର । ପ୍ରକୃତିରେ ଅନୁଧ୍ୟାନ କରୁଥିବା ମଣିଷ ଏହା ଜାଣିପାରେ । ଏହି ମହତ୍ ଅନୁଧ୍ୟାନ ହିଁ ରୂପ ପାଇଛି ଖନା ବଚନରେ । ଏହା ଭିତରେ ରହିଛି ଅନେକ ଭବିଷ୍ୟବାଣୀ, ସେଇ ପ୍ରକୃତି ଉପରେ ନିର୍ଭର କରି । ଖନା ବଚନ ଏ ଜାତିର ଏକ ଅମୂଲ୍ୟ ସମ୍ପଦ । କାରଣ ପ୍ରକୃତିର ଅନୁଧ୍ୟାନ କିପରି ହୋଇପାରେ ଏବଂ ସେ କାଳରେ ଖାଲି ଆଖିରେ ଏହା କିପରି ସଠିକ୍ ଭାବରେ ଅନୁଧ୍ୟାନ କରାଯାଇ ପାରୁଥିଲା ତାହା ଭବିଷ୍ୟତ ପିଢ଼ିକୁ ପ୍ରଭୂତ ସାହାଯ୍ୟ କରିବ ପ୍ରକୃତିକୁ ଅନୁଧ୍ୟାନ କରିବା ପାଇଁ ।

ଠିକ୍ ସେହିପରି ଚାଣକ୍ୟ ନୀତି । ଚାଣକ୍ୟ ଜଣେ ରାଷ୍ଟ୍ରନୀତିଜ୍ଞ ଏବଂ କୂଟନୀତିଜ୍ଞ ଥିଲେ । ରାଜ୍ୟ ଶାସନ କିପରି କରିବାଠାରୁ ଆରମ୍ଭ କରି ଶତ୍ରୁକୁ କିପରି କଳନା କରିବ ପର୍ଯ୍ୟନ୍ତ ଚାଣକ୍ୟ ସବୁଥିପାଇଁ ନିର୍ଦ୍ଦେଶନା ଦେଇଛନ୍ତି ଅଭିଜ୍ଞତାକୁ ଭିତ୍ତିକରି । ମଣିଷକୁ କେତେ ଗଭୀର ଭାବରେ ଅନୁଧ୍ୟାନ କରିଛନ୍ତି ତାହା ଚାଣକ୍ୟ ନୀତିରୁ ପ୍ରତିଭାତ ହୁଏ । ସେ କାଳ ଥିଲା ରାଷ୍ଟ୍ରଗଠନର ଆଦ୍ୟ ସମୟ । ଆଜିର ରାଷ୍ଟ୍ର ପରି ଜୀବନର ସବୁ ବିଭବକୁ ତାହା ହୁଏତ ନିୟନ୍ତ୍ରିତ ବା ପ୍ରଭାବିତ କରୁନଥିଲା । କିନ୍ତୁ ଆଜି ବି ଚାଣକ୍ୟ କୂଟନୀତି ଏବଂ ରାଷ୍ଟ୍ରନୀତିର ପିତାମହ । ଆଜି ବି ସେଇ ନିୟମ ଅତୁଟ ରହିଛି । ଯଦିଓ ରାଷ୍ଟ୍ରର କାର୍ଯ୍ୟ ସେଦିନର ରାଷ୍ଟ୍ରଠାରୁ ଅନେକ ଭିନ୍ନ ହୋଇଗଲାଣି । କିନ୍ତୁ ମଣିଷକୁ ବିଚାର କରି ସେ ରାଷ୍ଟ୍ରନୀତି ଏବଂ କୂଟନୀତିର ଯେଉଁ ବୟାନ ଦେଇ ଯାଇଛନ୍ତି ତାହା ଆଜି ବି ଅତୁଟ ରହିଛି । ଭାରତବର୍ଷର ରାଜଧାନୀ ଦିଲ୍ଲୀରେ ଦେଶ ବିଦେଶର କୂଟନୀତିଜ୍ଞମାନେ

ରହୁଥିବା ସ୍ଥାନର ନାମ ଚାଣକ୍ୟପୁରୀ । ଭାରତବର୍ଷର ଇତିହାସରେ ଏଭଳି କୂଟନୀତଜ୍ଞ ବିରଳ । ଚାଣକ୍ୟଙ୍କର ନୀତି ବୟାନ କରି ଲେଖକ ଆମ ଭାଷାର ପାଠକମାନଙ୍କର ଅଶେଷ ଉପକାର ସାଧନ କରିଛନ୍ତି । କିନ୍ତୁ ସେଥିରେ କୌଣସି ବ୍ୟକ୍ତିର ନାମ ନାହିଁ, ଯେଉଁ ନାମ ଅଛି ତା ଅନେକ ସମୟରେ ଫିକ୍‌ଟିସିୟସ ବା ଛଦ୍ମନାମ । ଆଜିର ମାର୍ବଲ ଫଳକ ସେଦିନ ନଥିଲା, କି ଭୂମି ପୂଜା, ଭିତ୍ତିପ୍ରସ୍ତର ସ୍ଥାପନ ବା ଉନ୍ମୋଚନ ଉତ୍ସବ ନଥିଲା । ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର କାମନା ଥିଲା ଯେ ତାଙ୍କ ବଂଶରେ ଯେପରି କେହି ନରହନ୍ତି । କେହି ଯେପରି ଦାବୀ ନ କରିବେ ଜଗନ୍ନାଥ ବା ମନ୍ଦିରକୁ ତାଙ୍କର ବ୍ୟକ୍ତିଗତ ସଂପତ୍ତି ବୋଲି । ଦନାଇ ବଚନ ଏକ ଶୃଙ୍ଖଳା, ଦୈନନ୍ଦିନ ଜୀବନ ଯାପନର ନିୟମ । ସେତେବେଳେ ତ ରାଷ୍ଟ୍ର ନଥିଲା । ତେଣୁ ନିୟମ ସବୁ ହେଉଥିଲା ଭଗବାନଙ୍କର ଭୟ ସହିତ । ଦନାଇ କିଏ, ସେ କେଉଁ ଜାତିର, କେଉଁ ଜିଲ୍ଲାର ସେଇଟା ପ୍ରଶ୍ନ ନୁହେଁ । ପ୍ରଶ୍ନ ହେଉଛି ତତ୍‌କାଳୀନ ନିୟମ ଓ ପଦ୍ଧତି । ସମୟ ବଦଳି ଯାଇଛି । ନିୟମଗୁଡ଼ିକୁ ସେଇ ଐତିହାସିକ ପରିପ୍ରେକ୍ଷୀରେ ବିଚାର କରିବାକୁ ହେବ । ଯାନ୍ତ୍ରିକ ପଦ୍ଧତିରେ ଆଜି ଲାଗୁ କରିବା ଭୁଲ ହେବ । ସେଇ ନିୟମକୁ ସଂକଳିତ କରି ବିନୋଦବାବୁ ଆମକୁ ଆମର ଐତିହ୍ୟ ଏବଂ ପରମ୍ପରା ଉପରେ ଗର୍ବିତ କରିଛନ୍ତି ।

ଇତିହାସ ହେଉଛି ଭବିଷ୍ୟତର ଆଲୋକ ବର୍ତ୍ତିକା । ବିନୋଦ ବାବୁଙ୍କର ଜୀବନ ଓ କଲମ ଉଭୟ ଦୀର୍ଘ ହେଉ ।

ତା ୧୭-୯-୧୯୯୬ ଗିରିଜା ଭୂଷଣ ପଟ୍ଟନାୟକ

# ଗ୍ରନ୍ଥ ପ୍ରବେଶ

୧୮୦୩ ମସିହାରୁ ଓଡ଼ିଶାରେ ଇଂରେଜ ଶାସନର ଅଭ୍ୟୁଦୟ ହେଲା । ଫଳରେ ଆମର ସମାଜ, ଗ୍ରାମ୍ୟ ଜୀବନ, ସଂସ୍କୃତି ଓ ସାହିତ୍ୟର ଧାରା ଧୀରେ ଧୀରେ ନିଜତ୍ୱ ହରାଇଲା । କାରଣ ଇଂରେଜ ଶାସନର ମୂଳ ଉଦ୍ଦେଶ୍ୟ ଥିଲା, କିପରି ଆମ୍ଭମାନଙ୍କୁ ଇଂରାଜୀ ଭାଷା ଓ ସଂସ୍କୃତିର ଅନୁଗାମୀ କରାଇବା । ଯାହାଫଳରେ ଆମର ସାମାଜିକ ଜୀବନ, ଶିକ୍ଷା ଓ ସଂସ୍କୃତିର ସାମର୍ଥ୍ୟ ଓ ସାର୍ବଭୌମତ୍ୱର ଅଧୋଗତି ମୂଳରେ ହିଁ ଅନ୍ତର୍ନିହିତ ହେଲା ଆମର ଏହି ଇଂରାଜୀ ଭାବପ୍ରବଣତା । ଏହି ମର୍ମରେ ତତ୍‌କାଳୀନ ଇଂରେଜ ଶାସକ ଗୋଷ୍ଠୀର ମୁଖପାତ୍ର 'ଲର୍ଡ ମେକଲେ' ତାଙ୍କର ପିତାଙ୍କ ନିକଟକୁ ଯେଉଁ ପତ୍ର ଲେଖିଥିଲେ ତାହା ଉଲ୍ଲେଖଯୋଗ୍ୟ ।

ସେ ଲେଖିଥିଲେ-

''କୌଣସି ହିନ୍ଦୁ ଇଂରେଜୀ ଶିକ୍ଷା ପ୍ରାପ୍ତହେବାପରେ ନିଜ ଧର୍ମପ୍ରତି ଆଉ ପୂର୍ବ ଭଳି ଜଡ଼ିତ ହୋଇ ରହିପାରିନାହିଁ । ସେମାନଙ୍କ ମଧ୍ୟରୁ କେତେକ ନାସ୍ତିକ ରହିବେ ଓ କିଛି ଖ୍ରୀଷ୍ଟଧର୍ମ ଗ୍ରହଣ କରିବେ ।

ବର୍ତ୍ତମାନ ଆମ୍ଭେମାନେ ଏପରି ଗୋଟିଏ ଶ୍ରେଣୀ ଗଠନ କରିବାପାଇଁ ଏକାନ୍ତ ଉଦ୍ୟମ କରିବୁ; ଯେଉଁମାନଙ୍କର ନିଜ ନିଜର ରୁଚି, ମତ, ନୈତିକତା, ଆଚରଣ ଓ ବୁଦ୍ଧିବୃତ୍ତିରେ ଇଂରାଜୀ ସଭ୍ୟତା ପ୍ରତିଫଳିତ ହେବ: ଫଳରେ ସେମାନେ ଆମ ମଧ୍ୟରେ ଓ ଆମ୍ଭମାନଙ୍କଦ୍ୱାରା ଶାସିତ କୋଟି କୋଟି (ଭାରତୀୟ) ଜନସାଧାରଣଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନକାରୀ ରୂପେ କାର୍ଯ୍ୟ କରିବେ ।''

ଇଂରାଜୀ ଶିକ୍ଷା-ଦୀକ୍ଷା, ସର୍ବୋପରି ଇଂରାଜୀ ଭାବପ୍ରବଣତା ଆମ୍ଭର ପାରମ୍ପରିକ ପ୍ରଥା, ସାମାଜିକ ଜୀବନ ଓ ପଦ୍ଧତିଠାରୁ ଆମ୍ଭମାନଙ୍କୁ ଦୂରେଇ ଦେବା ସଂଗେ ସଂଗେ ଆମର ହଜାର ହଜାର ବର୍ଷଧରି ଗଢ଼ିଉଠିଥିବା ସ୍ମୃତି ସୌଧରେ ଜୀବିତ ଥିବା ସାମାଜିକ ନୀତି ପ୍ରଥା, ରୀତିନିବାଜ୍, ତଥା ପ୍ରବାଦ, ପ୍ରବଚନ, ବଚନଗୁଡ଼ିକୁ ଧ୍ୱଂସସ୍ତୂପରେ ପରିଣତ କରିଦେଲା ।

ଏହି ସମାଜିକ ନୀତି ଓ ବଚନ/ପ୍ରବଚନଗୁଡ଼ିକ ହଜାର ହଜାର ବର୍ଷ ପୂର୍ବେ, ବର୍ଷ ବର୍ଷ ଧରି ପରୀକ୍ଷିତ ହୋଇ ଅଭିଜ୍ଞ ବିଦ୍ୱାନମାନଙ୍କ ଦ୍ୱାରା ଯେଉଁ ନୀତି ତଥା ବଚନମାନ ଭଣିତ ତଥା ପ୍ରଣୀତ ହୋଇଥିଲା; ସମାଜର ତଥା ଜନମାନସର କଲ୍ୟାଣ ପାଇଁ ସେଗୁଡ଼ିକର ଉପକାରିତା ଆଜି ମଧ୍ୟ ଉପଲବ୍ଧି କରିହେବ । ମାତ୍ର ଦୁଃଖର କଥା ଆମ ପୂର୍ବ ପୁରୁଷମାନଙ୍କ ଉତ୍‌କର୍ଷର ବିଷୟବସ୍ତୁ ସମ୍ପର୍କରେ ତଥ୍ୟାବଳୀ ଏଯାବତ୍

ତମସାଚ୍ଛନ୍ନ । ତେଣୁ ଏ ସମ୍ପର୍କରେ ପ୍ରଗାଢ଼ ଅଧ୍ୟବସାୟଜନିତ କଠୋର ଓ ଏକନିଷ୍ଠ ସାଧନାମୂଳକ ଗବେଷଣା ଆବଶ୍ୟକ ।

ଏ ସମ୍ପର୍କରେ ଖୋଜା ଖୋଜି ଆରମ୍ଭ ହେଲା ଏଇ ବିଂଶ ଶତାବ୍ଦୀରେ । କିଛି ଯୋଗଜନ୍ମା ଗବେଷକ ବର୍ଷ ବର୍ଷ ଧରି ନିଜର ସାଧନା ବଳରେ ଏହି ଅମୂଲ୍ୟ ରତ୍ନକୁ ସଂଗ୍ରହ କରି ଲୋକଲୋଚନକୁ ଆଣି ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ପରିପୁଷ୍ଟ କରିପାରିଛନ୍ତି । ତାହା ସମୁଦ୍ରକୁ ଶଙ୍ଖେ ପାଣି ଭଳି । ତଥାପି ଯେଉଁସବୁ ପୁସ୍ତକ ଅତୀତରେ ପ୍ରକାଶ ପାଇଥିଲା, ତାହାର ପ୍ରଚାର ବା ପ୍ରସାର ନଥିଲା ଓ ଆଜି ସେସବୁ ଦୁଷ୍ପ୍ରାପ୍ୟ, ଅଲଭ୍ୟ ।

ଆମ୍ଭେ ଅତି ଦୁଃଖର ସହ କହିବାକୁ ଚାହୁଁ ଯେ, ଆଧୁନିକ ସାହିତ୍ୟ ସମାଲୋଚକମାନଙ୍କ ମୁଖରେ କେବଳ ଗୋଟିଏ ମାତ୍ର କଥା ଯେ ଏହା ହେଲାନି, ତାହା ହେଲାନି, ଏହା ଠିକ୍ ନୁହେଁ, ଏଗୁଡ଼ିକ ତୁଚ୍ଛ । ଅର୍ଥାତ୍ ଆମ ସାହିତ୍ୟ ସମାଲୋଚକମାନେ ଦିଗ୍‌ଦର୍ଶକ ନହୋଇ ନାସ୍ତିକବାଦୀ ଅଟନ୍ତି । ଏହି ସଙ୍କଳୟିତା ସାହିତ୍ୟିକ କିମ୍ବା ସମାଚଲୋଚକ ନୁହଁନ୍ତି । ଅତୀତରେ ନଥିଲେ କି ହେବାପାଇଁ ମଧ୍ୟ ବୟସ ଅତିକ୍ରାନ୍ତ ହୋଇଯାଇଛି । 'ମା ସାରଳା'ଙ୍କ ନିର୍ଦ୍ଦେଶାନୁସାରେ ଯାହା କିଛି ସଂଗ୍ରହ କରିଛି । ଅତୀତରେ ଅମୂଲ୍ୟ ରତ୍ନକୁ ଆହରଣ କରିବା ପାଇଁ ବିଧିବଦ୍ଧ ଉଦ୍ୟମ ଲୋଡ଼ା । ଏହା କେବଳ କଷ୍ଟସହିଷ୍ଣୁ, ସାଧନାରତ ଯୁବକମାନଙ୍କ ଦ୍ୱାରା ହିଁ ସମ୍ଭବ । ଯେଉଁମାନେ ନିଜ ଜୀବନକୁ ସାରସ୍ୱତ ସାଧନା ପୀଠରେ ସମର୍ପଣ କରି ପୁରୁଷାନୁକ୍ରମେ ମା' ସାରଳାଙ୍କୁ ତୃପ୍ତ କରିପାରିଲେ, ମା' ହିଁ, ନିଦାଘର ଆସ୍ତରଣକୁ, ସ୍ୱହସ୍ତରେ ଖୋଲି ଦେବେ । ସେଇଦିନ ହେବ ଓଡ଼ିଆ ସାହିତ୍ୟର ଚରମ ସଫଳତା ।

ମୋର ଯାହା ମତ ଗ୍ରାମ୍ୟ ସାହିତ୍ୟର ପ୍ରକୃତ ଚର୍ଚ୍ଚା ଏବେ ମଧ୍ୟ ଭଲଭାବରେ ଆରମ୍ଭ ହୋଇନାହିଁ । ଏଗୁଡ଼ିକର ସଂଗ୍ରହ ଅସମ୍ପୂର୍ଣ୍ଣ । ପ୍ରାଚୀନ ଗ୍ରାମ୍ୟଜୀବନର ପ୍ରବଚନ, ବଚନ ପ୍ରଭୃତି ଗୀତ, ଛନ୍ଦ ମାଧ୍ୟମରେ ସଂଗୃହୀତ ହେଲେ ମଧ୍ୟ ବର୍ତ୍ତମାନର ସାମାଜିକ ପରିବେଶ ଯେପରି କ୍ଷିପ୍ରତର ହୋଇଛି, ଅର୍ଥକାରୀ ହୋଇଯାଇଛି । ଆଭିଜାତ୍ୟ, ପରାକାଷ୍ଠା ପାଇଁ ସରଳ ସୁନ୍ଦର ଗ୍ରାମ୍ୟ ଜୀବନକୁ ସର୍ବହରା କରାଯାଇଛି । ଲୋକ ଏଠି ଅଣନିଃଶ୍ୱାସୀ ହୋଇ ଚବିଶଘଣ୍ଟା ଦୌଡ଼ିବାରେ ଲାଗିଛନ୍ତି । କାହାରିକୁ କଥାପଦେ କହିବାକୁ ବି ତର ନାହିଁ । ସାଂସାରିକ ଜୀବନ ବି ବିପର୍ଯ୍ୟସ୍ତ । ତେଣୁ ଗୀତ ଛାନ୍ଦ ମାଧ୍ୟମରେ ପ୍ରବଚନ, ବଚନ, ସଂସ୍କୃତ ଭାଷା ମାଧ୍ୟମରେ ନୀତି, ନିୟମ ପଢ଼ି ତଇଲିକ କରିବାରେ ସମ୍ଭାବନା କ୍ଷୀଣ ବୋଲି ଧରିନେଇ; ପ୍ରବଚନ, ବଚନ ଇତ୍ୟାଦିକୁ ଆହୁରି ତୀକ୍ଷ୍ଣ ଓ ନିଖୁଣଭାବେ ଲେଖିବାକୁ ପ୍ରୟାସ କରାଯାଇଛି । ବହୁ ବିଷୟବସ୍ତୁ ଥିଲେ ମଧ୍ୟ ବହିର କଳେବରକୁ ସଂକୁଚିତ କରାଯାଇଛି ଯେପରି ସମସ୍ତେ ସ୍ୱଚ୍ଛମୂଲ୍ୟରେ ଏହାକୁ ଖର୍ଦ୍ଦିକରି ପାଠ କରିପାରିବେ,ଏହା ସଂକଳୟିତାର ଆଶା ଓ ବିଶ୍ୱାସ ।

ଗ୍ରନ୍ଥ ପ୍ରସ୍ତୁତି ପର୍ବ ତଥା ମା' ସାରଳାଙ୍କର ଅନୁକମ୍ପା ଦିନଠାରୁ ଆରମ୍ଭ କରି ପ୍ରକାଶର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ମୋର ସହୋଦର କନିଷ୍ଠ ଶ୍ରୀଯୁକ୍ତ ମନ୍ମଥ ନାଥ ମହାନ୍ତି, ସେକ୍ରେଟାରୀ ଓଡ଼ିଶା ରାଜ୍ୟ ବାର କାଉନସିଲ୍, କଟକଙ୍କ ଛତ୍ରେ ଛତ୍ରେ ଅବାରିତ ସହଯୋଗ ପାଇଁ ସଙ୍କଳୟିତା ତାଙ୍କଠାରେ ଚିର ଋଣୀ । ମା' ସାରଳା ତାଙ୍କୁ ଓ ତାଙ୍କ ପରିବାରବର୍ଗଙ୍କୁ ସୁଖ ଓ ସମୃଦ୍ଧି ପ୍ରଦାନ କରନ୍ତୁ ।

ଗ୍ରନ୍ଥ ସଙ୍କଳନର ଅନ୍ତିମ ପର୍ଯ୍ୟାୟରେ ଯେତେବେଳେ ସଙ୍କଳୟିତା ଦୋଦୁଲ୍ୟମାନ ଚିତ୍ତରେ ସଙ୍କଳନଗୁଡ଼ିକ କିପରି ଭାବରେ ପ୍ରକାଶ କରାଯିବ ବୋଲି ଭଟକି ବୁଲୁଥିଲେ; କରୁଣାମୟୀ ମା'ସାରଳାଙ୍କ କୃପାରୁ ସେହି ସମୟରେ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠିତ ସାରସ୍ୱତ ସାଧକ, ଆୟକର କମିଶନର, ଶ୍ରୀଯୁକ୍ତ ଗୋପାଳ ପ୍ରସାଦ ନନ୍ଦଙ୍କ ସାନ୍ନିଧ୍ୟ ଓ ଅକୁଣ୍ଠିତ ସହଯୋଗିତା ତଥା ତାଙ୍କଦ୍ୱାରା ସଂଗୃହୀତ ବହୁ ଉପାଦେୟ ପୁରାତନ ଗ୍ରନ୍ଥର ଫଟୋ କପି ପ୍ରଦାନ ଏବଂ ସମ୍ପୂର୍ଣ୍ଣ ଗ୍ରନ୍ଥଟିକୁ ଛୋଟ ଛୋଟ ଭାଗରେ ବିଭକ୍ତକରି ପ୍ରକାଶିତ କରାଇବାର ସୁଚିନ୍ତିତ ପରାମର୍ଶ ପାଇଁ ତାଙ୍କୁ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ମା' ସାରଳାଙ୍କ ଆଶୀର୍ବାଦ ତାଙ୍କ ପାଇଁ ଭିକ୍ଷା କରୁଛି ।

ଗ୍ରନ୍ଥ ସଙ୍କଳନରେ, ଯେତେସବୁ ମୂଲ୍ୟବାନ ଉପାଦାନ (ଯଥା: ମାଳ ମାଳ ବିଭିନ୍ନ ଗ୍ରନ୍ଥ, ପାଣ୍ଡୁଲିପି, ପତ୍ରପତ୍ରିକା, ଲେଖା ଅଭିଲେଖ, ପୋଥି, ନଥିପତ୍ର, ଇତ୍ୟାଦି) ରୁ ସଂଗୃହୀତ ହୋଇଛି; ପୁଣି କେତେକ ଉପାଦାନ ଶହ ଶହ ବ୍ୟକ୍ତିବିଶେଷଙ୍କ ପାଖରୁ ସଂଗୃହୀତ ହୋଇଛି, ସେମାନଙ୍କର ବିଶଦ ବିବରଣୀ ଏହି ସ୍ୱଳ୍ପ ପରିସର ମଧ୍ୟରେ ଲିପିବଦ୍ଧ କରିବା ସମ୍ଭବପର ହେଉନାହିଁ । ଗ୍ରନ୍ଥର ଅନ୍ୟଭାଗ ମାନଙ୍କରେ ଏସବୁର ବିଶଦ ବିବରଣୀ ପ୍ରଦାନ କରିବାର ବାସନା ରହିଲା । ଏହି ସମସ୍ତ ସାହାଯ୍ୟକାରୀ ସମ୍ମାନନୀୟ ବ୍ୟକ୍ତିବିଶେଷ, ଗ୍ରନ୍ଥକାର ପ୍ରଭୃତିଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି ।

ଗ୍ରନ୍ଥ ସଙ୍କଳନର ପ୍ରାରମ୍ଭରୁ ଆଜି ସୁଦ୍ଧା ଦୈନନ୍ଦିନ ଜୀବନର ଘାତ ପ୍ରତିଘାତ ମଧ୍ୟ ଦେଇ ଗତି କଲାବେଳେ, ସଙ୍କଳନର ନିରବଚ୍ଛିନ୍ନତା ଓ ସଫଳତା ପାଇଁ ମୋର ସହଧର୍ମିଣୀ, ପୁତ୍ର, କନ୍ୟା, ଭ୍ରାତା, ଭଗିନୀ ଏବଂ ପରିବାରର ଲୋକ ଓ ବନ୍ଧୁଗଣ ତଥା ମୋର ସହକାରୀ, ହେପାଜତକାରୀ ରୋଷପାଳିକା ପ୍ରଭୃତି ଏକାଗ୍ର ଚିତ୍ତରେ ସାହାଯ୍ୟ କରିଆସିଛନ୍ତି । ମା' ସାରଳା ସେମାନଙ୍କୁ ଆଶୀର୍ବାଦ କରନ୍ତୁ; ଏହା ହିଁ ପ୍ରାର୍ଥନା କରୁଛି ।

ପଚାଶ ବର୍ଷ ତଳେ ରେଭେନ୍ସା କଲେଜରେ ମୋର ପରମ ପୂଜନୀୟ ଶିକ୍ଷାଦାତାଙ୍କ ଦୀକ୍ଷା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନର ଧାପରେ ଚଢ଼ି ଚଢ଼ି ଆଜି ଶେଷ ପର୍ଯ୍ୟାୟରେ ଉନ୍ନୀତ । ସେଇ ଦେବ ପ୍ରତିମ, ଛାତ୍ରବତ୍ସଳ, ସ୍ନେହୀ ପ୍ରଫେସର ଦାସ ଅତ୍ୟନ୍ତ ଶ୍ରଦ୍ଧା ସହକାରେ ଏହି ଗ୍ରନ୍ଥର 'ଅଭିମତ' ଲେଖି ମୋତେ ଅନୁଗୃହୀତ କରିଛନ୍ତି । ତାଙ୍କର ଏ ଅନୁକମ୍ପା ଓ ଆର୍ଶୀବାଦ ମୋତେ ଏପରି ଅଭିଭୂତ ଓ ଭାବବିହ୍ୱଳ କରିଛି ଯେ ମୋର

ଚକ୍ଷୁରୁ ଲୋତକ ବାରି ହିଁ ଝରୁଛି । ଏହି ଆନନ୍ଦାଶ୍ରୁରେ ମୋର ପୂଜ୍ୟ ଗୁରୁଦେବଙ୍କ ପାଦପଦ୍ମକୁ ଧୋଇ ନିଜକୁ ଧନ୍ୟ ମଣୁଛି ।

ଅର୍ଦ୍ଧ ଶତାବ୍ଦୀର ପାରିବାରିକ ବଂଧୁ ବିଶିଷ୍ଟ ସମାଜସେବୀ, ପ୍ରଖ୍ୟାତ ସାରସ୍ୱତ ସାଧକ ତଥା 'ଦି' ୟୁନିଭର୍ସ'ର ପ୍ରତିଷ୍ଠାତା ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକଙ୍କର ଏହି ଗ୍ରନ୍ଥ ସମ୍ପର୍କରେ 'କିଞ୍ଚିତ କଥନ' ଲେଖା, ଗ୍ରନ୍ଥର ମହତ୍ତ୍ୱ ଓ ଉତ୍କର୍ଷତା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ମୋ ପରି ଜଣେ ନଗଣ୍ୟ, ଅବାଞ୍ଛିତ ବଂଧୁର ଅନୁରୋଧ ରକ୍ଷା କରିଥିବାରୁ ତାଙ୍କୁ ବଧେଇ ଦେବାର ସତ୍‌ସାହସ ମୋର ନାହିଁ । କେବଳ ମା' ସାରଳାଙ୍କୁ କୋଟି କୋଟି ପ୍ରଣାମ କରି ତାଙ୍କର ଓ କମଳ ଅପା (ଡଃ କମଳ କୁମାରୀ ପଟ୍ଟନାୟକ)ଙ୍କର ସୁସ୍ଥ ଓ ଦୀର୍ଘ ଜୀବନ କାମନା କରୁଛି ।

ବିପିନ ବିହାରୀ ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ନିର୍ମଳକାନ୍ତ ମହାନ୍ତିଙ୍କ ଅକ୍ଳାନ୍ତ ପରିଶ୍ରମ ଓ ସଦିଚ୍ଛା ନଥିଲେ ଏହି ପୁସ୍ତିକାଟି ଆତ୍ମପ୍ରକାଶ କରିପାରିନଥାନ୍ତା । ସେଥିପାଇଁ ମୁଁ ସେ ମହାଶୟଙ୍କ ନିକଟରେ ଋଣୀ ହୋଇ ରହିଲି । ସେହି ହାଇସ୍କୁଲର ପୁରାତନ ଛାତ୍ର ସଂସଦର ସଭାପତି ତଥା 'ଦେନା ବ୍ୟାଙ୍କ'ର ସିନିୟର ମ୍ୟାନେଜର ଶ୍ରୀ ରବୀନ୍ଦ୍ର ନାଥ ଦାସଙ୍କ ଆନ୍ତରିକ ସହଯୋଗ ପାଇଁ ମୁଁ ତାଙ୍କ ନିକଟରେ ଚିର ଋଣୀ । ଶ୍ରୀ ବଟକୃଷ୍ଣ ତ୍ରିପାଠୀ- ଆଇ.ପି.ଏସ୍, ଓଡ଼ିଶା ଚଳଚ୍ଚିତ୍ର ନିଗମର ନିର୍ଦ୍ଦେଶକ, ପ୍ରଫେସର ନିରାକାର ପାଣିଗ୍ରାହୀ, ଏକାମ୍ର ମହାବିଦ୍ୟାଳୟର ଅଧକ୍ଷ ଓ ଶ୍ରୀ ଶାରଦା ପ୍ରସାଦ ସ୍ୱାଇଁ- ଓ.ଏଫ.ଏସ (୧), ଅର୍ଥନୈତିକ ପରାମର୍ଶଦାତା ତଥା ଯୁଗ୍ମ ସଚିବ, ସ୍ୱାସ୍ଥ୍ୟ ବିଭାଗ (ଓଡ଼ିଶା ସରକାର) ମାନଙ୍କର ଉତ୍ସାହ ଓ ସହାନୁଭୂତି ପାଇଁ ମୁଁ ସେମାନଙ୍କ ପାଖରେ କୃତଜ୍ଞତା ଜ୍ଞାପନ କରୁଛି । ତତ୍‌ସହିତ ଗ୍ରନ୍ଥର ପ୍ରସ୍ତାବନା, ସଂଯୋଜକ, ସମ୍ପାଦକ ନିର୍ଦ୍ଦେଶକ, କାର୍ଯ୍ୟକାରୀ ସମ୍ପାଦକ, ସାଜସଜ୍ଜାକାରୀ, ପ୍ରଚ୍ଛଦ ଶିଳ୍ପୀ, ଡି.ଟି.ପି., ମୁଦ୍ରଣ, ପ୍ରକାଶ, ବ୍ୟବସାୟିକ ପରାମର୍ଶ ପ୍ରଭୃତିରେ ଯେଉଁ ସୁନାମଧନ୍ୟ ଓ ସମ୍ମାନନୀୟ ବ୍ୟକ୍ତିଗଣ ସହଯୋଗିତା ଓ ଅନ୍ତରାଳରେ ଥିବା କେତେକ ସହୃଦୟ ବନ୍ଧୁଙ୍କ ସାହାଯ୍ୟ ପାଇ ଏହି ପ୍ରକାଶନ ଲୋକଲୋଚନକୁ ଆସିଲା, ସେମାନଙ୍କୁ ମା'ସାରଳା ଅଭୟ ପ୍ରଦାନ କରି ଉତ୍ତରୋତ୍ତର ଉନ୍ନତିର ସହାୟକ ହୁଅନ୍ତୁ ।

ସଙ୍କଳୟିତାଙ୍କର ପଥଭ୍ରଷ୍ଟଜନିତ ତୃଟି ପରିଲକ୍ଷିତ ହେଲେ ସହୃଦୟ ପାଠକମାନେ ଏହାକୁ ମାର୍ଜନା କରିବାକୁ ଅନୁରୋଧ ।

'ଶୁଦ୍ଧ ଅଶୁଦ୍ଧ ପୂରାଇ ପଢ଼ିବ । ଲେଖନକାର ଦୋଷ ନ ଧରିବ ।।'

୧୭-୯-୧୯୯୬

**ବିନୋଦ ବିହାରୀ ଦାସ**, *ଆଡ୍‌ଭୋକେଟ୍*

ଗାନ୍ଧିପାର୍କ ଗେଟ୍, ବାରିପଦା-୭୫୭୦୦୧, ଫୋନ୍ -୫୨୬୮୫,

ଏବଂ ପଢୁଆଁପଦା, ପ୍ରୁଫରୋଡ଼, ବାଲେଶ୍ୱର-୭୫୬୦୦୧, ଫୋନ୍-୬୨୩୭୨

# ପ୍ରାରମ୍ଭିକ

କଥାରେ ନଥା ଦେଇ କହିଲେ- ସାହିତ୍ୟ-ଫାଇତ୍ୟ, ସଂସ୍କୃତ-ଫସ୍କୃତ, ଇତିହାସ ଫିତିହାସ ସଂପର୍କରେ ଜ୍ଞାନ ନଥିବା ସଂକଳୟିତା ଏ ସଂପର୍କରେ ଜଣେ ମୂକ ତଥା ମୂଢ଼ । ମୁହଁ ସୁଆଦିଆ କଥା କହିଲା ବେଳକୁ ମୁହଁରୁ ପାରା ଖସି ପଡୁଛି । ''ବୁକୁ ଭରା କଥା, କାହାକୁ କହିବି; ବାରେ ଭଲା ଟିକେ ଚାହାଁ । ଅନ୍ଧାରୀ ଘରେ ଦୀପାଳୀ ଜାଳି ଯାଆ । ମାଆ....ମାଆ...ମାଆ...।''

ସଂକଳୟିତା ୧୯୯୦ ମସିହା ଡିସେମ୍ବର ମାସ ୪ ତାରିଖ (ମଙ୍ଗଳବାର) ରାତ୍ରି ୧୦ଟା ଅନ୍ତେ, ଝଙ୍କଡ଼ କନକପୁର ପୀଠରେ, ମା'ସାରଳାଙ୍କୁ ଦର୍ଶନ କରି ଫେରିଲା ପରେ ତା'ପରଦିନଠାରୁ ମା'ଙ୍କ ଆଦେଶ ଓ ନିର୍ଦ୍ଦେଶକ୍ରମେ, ତାଙ୍କରି ଆଶ୍ରାରେ ''ସାରଳା ରତ୍ନ ଭଣ୍ଡାର ରସ ସାଗର'' ଗ୍ରନ୍ଥର ସଂକଳନ 'ଅଥମାରମ୍ଭ ଶୁଭାୟ ଭବତୁ' ହେଲା ।

ଏପରି ସଂକଳନର କାରଣ କ'ଣ ଜାଣିବା ବା ସୂଚନା ଦେବା ଦୁର୍ମେଧା, ଅବୋଧ ତଥା ଅକିଞ୍ଚନ ସଂକଳୟିତା ପକ୍ଷରେ ଦୂରୁହ । ତେବେ ଏହାର ସୂତ୍ରପାତ ସଂପର୍କରେ ଏକ ଜାଜ୍ଜ୍ୱଲ୍ୟମାନ ଘଟଣା ଦ୍ୱିତୀୟ ଖଣ୍ଡ 'ଗ୍ରନ୍ଥପ୍ରବେଶ' ଶିରୋନାମାରେ ବିଶଦ ଓ ପ୍ରାଞ୍ଜଳ ଭାବରେ ମା'ଙ୍କର ଅଲୌକିକତାର ବିବରଣୀ ଲିପିବଦ୍ଧ କରାଯିବ ।

ଉତ୍କଳର ମହାକବି ସାରଳା ଦାସ ମା' ସାରଳାଙ୍କ ଅନୁକମ୍ପାରୁ, ପଞ୍ଚଦଶ ଶତାବ୍ଦୀରେ, 'ମହାଭାରତ' ରଚନା କରିଥିବାର କଥା କବି ସ୍ୱହସ୍ତରେ ମହାଭାରତରେ ଆଦିପର୍ବରେ ଲେଖିଛନ୍ତି -

''ମମ ହାତେ ଦିଲେ ଆଣି ଲେଖନ ଗୋଟିଏ
ଏହା ଘେନି ଯାହା କହିବୁ ହୋଇବ ଶାସ୍ତ୍ରମୟେ
ବହୁତ ଅନ୍ୟାଚାର ଛଡ଼ାଇ ମୋତେ ଆଣି ଅଭଗତେ
ମୋତେ ପ୍ରସନ୍ନ ହୋଇଲେ କାତ୍ୟାୟନୀ,
ଆପଣେ ବସି କହିଲେ ବାଳୁତ ଭାବ ଘେନି
ତେଣୁ ମୁହିଁ ଅଜ୍ଞାନେ ପଶିଲି ସାଗର
ହେ ବୁଦ୍ଧି ଜନେ ମୋତେ ନ ହୋଇ ଗୋଚର
ସ୍ୱୟଂ ମୋତେ ଯାହା କହିଦିଅନ୍ତି ସାରଳା
ସୁରଭି ମାଳା ପ୍ରାୟ ମମ ହୃଦେ ହାରା''

କବି ପୁଣି ଲେଖିଛନ୍ତି :

"ଆହେ ବୁଦ୍ଧିଜନେ ମୁହିଁ ମୂର୍ଖ ଅପଣ୍ଡିତ
କୁ ସ୍ଥାନେ ବାସ ଅଟଇ ଅଜ୍ଞାନ ବଂଶେ ଜାତ
ଗ୍ରାମରେ ମୋହର ପାଠ ସାଧି ନାହିଁ ଭଲେ ।
ନିକଟେ ଶାସନ ନାହିଁ, ନ ବସିଲି ପୁରାଣିକଙ୍କ ତୁଲେ
ଶାସ୍ତ୍ର ପଢ଼ିନାହିଁ ମୁଁ କାହାର ତୁଲେ
ଦୋଷ ନ ଧରିବ ମୋର ଏଥି ଦୋଷ ଥିଲେ ।"



"ଅଦୃଷ୍ଟିକି ଦୃଷ୍ଟି ମୁହିଁ କରାଇଲି ଆଣି
କୃପା କରିବୁ ମା' ସାରଳା ଠାକୁରାଣୀ ।"

କବି ନିଜକୁ ମା'ସାରଳାଙ୍କୁ ସମର୍ପଣ କରି ଲେଖିଛନ୍ତି :

"ଶ୍ରୀ ସାରଳା ଚଣ୍ଡୀଙ୍କର ଅଟେ ସଦା ଦାସ,
ଆଜ୍ଞାରେ ମୁଁ ଶାସ୍ତ୍ର କିଛି କରିଛି ଅଭ୍ୟାସ ।"

ପଶ୍ଚିମ ଓଡ଼ିଶାର ତଥା ସମ୍ବଲପୁର ଅଞ୍ଚଳର ପ୍ରାଚୀନ କବି ରତ୍ନ ଦାସ 'ସାରସ୍ୱତ ଗୀତା' ୧୭୪୦ ରୁ ୧୮୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚନା କରିଥିଲେ ହେଁ, ଏହି ଗୀତା ସେ କାଳରେ ଗମନର ସୁବିଧା ନଥିବା ସତ୍ତ୍ୱେ ସମଗ୍ର ଓଡ଼ିଶାରେ ଲୋକପ୍ରିୟ ହୋଇ ପାରିଥିଲା, ଏହାର ପ୍ରମାଣ -ଏହି 'ସାରସ୍ୱତ ଗୀତା'ର ନକଲ କଟକ ଓ ପୁରୀ ଜିଲ୍ଲାରୁ ଉଦ୍ଧାର କରାଯାଇଥିଲା ।ଏହି ରଚନା କବି ରତ୍ନ ଦାସ ମା' ସମଲେଶ୍ୱରୀଙ୍କ କରୁଣାରୁ ସମ୍ଭବ ହୋଇଥିବାରୁ କଥା ସ୍ୱୀକାର କରି ସେହି ଗୀତାରେ ଲେଖିଛନ୍ତି:-

"ଭାଦ୍ରବ ମାସ ଶୁକ୍ଳପକ୍ଷ । ବଡ଼ଦଶମୀ ଦିନ ଲେଖ ।
ସେ ଦିନେ ବୃହସ୍ପତି ବାର । ନୂଆ ଜଣାଣ ସେ ଦିନର ।
ସେ ଦିନ ନିଶି ଅର୍ଦ୍ଧଠାରେ । ସମଲେଶ୍ୱରୀ ବିଜେ କଲେ ।
ମୋତେ ପ୍ରସନ୍ନ ସେ ହୋଇଲେ । ମୋ' ରାଜ୍ୟ ନ ଯିବୁ ବୋଇଲେ ।"



"ସେ ଦେବୀ ଜନନୀ ମୋହର । ପିତା ନିରାକାର ।
ମାତା ପିତାଙ୍କ ଆଜ୍ଞା ପାଇ । ଏ ରାଜ୍ୟେ ରହି ଅଛି ମୁହିଁ ।
ସେ ମାତା ପିତାଙ୍କ ପ୍ରସନ୍ନ । ପଦ ସ୍ମରଇ ଘନ ଘନ ।"

*ବ୍ୟାସକବି ଫକୀରମୋହନ ମା' ସାରଳାଙ୍କୁ ବନ୍ଦନା କରି ଲେଖିଛନ୍ତି :-*

"ତୁମର ଅଭ୍ୟାସ କବି କଣ୍ଠେ ବସିବାର
ମୋ ପରେ ସେପରି କରନାହିଁ ଅବିଚାର
କଣ୍ଠରେ ବସିଲେ ହୋଇଯିବି ଯେ ହାଉଡା
କିପରି ଲେଖିବି ଆଉ ଗ୍ରନ୍ଥ ଦୁଇ ପୁଡ଼ା ।
ଉଶ୍ୱାସେ ବସିବ ମାତ ମୋ' ମୁଣ୍ଡରେ ଧୀରେ
ଝୁଙ୍କି ନ ପଡ଼ିବ ମୁଣ୍ଡ ଯେମନ୍ତ ଭାରିରେ ।"

*ଅଜ୍ଞାନ ସଂକଳୟିତା ଜଗତ୍‌ଜନନୀ ମା' ସାରଳାଙ୍କୁ ବନ୍ଦନା କରୁଛି :*

"ବନ୍ଦଇ ସାରଳା ମାଗୋ ତୋର ଶ୍ରୀଚରଣେ"

*ପୁଣି ଗଣେଶଙ୍କୁ ବନ୍ଦନା କରୁଛି :*

"ଓଁ ନମୋ ଗଣେଶ ! ବିଘ୍ନେଶ ଗିରିଜାନନ୍ଦନଂ ପ୍ରଭୋ!"
ଅସ୍ମଦ୍ ବିଘ୍ନ ବିନାଶାୟ ଗଣାଧିପତୟେ ନମଃ"

*ପୁଣି ନାରାୟଣଙ୍କୁ ପ୍ରାର୍ଥନା କରୁଛି :*

"ନାରାୟଣଂ ନମସ୍କୃତ୍ୟଂ ନରୋଚୈବ୍ୟଂ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସ ତଦୋଜୟ ମୁଦିରୟେତ୍
ମୁକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରି
ଯତ୍ କୃପା ତମହଂ ବନ୍ଦେ ପରାମାନନ୍ଦ ମାଧବ ।"

*ଲକ୍ଷ୍ମୀ ଠାକୁରାଣୀଙ୍କୁ ପ୍ରଣାମ କରୁଛି:*

"ଜଗତ କଲ୍ୟାଣମୟୀ ମହାଲକ୍ଷ୍ମୀ ନମସ୍ତୁତେ"

*ବୀଣାପାଣିଙ୍କଠାରୁ ଆଶିଷ ଭିକ୍ଷା କରୁଛି :*

ନମସ୍ତେ ମା' ବୀଣାପାଣି ବିଷ୍ଣୁଙ୍କ ଘରଣୀ

ବିଦ୍ୟାଦାୟିନୀ ଭାରତୀ-ଜଗତ-ଜନନୀ ।

ତୁମରି ସନ୍ତାନ ମୁହିଁ ଭକ୍ତିପୂତ ମନେ

ମାଗୁଛି ଆଶିଷ ମାଗୋ ତୁମ୍ଭରି ଚରଣେ ।''

*ପୁଣି ଉତ୍କଳଜନନୀ ପ୍ରତି ଭକ୍ତି ଦେଇ ଗାଉଚି କବି ମଧୁସୂଦନଙ୍କ ଭାଷାରେ-*

''ତୁହି ମା ଜନମ ଭୂମି

ପବିତ୍ର ଭାରତ ଭୂମି

ତୋହର ସନ୍ତାନ ମାଗୋ ଆମେ ଅଟୁ ସରବେ''



''ନମଇ ମା' ଭକତି ଭରେ

ଅଧମ ଅକ୍ଷତ ସୁତ ତୋ' ଚରଣରେ ।''

ଅବତରଣିକାରେ ଅବତୀର୍ଣ୍ଣ ହେବାର ଅବ୍ୟବହିତ ପୂର୍ବରୁ ଅଷ୍ଟାଦଶ ଶତାବ୍ଦୀର ମହାମହିମାନ୍ୱିତ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କର ପଦୁଟିଏ ପାଠକ ପାଠିକାମାନଙ୍କ ଉଦ୍ଦେଶ୍ୟରେ ଉପସ୍ଥାପିତ କଲି :

''ରସିକ ଗ୍ରାହକ ବିନା ଜଗତେ

କବି ଶ୍ରମ କେ ବୁଝିବ ଯୁଗତେ ?''

ମା' ସାରଳାଙ୍କ ପ୍ରାସାଦରୁ ସଂକଳିତ ପ୍ରସାଦ ପାଠକ, ପାଠିକାଙ୍କ ଆଗରେ ଥୋଇ, ସମସ୍ତଙ୍କୁ ଯୋଡ଼ହସ୍ତରେ ନମସ୍କାର କରୁଛି ।



# ପ୍ରବେଶିକା

ଏହି ବହିଟି ଉଲ୍ଲିଖିତ "ସାରଳା ରତ୍ନଭଣ୍ଡାର ରସ ସାଗର" ଗ୍ରନ୍ଥର ପ୍ରଥମ ଖଣ୍ଡ ମାତ୍ର ।

ଏହାର **ପ୍ରଥମାର୍ଦ୍ଧ**- ମହାନ୍‌ପଣ୍ଡିତ ଚାଣକ୍ୟଙ୍କ ଦ୍ୱାରା ପ୍ରଣୀତ (ଧନ, ଧର୍ମ, କାମ, କର୍ମ) ନୀତି ଓ ନିୟମ; ତତ୍‌ସହିତ କିଏ କାହାଠାରୁ ଶ୍ରେୟସ୍କର ତା'ର ବିଚାର ପଦ୍ଧତି ସନ୍ନିବେଶିତ ହୋଇଛି ।

ଏହାର **ଦ୍ୱିତୀୟାର୍ଦ୍ଧ**- ଦନେଇ ଦାସ ବଚନ (ପହଳି), କୃଷିବଚନ, ଡାକରଷିବଚନ, ଖନାବଚନ, କୁଞ୍ଜବନ ବଚନ ସହିତ ପୁରାଣ ବଚନ ଏବଂ ପଶ୍ଚିମ ଓଡ଼ିଶା ବୋଲି (କଥନିକା), ପ୍ରବାଦ, ବଚନ ତଥା ବଖାନି/ ଭକାନି ପ୍ରଭୃତି ସହିତ ମୟୂରଭଞ୍ଜର ପ୍ରାଚୀନ ଜାତୀୟ ସଙ୍ଗୀତ ଓ କିଛି ଲୋକଗୀତ; ଦକ୍ଷିଣ ଓଡ଼ିଶାର ଠାଣି, ପ୍ରବାଦ, ବଚନ ସହିତ ଓଡ଼ିଆରେ କେତେକ ସିଦ୍ଧି ସଂସ୍କୃତ ବଚନ ସମୂହ ସନ୍ନିବେଶିତ ହୋଇଛି ।

# ଅବତରଣିକା- ପ୍ରଥମାର୍ଦ୍ଧ

ଆଜକୁ ୨୩୨୧ ବର୍ଷ ପୂର୍ବରୁ (ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୩୨୧ ତଥା ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ପୂର୍ବରୁ) ତତ୍‌କାଳୀନ ଭାରତବର୍ଷର କାବୁଲ ନଦୀ ଓ ସିନ୍ଧୁ ନଦୀର ସଙ୍ଗମ ସ୍ଥଳରୁ ଦଶମାଇଲ ଉତ୍ତର ପଶ୍ଚିମକୁ 'ଚଣକ' ନାମକ ସ୍ଥାନରେ ଜଣେ ଯୋଗଜନ୍ମା ମନୀଷୀ ଜନ୍ମଗ୍ରହଣ କରିଥିଲେ । ଏହି ଯୋଗଜନ୍ମା ପୁରୁଷଙ୍କର ପିତାମାତା ଶ୍ରଦ୍ଧାରେ ତାଙ୍କର ନାମକରଣ କରିଥିଲେ ବିଷ୍ଣୁଗୁପ୍ତ (ଅର୍ଥ-ବିଷ୍ଣୁରକ୍ଷିତ) । ମାତ୍ର ତାଙ୍କର ଜନ୍ମସ୍ଥାନ 'ଚଣକ' ହୋଇଥିବାରୁ ସେ 'ଚାଣକ୍ୟ' ନାମରେ ପରିଚିତ ଏବଂ ଖ୍ୟାତ । ପୁଣି ସେ 'କୁଟଲ' ଗୋତ୍ରରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କର ନାମକରଣ ହୋଇଥିଲା 'କୌଟଲ୍ୟ' (କୁଟିଳତାର ସ୍ୱରୂପ କୌଟିଲ୍ୟ ନୁହେଁ) । ଏତଦ୍‌ବ୍ୟତୀତ ତାଙ୍କର ଆହୁରି ପାଞ୍ଚଟି ନାମ ଥିଲା, ସେଗୁଡ଼ିକ ହେଲା: (୧) ବାତ୍ସ୍ୟାୟନ (୨) ମଲ୍ଲନାଗ (୩) ଚଣକାତ୍ମଜ (୪) ଦ୍ରାମିଳ ସ୍ୱାମୀ (୫) ଅଙ୍ଗଳ । ସେ ଭାରତର ସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ପ୍ରଧାନମନ୍ତ୍ରୀ ଥିଲେ ।

ଏହି ମହାନ ପୁରୁଷ ସେତେବେଳେ (ଅର୍ଥାତ୍ ୨୩୦୦ ବର୍ଷ ପୂର୍ବେ) ଯେଉଁ ନୀତି- ନିୟମମାନ ସମାଜ ତଥା ଜନସାଧାରଣଙ୍କର ମଙ୍ଗଳ ପାଇଁ ନିରୂପଣ କରି ପ୍ରଣୟନ କରିଥିଲେ ତାହା ଆଜି ମଧ୍ୟ ପ୍ରତ୍ୟେକ ବ୍ୟକ୍ତିବିଶେଷଙ୍କ ଅତ୍ୟନ୍ତ ଉପାଦେୟ ଓ ପ୍ରଣିଧାନଯୋଗ୍ୟ । ତାଙ୍କଦ୍ୱାରା ପ୍ରଣୀତ ତେଇଶି ଶହ ବର୍ଷ ତଳର ଅର୍ଥଶାସ୍ତ୍ର (ଯେଉଁଥିରେ କି ନୀତି ନିୟମଗୁଡ଼ିକ ସନ୍ନିବେଶିତ ହୋଇଅଛି), ଦିନେ ସେଗୁଡ଼ିକ ତାଳପତ୍ର ପୋଥି ମଧ୍ୟରେ ଲୁକ୍କାୟିତ ହୋଇ ରହିଥିଲା । କିନ୍ତୁ ଆଜି ତାହା ପୃଥିବୀର ବିଭିନ୍ନ ଭାଷାରେ ଅନୂଦିତ ହୋଇ ଜ୍ଞାନୀ, ପଣ୍ଡିତ, ରାଜନୀତିଜ୍ଞ ତଥା ବ୍ୟକ୍ତିବିଶେଷଙ୍କ ପାଖରେ ପହଞ୍ଚିବା ସଙ୍ଗେ ସଙ୍ଗେ ଲୋକପ୍ରିୟତା ହାସଲ କରିଛି । ବ୍ୟକ୍ତିବିଶେଷ ଯେ କୌଣସି ଧର୍ମର ହୁଅନ୍ତୁ ନା କାହିଁକି, ଯେ କୌଣସି ବୃତ୍ତିର ହୁଅନ୍ତୁନା କାହିଁକି , ସଂସାର ବକ୍ଷରେ ବିଚରଣ କଲାବେଳେ ଚାଣକ୍ୟଙ୍କ ପ୍ରଣୀତ ନିୟମଗୁଡ଼ିକ ପ୍ରତ୍ୟେକ କ୍ଷେତ୍ରରେ,ପରିସ୍ଥିତିରେ ଏପରିକି ପ୍ରତ୍ୟେକ ମୁହୂର୍ତ୍ତରେ ପାଳନ କରାଗଲେ ବହୁବିଧ ସୁଫଳ ମିଳିଥାଏ । ୧୯୦୯ ମସିହାରେ ଡଃ ଆର. ଶ୍ୟାମ ଶାସ୍ତ୍ରୀ ଏହି ଅର୍ଥଶାସ୍ତ୍ରକୁ ଇଂରାଜୀରେ ଅନୁବାଦ କରିଥିଲେ । ୧୯୨୩ ମସିହାରେ ପଣ୍ଡିତ ଟି. ଗଣପତି ଶାସ୍ତ୍ରୀ ଏହାକୁ ପରିମାର୍ଜିତ କଲେ । ଏହି ଅର୍ଥଶାସ୍ତ୍ରକୁ ହିନ୍ଦୀ, ମରାଠୀ ଓ ବଙ୍ଗଳାଭାଷାରେ ଅନୁବାଦ କରଯାଇଛି । ଓଡ଼ିଆରେ ଏହାକୁ ଅନୁବାଦ କରିଛନ୍ତି ଓଡ଼ିଶାର ସୁନାମଧନ୍ୟ କବିରାଜ ପଣ୍ଡିତ ଶ୍ରୀ ଅନନ୍ତ ରାମ କର ଶର୍ମା ।

''ପଞ୍ଚତନ୍ତ୍ର'' ପ୍ରଣେତା ''ବିଷ୍ଣୁଶର୍ମା'' ନୀତିଶାସ୍ତ୍ରକାରମାନଙ୍କ ସହିତ ଅର୍ଥଶାସ୍ତ୍ରର ପ୍ରଣେତା 'ଚାଣକ୍ୟ'ଙ୍କୁ ନମସ୍କାର ଜଣାଇ ଲେଖିଛନ୍ତି:

''ମନୁ, ବୃହସ୍ପତି, ଶୁକ୍ର, ବ୍ୟାସ ସହିତ ପରାଶର, ବିଦ୍ୱାନ ଚାଣକ୍ୟ ଓ ଅନ୍ୟାନ୍ୟ ନୀତି ଶାସ୍ତ୍ରକାରମାନଙ୍କୁ ମୋର ନମସ୍କାର ।''

ସଂକଳୟିତା ମଧ୍ୟ ଅର୍ଥଶାସ୍ତ୍ର ପ୍ରଣେତା ମହାନ ଆତ୍ମା, ଯୋଗଜନ୍ମା, ତ୍ରିନାମଧାରୀ ପଣ୍ଡିତ ଚାଣକ୍ୟ, କୌଟଲ୍ୟ ତଥା ବିଷ୍ଣୁଗୁପ୍ତ ଏବଂ ସର୍ବୋପରି ଅନ୍ୟାନ୍ୟ ନୀତିଶାସ୍ତ୍ରକାର ମାନଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣତି ଜଣାଉଅଛି ।

ଏଥିସହିତ ଏହି ଅର୍ଥଶାସ୍ତ୍ରର ଅନୁବାଦକମାନଙ୍କୁ, ବିଶେଷକରି ଓଡ଼ିଆ ଅନୁବାଦ ପଣ୍ଡିତ ଶ୍ରୀ ଅନନ୍ତ ରାମ କର ଶର୍ମାଙ୍କୁ ପ୍ରଣାମ ଜଣାଉଅଛି । ପଣ୍ଡିତ ଶର୍ମାଙ୍କର ଓଡ଼ିଆ ଅନୁବାଦ ଗ୍ରନ୍ଥ ଓ ଆର.ପି. କାଙ୍ଗଲେଙ୍କର ଇଂରାଜୀ ଅନୁବାଦ ଗ୍ରନ୍ଥକୁ ଅବଲମ୍ବନ କରି ଏହି ପୁସ୍ତକର ପ୍ରଥମାର୍ଦ୍ଧ ସଂକଳିତ କରାଯାଇଛି ।

‘‘ଅର୍ଥଶାସ୍ତ୍ର’’ ପ୍ରଣୟନ କରି କୌଟଲ୍ୟ (ଚାଣକ୍ୟ) ନିଜେ ଲେଖିଛନ୍ତି:-

ପୃଥିବୀର ଲାଭ ଓ ପାଳନ ସକାଶେ ପୂର୍ବସୂରୀମାନେ ଯେଉଁ ସବୁ ଅର୍ଥଶାସ୍ତ୍ର ପ୍ରଣୟନ କରିଯାଇଛନ୍ତି, ପ୍ରାୟ ସେହି ଗ୍ରନ୍ଥମାନଙ୍କର ସାରାଂଶ ଗ୍ରହଣ କରି ଏହି ‘ଅର୍ଥଶାସ୍ତ୍ର’ ଆମ୍ଭଦ୍ୱାରା ପ୍ରଣୀତ ହେଲା ।

ମନୁଷ୍ୟ ମାନଙ୍କ ବୃତ୍ତି (ଯୋଗ୍ୟତା ଅନୁସାରେ ରୋଜଗାର କରିବାର ଉପାୟ) ବା ଜୀବିକାକୁ ‘ଅର୍ଥ’ କୁହାଯାଏ । ତେଣୁ ମନୁଷ୍ୟମାନଙ୍କର ମୁଖ୍ୟ ହେଉଛି ‘ଅର୍ଥ’। ଯେଉଁ ଶାସ୍ତ୍ର ଏହି ‘ଅର୍ଥଲାଭ’ ଓ ‘ଅର୍ଥ ପାଳନ’ର ଉପାୟ ନିରୂପଣ କରିଥାଏ ସେହି ଶାସ୍ତ୍ରର ନାମ ‘ଅର୍ଥଶାସ୍ତ୍ର’ । ତେଣୁ ଏହି ‘ଅର୍ଥଶାସ୍ତ୍ର’ ଧର୍ମ ଅର୍ଥ ଓ କାମର ପ୍ରବର୍ତ୍ତନ ଓ ପାଳନ କରେ ଏବଂ ଅଧର୍ମ ଓ ଅର୍ଥ ବିଦ୍ୱେଷର ମଧ୍ୟ ବିନାଶ ଘଟାଏ ।

ଯେଉଁ ଚାଣକ୍ୟ ନନ୍ଦରାଜାଙ୍କର ଅନୀତିରେ ଅତିଷ୍ଠ ତଥା ଅସହିଷ୍ଣୁ ହୋଇ ତାଙ୍କ ଦ୍ୱାରା କବଳିତ ସାମ୍ରାଜ୍ୟକୁ ଉଦ୍ଧାର କରିଥିଲେ, ସେହି ମହାନ୍ ପଣ୍ଡିତ ଏହି ‘ଅର୍ଥଶାସ୍ତ୍ର’ ପ୍ରଣୟନ କରିଛନ୍ତି ।

ପ୍ରତ୍ୟେକ ସାଂସାରିକ ବ୍ୟକ୍ତି, ପୁରୁଷ ହୁଅନ୍ତୁ ବା ସ୍ତ୍ରୀ ହୁଅନ୍ତୁ ଏହି ନୀତି ନିୟମକୁ ଅକ୍ଷରେ ଅକ୍ଷରେ ପାଳନ କରିପାରିଲେ, ସେମାନଙ୍କ ସାମାଜିକ ଜୀବନ ସୁଖମୟ ଓ ନିରାମୟ ହୋଇପାରିବ । ତେଣୁ ଏଗୁଡ଼ିକର ଉପାଦେୟତା ସମସ୍ତେ ଉପଲବ୍ଧି କରନ୍ତୁ, ଏହାକୁ ପ୍ରତି ପଦେ ପଦେ ପାଳନ କରନ୍ତୁ ଏହାହିଁ ପ୍ରଭୁଙ୍କ ପାଖରେ ଅଧମ ସଂକଳୟିତାର ଏକାନ୍ତ ନିବେଦନ ଓ ପ୍ରାର୍ଥନା ।

## ଅବତରଣିକା -ଦ୍ୱିତୀୟାର୍ଦ୍ଧ

ଦନାଇ ଦାସ ବଚନ (ପହଳି), କୃଷି ବଚନ, ପ୍ରବାଦ, ପ୍ରବଚନ ପ୍ରଭୃତି ଅନେକ ଉପଦେଶାତ୍ମକ ଓ ଅନୁଭବସିଦ୍ଧ ପଦମାନ ଓଡ଼ିଶାର ଗ୍ରାମ୍ୟ ସମାଜରେ, ଲୋକମାନଙ୍କର ଦୈନନ୍ଦିନ ଜୀବନରେ ଯେପରି ବ୍ୟବହାର ହେଉଥିଲା, ଆଜି ତାହା ନିଷ୍ପ୍ରଭ । ‘ପହଳି’ ଓ ‘ପ୍ରହେଳିକା’ ଦୁଇଟି ଅଲଗା ଅଲଗା କଥା । ‘ପ୍ରହେଳିକା’କୁ ନାଁ ଦିଆ ବୋଲି କହିଲାବେଳେ, ‘ପହଳି’ କୁ ଉପଦେଶପୂର୍ଣ୍ଣ ଓ ଅନୁଭବସିଦ୍ଧ ବଚନ ବୋଲି କୁହାଯାଏ ।

ଏହି ପ୍ରବଚନ, ପ୍ରବାଦ, ପ୍ରଭୃତି ଗୁଡ଼ିକୁ କିଏ କେତେବେଳେ ସୃଷ୍ଟି କରିଥିଲା; ପହଳି ରଚୟିତା ଦନାଇ ଦାସ କିଏ, କୁଞ୍ଜବନ ବଚନର କୁଞ୍ଜବନ କିଏ; ଡାକ ଋଷି

ବଚନର ତାକରର୍ତ୍ତି କିଏ; ପୁଣି କୃଷି ବଚନର ପ୍ରଣେତାଙ୍କର ନାମ କ'ଣ ଓ ଏଗୁଡ଼ିକର ରଚନା କାଳ କେବେ ତାହା ଠଉରେଇବା କାଠିକର ପାଠ । ତେଣୁ ଏହି ବଚନ, ପ୍ରବଚନ, ପ୍ରବାଦଗୁଡ଼ିକୁ କେଉଁମାନେ ପ୍ରଣୟନ କରିଥିଲେ ଓ କେବେ କରିଥିଲେ ସେ ସଂପର୍କରେ ଗବେଷଣା ସାପେକ୍ଷ ।

ଓଡ଼ିଶାର ପ୍ରଖ୍ୟାତନାମା ଓକିଲ, ସାରସ୍ୱତ ପୂଜାରୀ ତଥା ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ପ୍ରଣେତା ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ପ୍ରଣୀତ ଓଡ଼ିଆ ଲୌକିକ ପଦ ବା ଢ଼ଗ ଢ଼ମାଳି ବଚନ ପୁସ୍ତକରୁ ପ୍ରଥମ ଭାଗ ଅବତରଣିକାରେ, ପ୍ରବାଦ, ପ୍ରବଚନର ଉତ୍ପତ୍ତି ସଂପର୍କରେ ସେ ଲେଖିଛନ୍ତି - ''ଏଗୁଡ଼ିକ ବହୁ ପୁରୁଷାର୍ଜ୍ଜିତ ଅନୁଭବରୁ ସମାଜର ପ୍ରବୀଣ, ଜ୍ଞାନୀ ଓ ବୁଢ଼ା ବୁଢ଼ୀମାନଙ୍କ ଦ୍ୱାରା କଢ଼ାଯାଇଥିବା 'ଏସେନ୍ସ' ବା ଅର୍କ ବା ସାରାଂଶ ।'' ପୁଣି ପ୍ରବଚନଗୁଡ଼ିକର କେବଳ ସଂଗ୍ରାହକମାନଙ୍କ ସଂପର୍କରେ ଦର୍ଶାଇଛନ୍ତି ଯେ - (୧) ୧୮୭୬ ମସିହାରେ ସ୍ୱର୍ଗତ ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମା ଓଡ଼ିଶାର ତତ୍‌କାଳୀନ କମିଶନର ରେଭେନ୍ସା ସାହେବଙ୍କ ଆନୁକୂଲ୍ୟରେ ଢ଼ଗ ସଂଗ୍ରହ କରି ପୁସ୍ତକ ଆକାରରେ ପ୍ରକାଶ କରିଥିଲେ (୨) ୧୯୦୩ ମସିହାରେ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ପ୍ରଣୀତ 'ପ୍ରବାଦ ପୁଷ୍ପାଞ୍ଜଳି' ପ୍ରକାଶିତ ହୋଇଥିଲା (୩) ୧୯୧୪ ମସିହାରେ ପୁରୀ ଜିଲ୍ଲାବାସୀ ସବ୍‌ଡେପୁଟି କଲେକ୍ଟର ବାବୁ ରାଘବାନନ୍ଦ ଦାସ ଗୁଡ଼ିଏ କୃଷିବଚନ ସଂଗ୍ରହ କରି ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ରଚନା କରିଥିଲେ (୪) କଟକର ମୁନସୀ ଶେଖ୍ ଅବଦୁଲ ମଜିଦ୍‌ଙ୍କ ଦ୍ୱାରା 'ଢ଼ଗମାଳିକା' ବା 'ଢ଼ଗରତ୍ନାକର' ନାମରେ ଗୋଟିଏ ପୁସ୍ତକ ପ୍ରକାଶ ପାଇଥିଲା (୫) ପୁରୀ ଜିଲ୍ଲାର ଚନ୍ଦ୍ରଶେଖର ବାହିନୀପତିଙ୍କ ଦ୍ୱାରା 'ପରିହାସ ଦର୍ପଣ' ପ୍ରକାଶ ପାଇଥିଲା (୬) ଖୋରଧା ହାଇସ୍କୁଲର ପଣ୍ଡିତ ଭଗବାନ ହୋତାଙ୍କ ଦ୍ୱାରା ଲିଖିତ 'ଓଡ଼ିଆ ପ୍ରବାଦ ମାଳା' ନାମରେ ଖଣ୍ଡେ ବହି ପ୍ରକାଶିତ ହୋଇଥିଲା । ଏହା ବ୍ୟତୀତ ସ୍ୱର୍ଗତ ବଟକୃଷ୍ଣ ପ୍ରହରାଜଙ୍କ ଦ୍ୱାରା 'ଓଡ଼ିଆ ପ୍ରହେଳିକା ସଂଗ୍ରହ' ବହୁ ପୂର୍ବରୁ ସଂଗୃହୀତ ହୋଇଥିଲେ ମଧ୍ୟ ୧୯୬୩ ମସିହାରେ ପ୍ରକାଶ ପାଇଥିଲା । କେବଳ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ପ୍ରଣୀତ 'ଓଡ଼ିଆ ଲୌକିକ ପଦ ବା ଢ଼ଗଢ଼ମାଳି ବଚନ' କଟକ ଟ୍ରେଡିଂ କଂପାନୀ ଦ୍ୱାରା ପୁନର୍ବାର ୧୯୯୦ ମସିହାରେ ପ୍ରକାଶ ପାଇଛି । ଏହାଛଡ଼ା ଏ ସଂପର୍କୀୟ ଅନ୍ୟ ଉଲ୍ଲିଖିତ ବହି ଗୁଡ଼ିକ ଅଲଭ୍ୟ । ତେବେ ଲୋକରତ୍ନ ଡଃ କୁଞ୍ଜବିହାରୀ ଦାଶ ଏବଂ କେତେକ ସଂକଳୟିତା ଏଗୁଡ଼ିକୁ ସାଉଁଟା ସାଉଁଟି କରି ପ୍ରକାଶିତ କରାଇଛନ୍ତି ।

ତେଣୁ ଅନୁମାନ କରାଯାଏ ଯେ- ଆଜିଠାରୁ (୧୯୯୬ ମସିହାଠାରୁ) ପ୍ରାୟ ୧୨୫ ବର୍ଷ ତଳେ ଏହି ପ୍ରବଚନଗୁଡ଼ିକ ଲୋକ ମୁଖରୁ ସଂଗୃହୀତ ହୋଇ ପ୍ରକାଶିତ ହେବା କାର୍ଯ୍ୟ ଆରମ୍ଭ ହୋଇଥିଲା । କାରଣ ସେତେବେଳକୁ ଏହି ପ୍ରବାଦ, ପ୍ରବଚନ ଗୁଡ଼ିକ ବିସ୍ମୃତିର ଅତଳ ଗର୍ଭକୁ ଚାଲି ଯାଇଥିବାର ମନେ ହୁଏ । ତେଣୁ କେବଳ ଅନୁମାନ କରିବା କଥା ଯେ- ଏଗୁଡ଼ିକର ଉତ୍ପତ୍ତି ଅନ୍ତତଃପକ୍ଷେ ଆହୁରି ହଜାରେ ବର୍ଷରୁ ଊର୍ଦ୍ଧ୍ୱ ହେବ ସିନା କମ୍ ନୁହେଁ । ପୁଣି ଏଗୁଡ଼ିକର ଉତ୍ପତ୍ତିର କ୍ରମ ବିକାଶ ହେବାପାଇଁ ଶହ ଶହ ବର୍ଷ ଲାଗିଥିବ । ସୁତରାଂ ଉପରଠାଉରିଆ ଭାବରେ ଏହା କୁହାଯିବ ସିନା, ନିଛକ ଭାବେ ଏଗୁଡ଼ିକର ଉତ୍ପତ୍ତିର କାଳ ନିରୂପଣ ତଥା ନିର୍ଣ୍ଣୟ କରିବା ସଂକଳୟିତାଙ୍କ ପକ୍ଷରେ ହାସ୍ୟାସ୍ପଦ । ତଥାପି ମା'ସାରଳାଙ୍କ ଅନୁକମ୍ପାରୁ ଏ ସଂପର୍କରେ କିଞ୍ଚିତ ଆଲୋକପାତ କରିବା ପାଇଁ ସଂକଳୟିତା ପ୍ରଚେଷ୍ଟା କରିଛନ୍ତି ମାତ୍ର ।

ମଗଧ ସମ୍ରାଟ ଅଶୋକ ଖ୍ରୀଷ୍ଟପୂର୍ବ ୨୬୧ରେ କଳିଙ୍ଗ ଅଧିକାର କରିଥିଲେ । କଳିଙ୍ଗ ଯୁଦ୍ଧର ମର୍ମାନ୍ତୁକ ଭୟାବହତାରେ ଚଣ୍ଡାଶୋକ ଅଶୋକ ବୌଦ୍ଧଧର୍ମ ଗ୍ରହଣ କରି ଧର୍ମାଶୋକ ହେଲେ । ଏହି ଯୁଦ୍ଧରେ ଦେଢ଼ ଲକ୍ଷ କଳିଙ୍ଗ ସୈନ୍ୟ ବନ୍ଦୀ ହୋଇଥିଲେ । ଏକ ଲକ୍ଷ ସୈନ୍ୟ ମରିଥିଲେ । ଏହାଠାରୁ ଅଧିକ ସୈନ୍ୟ ହତାହତ ହୋଇଥିଲେ । ଏହାର ପ୍ରମାଣ ଧଉଳିର ଶିଳାଲିପିରୁ ମିଳିଛି । ସେତେବେଳେ କଳିଙ୍ଗର ସୈନ୍ୟସଂଖ୍ୟା ୫ ଲକ୍ଷ ଥିଲା ବୋଲି ଇତିହାସ କୁହେ । ଅଶୋକଙ୍କ ପରେ ପରେ କଳିଙ୍ଗ ସୈନ୍ୟବାହିନୀର ବିକାଶ ଚରମ ସ୍ଥାନରେ ପହଞ୍ଚିଥିଲା । କାରଣ ଖ୍ରୀଷ୍ଟପୂର୍ବ ୨୦୦ ପରେ ମହାପରାକ୍ରମୀ କଳିଙ୍ଗ ସମ୍ରାଟ ଖାରବେଳ ମଗଧ ରାଜାଙ୍କୁ ପରାସ୍ତ କରି ମଗଧର ଶକ୍ତିକୁ ସଂପୂର୍ଣ୍ଣ ଭାବେ ପରାହତ କରିପାରିଥିଲେ । ସମ୍ରାଟ ଖାରବେଳ ସଂଗୀତ ପ୍ରିୟ ଥିବା ସଙ୍ଗେ ସଙ୍ଗେ ଜଣେ ସଂଗୀତଜ୍ଞ ମଧ୍ୟ ଥିଲେ । ଏହାର ପ୍ରମାଣ ହାତୀ ଗୁମ୍ଫା ଶିଳା ଲିପିରୁ ମିଳୁଛି ।

ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀରେ ଲେଖାଯାଇଥିବା ହାତୀଗୁମ୍ଫା ଶିଳା ଲିପିରୁ ଓଡ଼ିଶା (କଳିଙ୍ଗ)ରେ ସଂଗୀତ ପ୍ରଚଳନ ଥିବାର ନଜିର ମିଳୁଛି ।

ପୁଣି ଐତିହାସିକ ମତାନୁସାରେ ଉପରଲିଖିତ ଶିଳାଲିପିର ବହୁ ପୂର୍ବରୁ, ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀ ପୂର୍ବରୁ ସଂଗୀତର ପ୍ରଚଳନ ଓଡ଼ିଶାର ଆଦିବାସୀ ମାନଙ୍କ ମଧ୍ୟରେ ଥିଲା । ଏହି ଆଦିବାସୀ ସଂଗୀତକୁ ପରିମାର୍ଜିତ କରାଯାଇ ଓଡ଼ିଶାର ସମତଳ ଅଞ୍ଚଳରେ ଏହା ପରିବେଷଣ କରାଯାଉଥିଲା । ଏହି "ଆଦିବାସୀ" ମାନେ ହଜାର

ହଜାର ବର୍ଷ ପୂର୍ବେ, ଏକ ସମୟରେ ସୁସଭ୍ୟ, ସୁମୁନ୍ନତ ଓ ସମୃଦ୍ଧ ଥିଲେ ଏବଂ ସେହିମାନଙ୍କର ଉତ୍ତରାଧିକାରୀ ଆମେମାନେ । ଅଜିର ଭାଷା, ସାହିତ୍ୟ ଓ ଧର୍ମବିଶ୍ୱାସ, ସେହିସମୟର ଭାଷା, ସାହିତ୍ୟ ଓ ଧର୍ମବିଶ୍ୱାସର କ୍ରମୋନ୍ନତି । ଏକଥା, ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ପ୍ରଣୀତ ପୁସ୍ତକ ''ସାହିତ୍ୟର ମାର୍ଗ ଉନ୍ମୋଚନ'' (୨ୟ ଖଣ୍ଡ) ରେ ଲେଖିଛନ୍ତି ।

ସେହିପରି ଭୌମ ବଂଶର (ଶାସନକାଳ ଖ୍ରୀ.ଅ.୭ମ ଶତାବ୍ଦୀରୁ ୮ମ ଶତାବ୍ଦୀ) ଶୁଭଙ୍କର ଦେବ ସଂଗୀତ ପ୍ରିୟ ଥିଲେ ଓ ସଂଗୀତ ପ୍ରସାରରେ ପୃଷ୍ଠପୋଷକତା କରିଥିଲେ ।

ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ବୌଦ୍ଧଧର୍ମର ପ୍ରଚାର ପେଣ୍ଠ ଅଧୁନା ଗଞ୍ଜାମ ଜିଲ୍ଲାର ବୁଗୁଡା ନିକଟବର୍ତ୍ତୀ ବୁଦ୍ଧଖୋଲରେ ଥିଲା । ଭୟାବହ କଳିଙ୍ଗ ଯୁଦ୍ଧର ଅବସାନର ଛ'ବର୍ଷ ପରେ (ଖ୍ରୀ.ପୂ. ୨୬୧) ସମ୍ରାଟ ଅଶୋକଙ୍କ ଦ୍ୱାରା ଗଞ୍ଜାମ ଜିଲ୍ଲାର ଜଉଗଡ଼ଠାରେ ଯେଉଁ ଅନୁଶାସନ ଖୋଦିତ ହୋଇଥିଲା ତାହା ଅଦ୍ୟାବଧି ବିଦ୍ୟମାନ । ପୁଣି ଖ୍ରୀ.ପୂ. ୭ମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ରୂପେ ପରିଗଣିତ ହେବାର ନଜିର ଚୀନ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ପ୍ରତୀୟମାନ ହୁଏ ।

ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ସମ୍ରାଟ ଅଶୋକଙ୍କର ଯେଉଁ ଧର୍ମାନୁଶାସନ ଧଉଳି ଓ ଜଉଗଡ଼ଠାରେ ଲିପିବଦ୍ଧ ହୋଇଛି, ସେଗୁଡ଼ିକ ଓଡ଼ିଶାର ପ୍ରାଚୀନତମ ଲିପି । ଯାହାକୁ 'ବ୍ରାହ୍ମିଲିପି' ବୋଲି କୁହାଯାଏ, ଏହା ବିଶାରଦ ମାନଙ୍କର ମତାମତ । ଏହି ପ୍ରାଚୀନ ଓଡ଼ିଆ ଲିପି ଯୁଗ ଯୁଗ ଧରି ପରିମାର୍ଜିତ ଓ ପରିବର୍ତ୍ତିତ ହୋଇ ଅବଶେଷରେ ଆଧୁନିକ ଓଡ଼ିଆ ଲିପିରେ ପରିଣତ ହେବା ଅନୁମାନସିଦ୍ଧ । ତେଣୁ ଏହା ନିଛକ ଭାବରେ କୁହାଯାଇପାରେ ଯେ ଓଡ଼ିଆ ଭାଷାର ଉତ୍ସ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ବହୁ ପୂର୍ବରୁ ହୋଇଥିବ । ଅର୍ଥାତ୍ ଓଡ଼ିଆ ଭାଷା ଆଜକୁ ପ୍ରାୟ ୨୦୦୦ ବର୍ଷ ପୂର୍ବର ।

ବୌଦ୍ଧଧର୍ମର ପ୍ରଚାରକମାନେ ଧର୍ମପ୍ରଚାର ପାଇଁ ଓଡ଼ିଆର ପ୍ରାକୃତ ଭାଷା ଅର୍ଥାତ୍ ସହଜ ଭାବରେ ବୁଝିପାରିବା ଭଳି ସହଜିଆ ଓଡ଼ିଆ ଭାଷା ଅବଲମ୍ବନ କରିବା ସ୍ୱାଭାବିକ । ଏଣୁ ୭ମ ଶତାବ୍ଦୀରୁ ୯ମ ଶତାବ୍ଦୀ ମଧ୍ୟରେ ଓଡ଼ିଆ ଭାଷା ସାହିତ୍ୟ 'ବୌଦ୍ଧଗାନ' ଓ 'ଦୋହା' ବା 'ଚର୍ଯ୍ୟାଗୀତିକା' ପ୍ରଭୃତି ମାଧ୍ୟମରେ ସୃଷ୍ଟି ହୋଇଥିବାର କୁହାଯାଏ । ଏଗୁଡ଼ିକ ଓଡ଼ିଆ ଭାଷାର ପ୍ରାଚୀନତମ ରଚନା ।

ବୌଦ୍ଧ ଧର୍ମର 'ବଜ୍ରଯାନ' ସଂପ୍ରଦାୟ, ପରକୀୟା ପ୍ରୀତି ଏବଂ ପରକୀୟା ରତିକୁ ମହାସୁଖଲାଭର ଏକମାତ୍ର ପନ୍ଥା ବୋଲି ଗ୍ରହଣ କରି, ପତିପତ୍ନୀ ସଂପର୍କିତ ପବିତ୍ର ଯୌନ ସମ୍ବନ୍ଧର ରତିସୁଖକୁ ନଗଣ୍ୟ ବୋଲି ପ୍ରତିପାଦିତ କରି ସହଜିଆ ଧର୍ମ ଅର୍ଥାତ୍ 'ସହଜଯାନ'ର ପ୍ରଚାର ଆରମ୍ଭ କରିଥିଲେ । ବଜ୍ରଯାନୀମାନଙ୍କ ମତାନୁସାରେ ଏହି ପରକୀୟା ପ୍ରୀତି ତଥା ରତି, ଜାତି, ଗୋତ୍ର ରକ୍ତସଂପର୍କ ନିର୍ବିଶେଷରେ କରାଯାଇପାରେ, ପୁଣି ସ୍ତ୍ରୀର ରଜସ୍ୱଳା ଦିବସର ବାଛବିଚାର କରାଯାଏ ନାହିଁ । ଏହି ପ୍ରୀତି ଓ ରତିର ଉପଭୋଗ୍ୟାମାନେ ହାଡ଼ିଆଣୀ, ଚମାରୁଣୀ, ବାଉରାଣୀ, ପାଲୁଣୀ ଯେ କେହି ହୋଇପାରନ୍ତି ।

୭ମ ଶତାବ୍ଦୀରେ ଅଧୁନା ସମ୍ବଲପୁର ଜିଲ୍ଲାର ତତ୍କାଳୀନ ରାଜା ଇନ୍ଦ୍ରଭୂତି ଓ ତାଙ୍କ ଭଉଣୀ ଲକ୍ଷ୍ମୀକରା ଉଭୟେ 'ବଜ୍ରଯାନ' ତଥା 'ସହଜ ଯାନ' ଧର୍ମର ପ୍ରଚାରକ ଥିଲେ । 'ବଜ୍ରଯାନ' ଧର୍ମ ଲୋକାଭିମୁଖୀ ହେଉ ବା ନ ହେଉ ଏହା ପ୍ରତି ରାଜାନୁରାଗ ଥିବା ହେତୁ ବହୁ ସିଦ୍ଧ ପୁରୁଷ ଏବଂ ଶିଷ୍ୟମାନେ ରାଜଛତ୍ର ତଳେ ପରିପୋଷିତ ହୋଇ ବହୁ ଗୀତିକା ରଚନା କରିଥିବାର ପ୍ରତୀୟମାନ ହୁଏ ।

ଓଡ଼ିଆ ବୋଲି -(ପ୍ରଥମ ଖଣ୍ଡ) ସଂପାଦନା ଶ୍ରୀ ସୁରେଶ ଚନ୍ଦ୍ର ଜେନା ୧୯୮୩ । ଓଡ଼ିଆ ବୋଲିର ଶୁଭାରମ୍ଭ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଅର୍ଥାତ୍ ଖ୍ରୀଷ୍ଟାବ୍ଦ ୧୪୦୧ ରୁ ୧୫୦୦ ପର୍ଯ୍ୟନ୍ତ ବୋଲି ପଣ୍ଡିତ ନୀଳମଣି ମିଶ୍ର ମତବ୍ୟକ୍ତ କରିଛନ୍ତି ।

ପଞ୍ଚଦଶ ଶତାବ୍ଦୀର ରଚିତ ଅର୍ଜ୍ଜୁନୀ ଦାସଙ୍କ 'ଫୁଲମାଳ ବୋଲି' କୁ ପ୍ରଥମ ରଚନା ବୋଲି ଗ୍ରହଣ କରାଯାଇଛି । କବି ଦନେଇ ଦାସ/ ଦନାଇ ଦାସ ତାଙ୍କର 'ରସ ସାଗର ବୋଲି'ରେ ଲେଖିଛନ୍ତି ଯେ :

ପରାକୃତ ସଂସ୍କୃତରୁ ବାହାର । ଦେଶାଧି ଭାଷାରେ ବୋଲି ପ୍ରକାର ।
କୃଷ୍ଣ କଥା ଯହିଁ ଅଛି ମିଶାଇ । ସୁଜନେ ଶୁଣିମା ଆନନ୍ଦ ହୋଇ ।

ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ କବି ମାର୍କଣ୍ଡ ଦାସ, କବି ବତ୍ସା ଦାସ ଯଥାକ୍ରମେ 'କେଶବ କୋଇଲି' ଓ 'କଳସା ଚଉତିଶା'ର ରଚୟିତା ଅଟନ୍ତି । ପୁଣି ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଶାର ଆଦିକବି ଶୁଦ୍ରମୁନି ସାରଳା ଦାସ ଆସିଗଲେଣି । ତା'ପରେ ଷୋଡ଼ଶ ଶତାବ୍ଦୀରେ ଆସିଲେ ଓଡ଼ିଶାର 'ପଞ୍ଚସଖା' (ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ ଓ ଯଶୋବନ୍ତ ଦାସ ଏହି ୫ ଜଣ ସନ୍ଥ କବି) ।

'ରସ ସାଗର ବୋଲି'- (କ) ଓ.ଏଲ./୧୧୮୩ ପୋଥିଟି କଟକ ଜିଲ୍ଲା ପଟିଆ ଗ୍ରାମସ୍ଥ ଶ୍ରୀ ମଧୁସୂଦନ ଦେବଙ୍କଠାରୁ ସଂଗୃହୀତ ହୋଇଛି ।

(ଖ) ଓ.ଏଲ./୧୦୪୭ ମୂଳ ପୋଥିଟି ଭୁବନେଶ୍ୱରର ଦାମୋଦର ଦାସଙ୍କ ଠାରୁ ସଂଗୃହୀତ ହୋଇଛି । ଏହି ପୋଥିଟି ୨୫-୧୧-୭୧ରିଖରେ ଶ୍ରୀ ଭାଗବତ ତ୍ରିପାଠୀଙ୍କ ଦ୍ୱାରା ନକଲ କରାଯାଇଥିବାର ଉଲ୍ଲେଖ ଅଛି ।

(ଗ) ଓ.ଏଲ./୫୨୭ ପୋଥିଟି ଭୁବନେଶ୍ୱରରେ ଦାମୋଦର ଦାସଙ୍କଠାରୁ ସଂଗୃହୀତ ହୋଇଛି । ଏହି ସଂଗୃହୀତ ପୋଥିର ୭ଟି ପଦ ଏହିପରି ଅଟେ :

ଶ୍ରୀ ଅଙ୍ଗେ ଚନ୍ଦନ ରତ୍ନ କଚଟୀ । ପୀତ ପାଟଳୀ ଓଡ଼ିଆଣୀ କଟୀ ।୬୫୩।
ଚରଣେ ନେପୂର ଶୋହେ ବାଜେଣି । ହୀନ ଦନାଇର ମନ ବାନ୍ଧେଣି ।୬୫୪।
ଘର ଗିରସ୍ତ ପ୍ରାୟେ ହୋଇକରି । ପର ମାଇପକୁ ଥାଇ ଆବୋରି ।୬୫୮।
ରାଜାହି ପୁଣି ନ କରେ ଯେମନ୍ତ । ଆବୋରି ଶୋଇଛି ଯେହ୍ନେ ଗିରସ୍ତ ।୬୫୯।
ସସୁନ୍ଦର ବୋହୂଝିଅ ଥିବେ ଯାହାର । ତାହା ହରୁଥିବେ ନନ୍ଦକୁମର ।୬୬୦।
ମାଳିତ ଗୌରବ ନାହିଁ ତାହାରି । ହରିଲା ଗୋପପୁର ସବୁ ସ୍ତିରୀ ।୬୬୧।
କହିଲେ ତା' କଥା ସରଇ ନାହିଁ । ହୀନ ଦନା ଛାର କହିବ କାହିଁ ।୬୪୨।



ହୀନ ଦନା ଛାର ହୀନ ସ୍ୱଭାବ
ସାଧୁଜନମାନେ ହରିଙ୍କି ଭାବ ।୭୮୨।
ଆପଣେ ଅଧମ ପରେ ଡିଆରି
ଯେହ୍ନେ କହୁଥାଇ ବିଟପ ନାରୀ ।୭୮୩।
ମୁଁ ଅବା କୃଷ୍ଣ କଥାରେ ଅପ୍ରୀତି
ପରକୁ କହି କରେ ସ୍ନେହମତି ।୭୮୪।
ରସସାଗର ବୋଲି ହେଲା ସରି
ଦୀନ ଦନା ସେବେ ଶାରଙ୍ଗ ଧାରୀ ।୭୮୫।

'ରସ ସାଗର ବୋଲି'ର କବି ଦନାଇ ଦାସ ଖ୍ରୀ ୧୭୧୦ ବା ୧୭୨୦ ରୁ ଖ୍ରୀ ୧୭୭୦ ବା୧୭୮୦ ମସିହା ପର୍ଯ୍ୟନ୍ତ ଜୀବିତ ଥିଲେ ବୋଲି ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ମତ ।

ମାତ୍ର ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' (୨ୟ ଭାଗ)ରେ 'ଦନାଇ ଦାସ' ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧ ବା ଷୋଡ଼ଶ ଶତାବ୍ଦୀର ପ୍ରଥାମର୍ଦ୍ଧର ଲୋକ ବୋଲି ଉଲ୍ଲେଖ କରିଛନ୍ତି । କବିଙ୍କର 'ଗୋପୀ ବିରହ ବୋଲି' ଶ୍ରେଷ୍ଠ ରଚନା । 'ଗୋପୀ ଭାଷା' ତାଙ୍କର ଅନ୍ୟ ଏକ ଲେଖା ।

ଉଭୟ ପଣ୍ଡିତ ନୀଳମଣି ମିଶ୍ର ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତକୁ ମିଶାଇ ଦେଲେ ଦନାଇ ଦାସଙ୍କୁ ଓଡ଼ିଆ ବୋଲିର ଆଦ୍ୟ କବି ହିସାବରେ ଗଣନା କରାଯିବ । ତାହା ହେଲେ ଖ୍ରୀ ୧୪୫୦ ଓ ୧୫୫୦ ମଧ୍ୟରେ 'ପହଲି' ମାଳା ଗୁଡ଼ିକ ଦନାଇ ଦାସଙ୍କ ଦ୍ୱାରା ଭଣିତ ହୋଇଥିଲେ ତାହାର ରଚନାକାଳ ନିଶ୍ଚୟ ଖ୍ରୀ ୧୪୫୦ ପରଠାରୁ ଖ୍ରୀ ୧୫୫୦ ମଧ୍ୟରେ ହୋଇଥିବ । ଅର୍ଥାତ୍ ଆଜକୁ (୧୯୯୬), ୫୦୦ ବର୍ଷ ତଳର ହେବ । ମାତ୍ର ଏ ସଂପର୍କରେ କୌଣସି ପୋଥି ଆବିଷ୍କୃତ ହୋଇଥିବାର ନଜିର ନାହିଁ କିମ୍ବା ଜାଜ୍ଜ୍ୱଲ୍ୟମାନ ପ୍ରମାଣ ନାହିଁ । ତେଣୁ 'ଗୋପୀଭାଷା' ତଥା 'ରସ ସାଗର ବୋଲି' କବି ଦନାଇ ଦାସଙ୍କୁ 'ପହଲି' ରଚୟିତା 'ଦନାଇ' ଏକ ବୋଲି କହିବା କେବଳ ଆନୁମାନିକ ।

ଶ୍ରୀ ବଟକୃଷ୍ଣ ପ୍ରହରାଜ ଦନାଇ ଦାସ ଓ ଗୋପୀଭାଷାର ରଚୟିତା ଜନାର୍ଦ୍ଦନ ଦାସଙ୍କୁ ଏକ ଲୋକ ବୋଲି ଗ୍ରହଣ କରିଛନ୍ତି । ମାତ୍ର ଗୋପୀ ଭାଷାର ମୁଖବନ୍ଧରେ ଶ୍ରୀ ବିଛନ୍ଦ ଚରଣ ପଟ୍ଟନାୟକ 'ଗୋପୀଭାଷା'ର ରଚୟିତା ଦନାଇ ଦାସ ବୋଲି କହନ୍ତି ।

ପୁଣି 'ପ୍ରବଚନ ତରଙ୍ଗ'ର ଭୂମିକାରେ ସଂକଳକ ସ୍ୱପ୍ନେଶ୍ୱର ଦାସ କବି ଭୂଷଣ, ଦନାଇ ଦାସ, ପଶ୍ଚିମ ଓଡ଼ିଶାର ବରପାଲୀ ଜମିଦାରୀ ଅନ୍ତର୍ଗତ ଲେଣ୍ଡା ଗ୍ରାମର ଲୋକ ଓ ସେଠାରେ ଜନ୍ମଗ୍ରହଣ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ମାତ୍ର ଲୋକରତ୍ନ କୁଞ୍ଜବିହାରୀ ଦାଶ ଦନାଇ ଦାସଙ୍କୁ ପ୍ରାଚୀନ କବି ହିସାବରେ ଗଣ୍ୟ କରି ନାହାନ୍ତି ଓ ସମ୍ବଲପୁର ଅଞ୍ଚଳର ଲୋକ ବୋଲି ସ୍ୱୀକାର କରିନାହାନ୍ତି । ଏ ସମସ୍ତ ଆନୁମାନିକ ବୋଲି ମନେ ହୁଏ । ଏହି ସବୁ ଗୀତିକା ମଧ୍ୟରୁ ଯେଉଁ କେତେକ ଲିପିବଦ୍ଧ ହୋଇଥିଲା ତାହା ପରେ ସଂଗୃହୀତ ହୋଇଛି । ମାତ୍ର ସଂଖ୍ୟାଧିକ ଗୀତିକା ଶହ ଶହ ବର୍ଷ ସ୍ମୃତି ସାଗରରେ ଭାସୁ ଭାସୁ ସାଗରର ଅତଳ ଗର୍ଭକୁ ଚାଲିଯାଇଛି । ଓଡ଼ିଶାର ଏହି ରତ୍ନ ସମ୍ଭାରକୁ ଓଡ଼ିଶାର ପଣ୍ଡିତ ଓ ଗବେଷକମାନେ ସ୍ମୃତି ସାଗରର ଅତଳ ଗର୍ଭରୁ ଉଦ୍ଧାର କରି ଓଡ଼ିଆର ସ୍ୱାଭିମାନକୁ ବଜାୟ ରଖନ୍ତୁ । ଓଡ଼ିଆ ସାହିତ୍ୟର ଇତିହାସ ବଦଳିଯାଉ ।

ଆହୁରି ସୋମବଂଶୀ କେଶରୀ ରାଜା କର୍ଣ୍ଣଦେବ (ଖ୍ରୀଷ୍ଟୀୟ ୧୧୦୦ ରୁ ୧୧୧୦)ଙ୍କ ଅଧୀନସ୍ଥ ଭଞ୍ଜ ସାମନ୍ତ ରାଜା ରାଣକ ଶ୍ରୀ ଜୟାର୍ଣ୍ଣମଙ୍କ ପ୍ରଦତ୍ତ 'କମଳପୁର' ତାମ୍ର ଶାସନରେ ଲେଖା ଅଛି ଯେ - ଜୟାର୍ଣ୍ଣମ 'ଖଗେଶ୍ୱରୀ' (ଦେବୀ)ଙ୍କ ଠାରୁ ବରଲାଭ କରିଥିଲେ । ଏହି ୧୦୦୦ ବର୍ଷ ପୂର୍ବର ଶାସନ ହେଉଛି ସେ ସମୟର ଓଡ଼ିଆ ଅଭିଲେଖର ଏକ ଦୃଷ୍ଟାନ୍ତ ॥

ତେଣୁ ଏହି ଦୀର୍ଘ ୩୦୦/୪୦୦ ବର୍ଷ ବ୍ୟବଧାନ ମଧ୍ୟରେ ଲୋକାଭିମୁଖୀ ଓଡ଼ିଆ ସାହିତ୍ୟ ଯେ, ସଂସ୍କୃତ ସାହିତ୍ୟର ଅପରିସୀମା ଚାପରେ ବିଲୁପ୍ତ ହୋଇଯାଇଥିବ; ଏପରି ଉକ୍ତିକୁ ସାବ୍ୟସ୍ତ କରିବାକୁ ହେଲେ ଉଲ୍ଲିଖିତ ଦୁଇଟି ଓଡ଼ିଆ ଅଭିଲେଖର ନଜିର ପ୍ରତିବନ୍ଧକ ସୃଷ୍ଟି କରୁଛି । ତେଣୁ ଏହା କୁହାଯାଇପାରେ ଯେ ବହୁ ଓଡ଼ିଆ ଲେଖା ଅନାବିଷ୍କୃତ ଅବସ୍ଥାରେ ଅଛି ।

ହୁଏନ୍‌ସାଂ ବିବରଣୀରୁ ଜଣାପଡ଼େ ଯେ, ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ବୌଦ୍ଧଧର୍ମ ଓଡ଼ିଶାରେ ଲୋକପ୍ରିୟ ଥିଲା । ସେତେବେଳେ ବାଲେଶ୍ୱର, କଟକ, ପୁରୀ ଜିଲ୍ଲାର ଉତ୍ତରାଞ୍ଚଳକୁ ନେଇ ଗଠିତ ଓଡ୍ର ତଥା ଓଡ଼ିଶା ଦେଶରେ ଏକ ସହସ୍ର ବୌଦ୍ଧ ଭିକ୍ଷୁ ବାସ କରୁଥିଲେ ଓ ଅନ୍ୟୁନ ଏକଶତ ବୌଦ୍ଧ ସଂଘ ଥିଲା । ସେହି ସମୟରେ 'ଜୟସେନ' ନାମକ ଜଣେ ପ୍ରସିଦ୍ଧ ମହାଯାନ ବୌଦ୍ଧ ବିଦ୍ୱାନ ଥିଲେ । ବୌଦ୍ଧ ଧର୍ମ ପୃଷ୍ଠପୋଷକ ତଥା କନୌଜର ରାଜା ହର୍ଷବର୍ଦ୍ଧନ ଜୟସେନଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ୮୦ ଟି ଗ୍ରାମ ରାଜସ୍ୱ ଦାନ କଲେ । ମାତ୍ର ଜୟସେନ ଏପରି ପାର୍ଥିବ ସମ୍ପଦ ତାଙ୍କର ଆଧ୍ୟାତ୍ମିକ ସାଧନା ଅନ୍ତରାୟ ହେବ ବୋଲି ଏହି ଦାନ ଗ୍ରହଣ କଲେନାହିଁ ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ଖ୍ୟାତନାମା ବିଦ୍ୱାନ ଜୟସେନଙ୍କ ନାମାନୁକରଣରେ ଖ୍ରୀଷ୍ଟୀୟ ୧୦୫୧ରେ ବାଲେଶ୍ୱରରୁ ଆବିଷ୍କୃତ ଶିଳାଲେଖରେ ଲିଖିତ କୁମାରସେଣ ଜଣେ ସେହିପରି ବିଦ୍ୱାନ ହୋଇଥିବେ । କୌଣସି ବ୍ୟକ୍ତିର ନାମ ଦେଲାବେଳେ ଯେପରି ଦେବ-ଦେବୀ, ଠାକୁର-ଠାକୁରାଣୀ, ମୁନି-ଋଷି, ସିଦ୍ଧ ପୁରୁଷ, କରିତ୍ କର୍ମା ବ୍ୟକ୍ତିବିଶେଷଙ୍କର ନାମ ଅନୁକରଣରେ ଦିଆଯିବା ପରମ୍ପରା ଆବାହମାନ କାଳରୁ ସମାଜରେ ଅନୁସୃତ ହୋଇ ଆସୁଅଛି, ସେହିପରି ସପ୍ତମ ଶତାବ୍ଦୀରେ ''ଜୟସେନ'' ଏକାଦଶ ଶତାବ୍ଦୀର ''କୁମାର ସେଣ'' ଏବଂ ''ଗୀତ ଗୋବିନ୍ଦ'' ରଚୟିତା ''ଜୟଦେବ'' ନାମକରଣରେ ଏହିପରି ପଦ୍ଧତି ଅନୁସୃତ ହୋଇଥିବ ।

ଚର୍ଯ୍ୟାଗୀତିକା ଗୁଚ୍ଛ ଓଡ଼ିଆ ଭାଷାର ପ୍ରାଚୀନତମ ରଚନା ବୋଲି ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷର ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ମତ । ତତ୍‌ସଙ୍ଗେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର କରୁଣାକର କର, ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ମାୟାଧର ମାନସିଂହ, ଡକ୍ଟର ନବୀନ କୁମାର ସାହୁ, ପଣ୍ଡିତ ବିନାୟକ ମିଶ୍ର ପ୍ରମୁଖ ମନିଷୀଗଣ ମଧ୍ୟ ବିଭିନ୍ନ ଦୃଷ୍ଟି କୋଣରୁ ପର୍ଯ୍ୟାଲୋଚନା କରି ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସହିତ ସହମତ ହେଇଛନ୍ତି ।

ବଜ୍ରଯାନୀ ବୌଦ୍ଧ ସମ୍ପ୍ରଦାୟରେ ବ୍ୟାପକ ବ୍ୟଭିଚାର ଫଳରେ ଲୋକେ ବୌଦ୍ଧ ଧର୍ମପ୍ରତି ପରାଙ୍‌ମୁଖ ହେଲେ । ୧୦ ମ ଶତାବ୍ଦୀର ଶେଷାର୍ଦ୍ଧରେ ବଜ୍ରଯାନୀ ବୌଦ୍ଧ ଧର୍ମର ପତନ ଘଟିବା ସଙ୍ଗେ ସଙ୍ଗେ ଚତୁର୍ଥ ଶତାବ୍ଦୀରୁ ଓଡ଼ିଶାରେ ପ୍ରଚ୍ଛନ୍ନ ଭାବରେ ପ୍ରଚଳିତ ହୋଇଆସୁଥିବା ଶୈବଧର୍ମ ବିଶେଷ ଅଗ୍ରଗତି ଲାଭକଲା ଏବଂ ୧୩ଶ ଶତାବ୍ଦୀ ମଧ୍ୟରେ ଏହା ଉନ୍ନତିର ଶୀର୍ଷସ୍ଥାନରେ ପହଞ୍ଚିପାରିଥିଲା । ଏତଦ୍‌ବ୍ୟତୀତ ଖ୍ରୀଷ୍ଟ ଜନ୍ମର ବହୁ ପୂର୍ବରୁ ଓଡ଼ିଶାରେ ଶକ୍ତି ଉପାସନାର ପରମ୍ପରା ଥିଲା । ଏ ଶକ୍ତିପୀଠମାନଙ୍କରେ ବୌଦ୍ଧଧର୍ମ ଏବଂ ବ୍ରାହ୍ମଣ୍ୟ ଧର୍ମ (ବା ହିନ୍ଦୁଧର୍ମ) ପ୍ରାଧାନ୍ୟ ଲାଭ କରିଥିଲା । (ଖ୍ରୀ.ଅ. ୭୩୬ - ୯୫୦ ମଧ୍ୟରେ ଯାଜପୁର ବିରଜା କ୍ଷେତ୍ର ତଥା ତୀର୍ଥ ଶକ୍ତିପୀଠ ରୂପେ ତାନ୍ତ୍ରିକ ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲା ।) ବ୍ରାହ୍ମଣ୍ୟଧର୍ମର ପ୍ରଭାବରେ ସଂସ୍କୃତ ସାହିତ୍ୟର ଚର୍ଚ୍ଚା ପ୍ରବଳ ହୋଇଉଠିଲା । ପ୍ରାଚୀନ ଓଡ଼ିଆ ପଣ୍ଡିତମାନେ ଉଚ୍ଚକୋଟୀର ସଂସ୍କୃତ ଗ୍ରନ୍ଥସବୁ ଲେଖିଲେ । ଫଳରେ ଲୋକଭିମୁଖୀ ଓଡ଼ିଆ ସାହିତ୍ୟ ଯେଭଳି ଭାବରେ ବୌଦ୍ଧଗାନ ଓ ଦୋହା ମାଧମରେ ପଲ୍ଲବିତ ହୋଇଉଠୁଥିଲା ତାହାର ଅଭିବୃଦ୍ଧି ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଅର୍ଥାତ ୩୦୦/୪୦୦ ବର୍ଷ ସେଇ ପଲ୍ଲବିତ ଅବସ୍ଥାରେ ହିଁ ରହିଲା ।

ପୁଣି ବାଲେଶ୍ୱର ଜିଲ୍ଲା ବନ୍ଧରାଡି ଗ୍ରାମରୁ ଖ୍ରୀଷ୍ଟୀୟ ୧୦୫୧ ମସିହାରେ ଏକ ପ୍ରାଚୀନ ଶିଳାଲେଖ ଆବିଷ୍କୃତ ହୋଇଛି । ପ୍ରାୟ ହଜାର ବର୍ଷ ପୂର୍ବର ଏହି ଅଭିଲେଖଟି ତତ୍କାଳୀନ ରାଜା ଅନନ୍ତ ବର୍ମା ବଜ୍ରହସ୍ତ ଦେବଙ୍କର । ଏହି ଶିଳା ଲେଖଟି ଏକ ମୂର୍ତ୍ତିର ନିମ୍ନଦେଶରେ ଓଡ଼ିଆ ଭାଷାରେ ଲିଖିତ । ତାହା ହେଲା -

''ଦେବକହୀ ଭଗତି କରୁଣ

ଆଛନ୍ତି ଭୋ କୁମାରସେଣ ।''

ଆହୁରି ସୋମବଂଶୀ କେଶରୀ ରାଜା କର୍ଣ୍ଣଦେବ (ଖ୍ରୀଷ୍ଟୀୟ ୧୧୦୦ ରୁ ୧୧୧୦)ଙ୍କ ଅଧୀନସ୍ଥ ଭଞ୍ଜ ସାମନ୍ତ ରାଜା ରାଣକ ଶ୍ରୀ ଜୟାର୍ଣ୍ଣମଙ୍କ ପ୍ରଦତ୍ତ 'କମଳପୁର' ତାମ୍ର ଶାସନରେ ଲେଖା ଅଛି ଯେ - ଜୟାର୍ଣ୍ଣମ 'ଖଗେଶ୍ୱରୀ' (ଦେବୀ)ଙ୍କ ଠାରୁ ବରଲାଭ କରିଥିଲେ । ଏହି ୧୦୦୦ ବର୍ଷ ପୂର୍ବର ଶାସନ ହେଉଛି ସେ ସମୟର ଓଡ଼ିଆ ଅଭିଲେଖର ଏକ ଦୃଷ୍ଟାନ୍ତ ।।

ତେଣୁ ଏହି ଦୀର୍ଘ ୩୦୦/୪୦୦ ବର୍ଷ ବ୍ୟବଧାନ ମଧ୍ୟରେ ଲୋକାଭିମୁଖୀ ଓଡ଼ିଆ ସାହିତ୍ୟ ଯେ, ସଂସ୍କୃତ ସାହିତ୍ୟର ଅପରିସୀମା ଚାପରେ ବିଲୁପ୍ତ ହୋଇଯାଇଥିବ; ଏପରି ଉକ୍ତିକୁ ସାବ୍ୟସ୍ତ କରିବାକୁ ହେଲେ ଉଲ୍ଲିଖିତ ଦୁଇଟି ଓଡ଼ିଆ ଅଭିଲେଖର ନଜିର ପ୍ରତିବନ୍ଧକ ସୃଷ୍ଟି କରୁଛି । ତେଣୁ ଏହା କୁହାଯାଇପାରେ ଯେ ବହୁ ଓଡ଼ିଆ ଲେଖା ଅନାବିଷ୍କୃତ ଅବସ୍ଥାରେ ଅଛି ।

ହୁଏନ୍‌ସାଂ ବିବରଣୀରୁ ଜଣାପଡ଼େ ଯେ, ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ବୌଦ୍ଧଧର୍ମ ଓଡ଼ିଶାରେ ଲୋକପ୍ରିୟ ଥିଲା । ସେତେବେଳେ ବାଲେଶ୍ୱର, କଟକ, ପୁରୀ ଜିଲ୍ଲାର ଉତ୍ତରାଞ୍ଚଳକୁ ନେଇ ଗଠିତ ଓଡ୍ର ତଥା ଓଡ଼ିଶା ଦେଶରେ ଏକ ସହସ୍ର ବୌଦ୍ଧ ଭିକ୍ଷୁ ବାସ କରୁଥିଲେ ଓ ଅନ୍ୟୂନ ଏକଶତ ବୌଦ୍ଧ ସଂଘ ଥିଲା । ସେହି ସମୟରେ 'ଜୟସେନ' ନାମକ ଜଣେ ପ୍ରସିଦ୍ଧ ମହାଯାନ ବୌଦ୍ଧ ବିଦ୍ୱାନ ଥିଲେ । ବୌଦ୍ଧ ଧର୍ମ ପୃଷ୍ଠପୋଷକ ତଥା କନୌଜର ରାଜା ହର୍ଷବର୍ଦ୍ଧନ ଜୟସେନଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ୮୦ ଟି ଗ୍ରାମ ରାଜସ୍ୱ ଦାନ କଲେ । ମାତ୍ର ଜୟସେନ ଏପରି ପାର୍ଥିବ ସମ୍ପଦ ତାଙ୍କର ଆଧ୍ୟାତ୍ମିକ ସାଧନା ଅନ୍ତରାୟ ହେବ ବୋଲି ଏହି ଦାନ ଗ୍ରହଣ କଲେନାହିଁ ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ଖ୍ୟାତନାମା ବିଦ୍ୱାନ ଜୟସେନଙ୍କ ନାମାନୁକରଣରେ ଖ୍ରୀଷ୍ଟୀୟ ୧୦୫୧ରେ ବାଲେଶ୍ୱରରୁ ଆବିଷ୍କୃତ ଶିଳାଲେଖରେ ଲିଖିତ କୁମାରସେଣ ଜଣେ ସେହିପରି ବିଦ୍ୱାନ ହୋଇଥିବେ । କୌଣସି ବ୍ୟକ୍ତିର ନାମ ଦେଲାବେଳେ ଯେପରି ଦେବ-ଦେବୀ, ଠାକୁର-ଠାକୁରାଣୀ, ମୁନି-ଋଷି, ସିଦ୍ଧ ପୁରୁଷ, କରିତ୍ କର୍ମା ବ୍ୟକ୍ତିବିଶେଷଙ୍କର ନାମ ଅନୁକରଣରେ ଦିଆଯିବା ପରମ୍ପରା ଆବାହମାନ କାଳରୁ ସମାଜରେ ଅନୁସୃତ ହୋଇ ଆସୁଅଛି, ସେହିପରି ସପ୍ତମ ଶତାବ୍ଦୀରେ "ଜୟସେନ" ଏକାଦଶ ଶତାବ୍ଦୀର "କୁମାର ସେଣ" ଏବଂ "ଗୀତ ଗୋବିନ୍ଦ" ରଚୟିତା "ଜୟଦେବ" ନାମକରଣରେ ଏହିପରି ପଦ୍ଧତି ଅନୁସୃତ ହୋଇଥିବ ।

ସେହିପରି ପଞ୍ଚଦଶ ଶତାବ୍ଦୀର ''ରସସାଗର ବୋଲି''ର କବି ଦନାଇ ଦାସ ୭ମ ଶତାବ୍ଦୀରୁ ୯ମ ଶତାବ୍ଦୀ ମଧ୍ୟରେ ବୌଦ୍ଧଗାନ ଓ ଦୋହା ବା ଚର୍ଯ୍ୟାଗୀତିକାର ରଚୟିତାଗଣ ଯଥା- ''ଲୁଇପାଦ'' (ଲୋହିପାଦ) ଅନ୍ୟନାମ ''ମତ୍ସ୍ୟେନ୍ଦ୍ରନାଥ'' ''କାହ୍ନୁ ପାଦ'' ଅନ୍ୟନାମ କୃଷ୍ଣାଚର୍ଯ୍ୟ, ''ଭୁସୁକୁ ପାଦ'' ଅନ୍ୟନାମ ''ଭୁସୁକୁ ରାଉତ''; ପୁଣି ସେ ରାଜବଂଶୀୟ ଥିବାରୁ ପ୍ରଥମେ ତାଙ୍କର ନାମ ଥିଲା ''ଶାନ୍ତଦେବ'' । ଏହାଛଡା ''ଶବରୀପାଦ'', ''କୁକୁରୀ ପାଦ'' ଓ ''ସରହ ପାଦ'' ପ୍ରଭୃତି ଅନ୍ୟାନ୍ୟ କବିମାନେ ମଧ୍ୟ ଅଛନ୍ତି ।

୧୦ମ ଶତାବ୍ଦୀର ଶେଷାର୍ଦ୍ଧରେ - ବୌଦ୍ଧଧର୍ମର ପତନ ସହିତ ଶିବ- ଶକ୍ତି ପୂଜାର ପ୍ରାଧାନ୍ୟ ୧୫ଶ ଶତାବ୍ଦୀ ପର୍ଯ୍ୟନ୍ତ ପାଞ୍ଚଶତ ବର୍ଷ ଓଡ଼ିଆ ଭାଷାକୁ ପ୍ରଭାବିତ କରିଥିଲା । ଏହି ପଞ୍ଚଶତ ବର୍ଷର ବ୍ୟବଧାନରେ ଦୁଇଧର୍ମ ମଧ୍ୟରେ ଯୋଗସୂତ୍ର ପ୍ରତିଷ୍ଠା କରି ''ନାଥ ଧର୍ମ'' ତଥା ''ନାଥ ସମ୍ପ୍ରଦାୟ'' ର ଅଭ୍ୟୁତ୍‌ଥାନ ଘଟିଥିଲା । ଏହି ସମୟରେ ନାଥ ଯୋଗୀମାନେ ଓଡ଼ିଆ ଭାଷାରେ ଲେଖାଲେଖି କରିଛନ୍ତି । ଏମାନଙ୍କଦ୍ୱାରା ଲିଖିତ ଦୁଇଟି ପୁସ୍ତକ ''ସପ୍ତାଙ୍ଗ'' ଓ ''ଶିଶୁବେଦ'' ଆବିଷ୍କୃତ ହୋଇଛି । ''ସପ୍ତାଙ୍ଗ'' ପୁସ୍ତକଟିକୁ କୌଣସି ଜଣେ ନାଥ ଯୋଗୀ ରଚନା କରିଥିଲେ ମଧ୍ୟ ଏହା ନାଥ ସମ୍ପ୍ରଦାୟର ପ୍ରଧାନ ଗୁରୁ ''ଗୋରଖନାଥ''ଙ୍କ ନାମରେ ଭଣିତା କରିଥିବାର ଓ ''ଶିଶୁ ବେଦ'' ପୁସ୍ତକକୁ ଅନ୍ୟଜଣେ ନାଥଯୋଗୀ ରଚନା କରିଥିଲେ ବୋଲି ଜଣାଯାଏ ।

ଖ୍ରୀ: ୧୬ଶ ଶତାବ୍ଦୀର ବହୁପୂର୍ବରୁ, ନାଥଧର୍ମର ପ୍ରଭାବ ଓଡ଼ିଶାର ପୁରପଲ୍ଲୀର ଲୋକମାନଙ୍କ ଉପରେ ପ୍ରଭୁତ ଭାବରେ ପଡ଼ିଥିବାର ସୂଚନା ମିଳେ । ନାଥ ଯୋଗୀମାନଙ୍କର ଲୋକପ୍ରିୟତା କହିଲେ ନସରେ । ସେମାନେ ଲାଉତୁମ୍ବା ସଙ୍ଗୀତ ଯନ୍ତ୍ର ସାହାଯ୍ୟରେ ସଙ୍ଗୀତ ଗାନ କରି ସଂକ୍ରାନ୍ତି, ପୂର୍ଣ୍ଣିମା ଆଦି ତିଥିମାନଙ୍କରେ ଦ୍ୱାରେ ଦ୍ୱାରେ ବୁଲି ଭିକ୍ଷା ମାଗିବାରେ ପ୍ରଥା ପ୍ରଚଳିତ ଥିଲା । ମହାପୁରୁଷ ତଥା ପ୍ରଖ୍ୟାତ ସାଧକ ଯଶୋବନ୍ତ ଦାସଙ୍କ (ଖ୍ରୀ: ୧୬ଶ ଶତାବ୍ଦୀ) ରଚିତ ''ଗୋବିନ୍ଦ ଚନ୍ଦ୍ର'' ବା ''ଟୀକା ଗୋବିନ୍ଦ ଚନ୍ଦ୍ର'' ଲୋକାଭିମୂଖୀ ସରସ କାବ୍ୟ, ନାଥ ଯୋଗୀ ମାନଙ୍କର ପ୍ରିୟ ସଙ୍ଗୀତ ଥିଲା । ଏହାର ପ୍ରଥମ ପଦଟି ହେଲା-

''ଭଜୁକିନା ରାମ ନାମରେ ଗୋବିନ୍ଦ
ଭଜୁକିନା ରାମ ନାମ ।
ଭଜି ନ ପାରିଲେ କୁଳଚନ୍ଦ୍ରମାରେ
ବାନ୍ଧି ନେବ କାଳ ଯମ ।''

(''ଟୀକା ଗୋବିନ୍ଦ୍ର ଚନ୍ଦ୍ର'' ର ରଚୟିତା ''ଯଶୋବନ୍ତ ଦାସ'' ବୋଲି ଡଃ ବଂଶୀଧର ମହାନ୍ତି, ଡଃ ଦେବେନ୍ଦ୍ର ମହାନ୍ତି, ପ୍ରଫେସର ପଠାଣି ପଟ୍ଟନାୟକ, ଡଃ କୁଞ୍ଜବିହାରୀ ଦାଶ, ଡଃ ରତ୍ନାକର ସାହୁ, ଡଃ କୃଷ୍ଣ ଚରଣ ସାହୁ, ଡଃ ବୃନ୍ଦାବନ ଆଚାର୍ଯ୍ୟ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ପଣ୍ଡିତ ନୀଳମଣି ମିଶ୍ର, ସୋମନାଥ ରଥ ପ୍ରଭୃତି ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟ ସମାଲୋଚକ ତଥା ଗବେଷକମାନଙ୍କର ମତ)

ଏସବୁ ଅବତାରଣା କରିବାର କାରଣ, ''ନାଥ ସାହିତ୍ୟ'' ର ସମୟ ନିରୂପଣ କରିବା ସଙ୍ଗେ ସଙ୍ଗେ ଯଶୋବନ୍ତଙ୍କ ପରି ଆହୁରି ଅନେକ ସିଦ୍ଧ ସାଧକ ନିଶ୍ଚୟ ଓଡ଼ିଶାରେ ଜନ୍ମଗ୍ରହଣ କରି ଯୋଗୀମାନଙ୍କ ପାଇଁ ବହୁ ସିଦ୍ଧ ବାଣୀ ଗ୍ରାମେ ଗ୍ରାମେ ସମାଜର ମଙ୍ଗଳ ପାଇଁ ପ୍ରଚାର ଉଦ୍ଦେଶ୍ୟରେ ପ୍ରସ୍ତୁତ କରିଥିବେ; ଯାହାକି କାଳକ୍ରମେ ବଚନ ପ୍ରବଚନ, ଢଗ, ଢମାଳି ମାଧମରେ ଅଦ୍ୟାବିଧି ଓଡ଼ିଶାର ପୁରପଲ୍ଲୀ ତଥା ଗ୍ରାମ୍ୟ ଜୀବନରେ ''ନାଥବୋଲେ ପୁତା'' ନାମରେ ଅଭିଭାଷିତ ହେଉଛି । ଯଥା:-

''ଆଗ ଚଲା, ଆଗ ବୋଲା, ପର ଗାଈ ଦୁହାଁ, ଦୀପ ପେଲା,
ନାଥ ବୋଲେ ପୁତାରେ, (ସେ) ଜୀଇ ଥାଉଁ ଥାଉଁ ମଲା'' (ଡାକ ଋଷି ବଚନ)
''ଉଇଁ ନ ଦିଶେ, ହସି ପଶେ; ଉତ୍ତର ମେଘ ଦକ୍ଷିଣେ ଆସେ,
ସଜ ଗୋବରରେ ଅଂଶେଇ ବସେ;
'ନାଥ ବୋଲେ ପୁତା' ନିଶ୍ଚେ ବରଷେ ।'' (ନାଥ ବଚନ)

''ନାଥ ସାହିତ୍ୟ'' ଓ ତତ୍ ପୂର୍ବର ଓଡ଼ିଆ ସାହିତ୍ୟ ସମ୍ପର୍କରେ ଉତ୍କଳ କେଶରୀ ଡଃ ମହତାବ ତାଙ୍କ ପ୍ରଣୀତ ''ସାହିତ୍ୟର ମାର୍ଗ ଉନ୍ମୋଚନ'' (୨ୟ ଖଣ୍ଡ)ରେ, ଏ ସମ୍ପର୍କରେ ଲବ୍ଧପ୍ରତିଷ୍ଠ ଭାଷାବିତ୍ ଓ ଗବେଷକମାନଙ୍କୁ ସେ ସମୟର ସାହିତ୍ୟ ସମ୍ବନ୍ଧରେ ଗବେଷଣା କରିବାକୁ ଆହ୍ୱାନ କରିଛନ୍ତି ।

ଉପରୋକ୍ତ ଆଲୋଚନାରେ ଏତିକି ସ୍ପଷ୍ଟ ଯେ ଏହି ବଚନ, ପ୍ରବଚନ, ବୋଲି ଗୁଡ଼ିକ କାଳର ପ୍ରଗତି ଅନୁସାରେ ଯେ କୌଣସି ସ୍ଥାନରେ ଜନ୍ମନେଇ ଥିଲେ ବି ଏହା ବିଭିନ୍ନ ସମୟର ଯୋଗଜନ୍ମା କବି, ସାଧକମାନଙ୍କ କଣ୍ଠରେ ସିଦ୍ଧ ଓ ଲୋକାଳୟରେ ଅନୁସୃତ । ପଣ୍ଡିତ ନୀଳମଣି ମିଶ୍ର ଓ ଠକ୍କୁର ମାୟାଧର ମାନସିଂହଙ୍କ ମତରେ ଯଦି ''ଚର୍ଯ୍ୟାଗୀତିକା'' ରେ ଦାରୀ, ଲୋଡଇ, ଭଣଇ, ଛିନାଳୀ, ବିଛାଇ, ଅଟ୍ଟାରି, ଫୁଲିଆ, ଉଚାଁ, ଘରଣୀ, ପାଚିଲା, ପେହାଇଲି ପ୍ରଭୃତି ଡଜନ ଡଜନ ଓଡ଼ିଆ ଶବ୍ଦ ୭ମ ଶତାବ୍ଦୀରେ

ବ୍ୟବହାର ହୋଇଥିବାରୁ ସେଗୁଡ଼ିକୁ ପ୍ରାଚୀନ ଓଡ଼ିଆ ସାହିତ୍ୟ ହିସାବରେ ମତବ୍ୟକ୍ତ କରାଗଲା । ତେବେ ଦନାଇ ଦାସ ବଚନ, ଡାକରଷି ବଚନ, କୃଷି ବଚନ ଗୁଡ଼ିକରେ ଏହିପରି ଶହଶହ ଶବ୍ଦ ବ୍ୟବହୃତ ହୋଇଥିବାରୁ, ଏହି ପ୍ରବଚନ ଗୁଡ଼ିକର ଉତ୍ସ ସେଇ ୭ମ ଶତାବ୍ଦୀ ତଥା ତତ୍କାଳୀନ ବୋଲି ଧରାଯିବା କ'ଣ ସମୀଚୀନ ?

ପୁଣି ସେହିପରି ସୋମବଂଶ ଶାସନକାଳ (ଖ୍ରୀ.ଅ ୮ମ ଶତାବ୍ଦୀରୁ ୧୧ଶ ଶତାବ୍ଦୀ)ର ଯଯାତି କେଶରୀଙ୍କ ରାଜ ଦରବାରରେ ଦେବଦାସୀମାନଙ୍କ ଦ୍ୱାରା ସଙ୍ଗୀତ ପରିବେଷଣ କରାଯାଉଥିଲା । ଏହି ଦେବଦାସୀମାନେ ଦାସୀ ବା ବେଶ୍ୟା ନାମରେ ପରିଚିତ ହେଲେ । କାରଣ, ପ୍ରଥମେ ଏମାନେ ଶୃଙ୍ଖଳା ମଧ୍ୟରେ " ଦେବ ଦରବାର" ରେ ସଙ୍ଗୀତ ପରିବେଷଣ କରୁଥିଲେ ; ମାତ୍ର ଯେତେବେଳେ ସେମାନେ ଶୃଙ୍ଖଳା ଭାଙ୍ଗି ରାଜଦରବାରକୁ ଓ ପରେ ପରେ ସର୍ବସାଧାରଣରେ ନୃତ୍ୟଗୀତ ପରିବେଷଣ କରିବାକୁ ଚାଲି ଆସିଲେ, ସେତେବେଳେ ଏମାନଙ୍କୁ ଦାରୀ ବା ବେଶ୍ୟା ବୋଲି କୁହାଗଲା ।

ମାଦଳା ପାଞ୍ଜିରୁ ଜଣାଯାଏ ଯେ, ଏକାଦଶ ଶତାବ୍ଦୀରେ "ରାଜ ରାଜଦେବ" ପୁରୀ ମନ୍ଦିରରେ ସେବାୟତ ଭାବରେ ସଙ୍ଗୀତଜ୍ଞ, ବୀଣାକାର, ନାଚୁଣୀ, ମାଦଳା ପ୍ରଭୃତି ନିଯୁକ୍ତ କରିଥିଲେ । ସେଥିପାଇଁ ଗୀତିକାରମାନେ ସଙ୍ଗୀତ ସର୍ଜନା କରୁଥିବେ । ତେଣୁ ଏହି ସଙ୍ଗୀତ ସର୍ଜନାର ପରମ୍ପରା ବହୁ ପୂର୍ବରୁ ପ୍ରଚଳିତ ହୋଇ ଆସୁଥିବ । କାରଣ ସଙ୍ଗୀତଜ୍ଞ ପ୍ରଭୃତିଙ୍କ ନିଯୁକ୍ତି ହେବାର ସଙ୍ଗେ ସଙ୍ଗେ ସଙ୍ଗୀତ ସର୍ଜନା କରିବାପାଇଁ ତତ୍‌କ୍ଷଣାତ୍ ଲୋକେ ଆର୍ବିଭୂତ ହେବାର ସମ୍ଭାବନା ଅସମ୍ଭବ । ଶହ ଶହ ବର୍ଷ ପୂର୍ବରୁ ଓଡ଼ିଆ ଗୀତି ସାହିତ୍ୟ ସୃଷ୍ଟି ହୋଇଥିବ । ସେଇଥିରୁ ଉତ୍ପତ୍ତି ହୋଇଛି- ପ୍ରବଚନ, ବଚନ, ଢଗ, ଢମାଳି ଇତ୍ୟାଦି ।

ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ, ଓଡ଼ିଶାର ଲୋକେ ପୋତ ସାହାଯ୍ୟରେ ବାଲି, ଜାଭା, ସୁମାତ୍ରା ଦ୍ୱୀପମାନଙ୍କୁ ଯାଇ ଉନ୍ନତମାନର ବେପାର ବାଣିଜ୍ୟ କରି ବିଦେଶରୁ ସ୍ୱଦେଶକୁ ବହୁଳ ପରିମାଣରେ ଧନରତ୍ନ ବୋହିଆଣି, ଓଡ଼ିଶାକୁ ସମୃଦ୍ଧ କରୁଥିଲେ । ସେତେବେଳେ କଣ ସେମାନଙ୍କ ପାଇଁ 'ଓଡ଼ିଶା ସାହିତ୍ୟ' ନଥିଲା ? ତେବେ ଏତେ ଗୁଡ଼ିଏ ସିଦ୍ଧ ପ୍ରବଚନ ସବୁ ଆସିଲା କୁଆଡୁ ? ଏ ସମ୍ପର୍କରେ ନଥିପତ୍ର, ଦଲିଲ୍, ପୋଥି ଆବିଷ୍କୃତ ହୋଇନାହିଁ ବୋଲି କୁହାଯିବ ।

ଗଜପତି କପିଳେନ୍ଦ୍ର ଦେବ (ଓଡ଼ିଶାର ଦ୍ୱିତୀୟ ଖାରବେଳ) ଙ୍କ ସମୟରେ ସମର ବାଦ୍ୟ ଓ ସଙ୍ଗୀତ ପ୍ରଚଳିତ ଥିଲା । ତତ୍‌କାଳୀନ ଏକ ସମର ସଙ୍ଗୀତ-

"ମଲେ ପଛେ ମରିବା ରଣେ

ଆମ ଭଳି ଅଛନ୍ତି ପଣେ ।"

ପ୍ରଭୂତ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ତତ୍‌କାଳୀନ ଓଡ଼ିଶାର ଜନସାଧାରଣ ଯେ କେବଳ ବାଣିଜ୍ୟ ଓ ସାମରିକ ଶକ୍ତିରେ ବିକାଶ ଲାଭ କରିଥିଲେ ବୋଲି କହିବା ସମୀଚୀନ ନୁହେଁ । ସେମାନଙ୍କ ମଧ୍ୟରେ ସଙ୍ଗୀତ ଚର୍ଚ୍ଚା ଥିଲା; ମନ୍ଦିର ଗାତ୍ରରେ ପୁରୁଷ ଓ ନାରୀର ଯୌନ ପ୍ରକ୍ରିୟାର ନିଦର୍ଶନ ଓଡ଼ିଆ ଶିଳ୍ପୀର ଚାତୁରୀରେ ପରିପ୍ରକାଶ ପାଇଥିଲା । ତେଣୁ ସେତେବେଳର ଓଡ଼ିଆ ଲୋକଙ୍କ ମଧ୍ୟରେ ରସିକତାର ଭାବପ୍ରବଣତା ନିଶ୍ଚିତ ଭାବେ ଅନ୍ତର୍ନିହିତ ହୋଇଥିବ, ଏକଥା ଅସ୍ୱୀକାର କରିହେବ ନାହିଁ ।

ଆଉ ଏକ ରସିକତାର ନଜିର ଉପସ୍ଥାପିତ କରାଗଲା, ଯାହାକି ଆଜକୁ ପ୍ରାୟ ୪୫୦ ବର୍ଷ ତଳର ଗାଥା:- କବି କୃଷ୍ଣ ଦାସ ବା କୃଷ୍ଣ ଦାସ ବଡ଼ଜେନା ମହାପାତ୍ର (ଖ୍ରୀ:୧୫୫୯ ରୁ ୧୮୬୮) ଙ୍କ ଦ୍ୱାରା ରଚିତ "ଦଧିମନ୍ଥନ ବୋଲି" ରେ ମନ୍ଦିର ଗାତ୍ରରେ ଅଙ୍କିତ ପୁରୁଷ ଓ ନାରୀର ନଗ୍ନ ମୂର୍ତ୍ତୀ ଯେପରି ମାନସପଟରେ ଶୃଙ୍ଗାର ରସର ଉଦ୍ରେକ କରାଏ, ସେହିପରି ଶୃଙ୍ଗାର ରସର ବର୍ଣ୍ଣନା ଦେଖାଯାଏ,

ଯଥା:- "ଉଠ ଉଠ ସଖି ନ ପାଅ ଲାଜ । କୋଳରେ ଧଇଲେ ଦେବାଧିରାଜ ॥
ବିବିଧ ବିନୋଦେ କରନ୍ତି ରତି । ସନ୍ତୋଷ ହୋଇଲେ ସେ ଚନ୍ଦ୍ରାବତୀ ॥
ରାଧାମାଧବଙ୍କ ସୁରତି ଭାବ । ଲାଜେ ପଳାଇଲା ଅନଙ୍ଗ ଦେବ ॥

ପୁଣି ଆଦି ନାଟ୍ୟଶାସ୍ତ୍ରବିତ୍ ଭରତ (ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀ)ଙ୍କର ପ୍ରଣୀତ ନାଟ୍ୟ ଶାସ୍ତ୍ରରେ "ଉଡ୍ର ବିଭାଷା" ବୋଲି ଉଲ୍ଲେଖ ଅଛି । ଏଥିରୁ ସୂଚନା ମିଳୁଛି ଯେ ଓଡ଼ିଆ ଭାଷାର ଲିପି ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀ, ଅର୍ଥାତ୍ ଆଜକୁ ୧୮୦୦ ବର୍ଷ ପୂର୍ବରୁ ପ୍ରଚଳିତ ଥିଲା । ତେଣୁ ଓଡ଼ିଆ ସାହିତ୍ୟ ଯେ ଏହାର ବହୁପୂର୍ବରୁ ଥିବ, ଏହା ନିଛକ ଭାବେ କୁହାଯାଏ ପାରେ ।

ଖାଲି ସେତିକି ନୁହେଁ, "ନ୍ୟାୟ ସାହିତ୍ୟ" ତଥା "ଆଇନ ଶାସ୍ତ୍ର" ପ୍ରଣୟନ କ୍ଷେତ୍ରରେ ମଧ୍ୟ ଓଡ଼ିଆ ପଛରେ ପଡ଼ିନଥିଲା; ଏହାର ଏକ ନଜିର ପ୍ରଦତ୍ତ ହେଲା :-

ଗଜପତି ରାଜବଂଶର ରାଜା ପ୍ରତାପରୁଦ୍ର ମହାଦେବ (ଖ୍ରୀଷ୍ଟାୟ ୧୪୯୭ ରୁ ୧୫୪୦) "ସରସ୍ୱତୀ ବିଳାସ" ନାମକ ଏକ ଆଇନ ପୁସ୍ତକ ପ୍ରଣୟନ କରିଥିଲେ । ଏଥିରେ ବ୍ୟାବହାରିକ ଆଇନ ବା ବିଚାରାଳୟ କାର୍ଯ୍ୟ ପଦ୍ଧତି ସହିତ ମୌଳିକ ଆଇନ ଲିପବଦ୍ଧ ହୋଇଥିଲା । ରାଜା ନିଜେ ଏହାକୁ ପ୍ରଣୟନ କରିଥିବାରୁ ଏହା ଏକ ବିଶେଷ ଉଲ୍ଲେଖନୀୟ ଆଇନ ପୁସ୍ତକ ଅଟେ । କାରଣ ସାଧାରଣତଃ  ରାଜଦରବାରରେ ଆଇନ ବିଶାରଦ ତଥା ପଣ୍ଡିତମାନେ ଏସବୁ ପ୍ରଣୟନ କରିଥାନ୍ତି । ଏହି ଆଇନ ପୁସ୍ତକଟି ୫୦୩ ପୃଷ୍ଠା ସମ୍ବଳିତ ଡଃ ଆର୍.ଶ୍ୟାମ ଶାସ୍ତ୍ରୀଙ୍କ ଦ୍ୱାରା ଏହା ସମ୍ପାଦିତ ହୋଇ ମହୀଶୁର ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ (୧୯୨୭) ମସିହାରେ ପ୍ରକାଶିତ ହୋଇଥିଲା ।

ବହିର ପ୍ରାରମ୍ଭରେ ରାଜା ପ୍ରତାପରୁଦ୍ର ମହାଦେବ ନିଜ ସମ୍ପର୍କରେ ଲେଖିଛନ୍ତି :-

ସୂର୍ଯ୍ୟବଂଶୀ ରାଜା ଦଶରଥ ଓ ଶ୍ରୀରାମ ତାଙ୍କର ପୂର୍ବ ସୂରୀ ଅଟନ୍ତି;ଏବଂ କପିଳେନ୍ଦ୍ର ହେଉଛନ୍ତି ଗଜପତି ରାଜବଂଶର ଆଦିକର୍ତ୍ତା ତଥା ପ୍ରତିଷ୍ଠାତା । ଶେଷରେ ସେ ନିଜକୁ "କର୍ଣ୍ଣାଟକ କୁଳବର୍ଗେଶ୍ୱର" (କୁଳବର୍ଗାର ରାଜା ଯାହାକି ଆଧୁନିକ "ଗୁଲବର୍ଗା") ହିସାବରେ ବର୍ଣ୍ଣନା କରିଛନ୍ତି । ଏଥିରୁ ସ୍ପଷ୍ଟ ହେଉଛି  ଯେ, ଓଡ଼ିଶା ରାଜାମାନଙ୍କ ସମ୍ପର୍କ "କର୍ଣ୍ଣାଟକ" ରାଜ୍ୟ ସହିତ ଥିଲା । ପୁଣି ରାଜା ଆଇନ ପ୍ରଣୟନର ପରିସମାପ୍ତି ପୂର୍ବରୁ, ସେ ଆଇନ ବିଶାରଦ ଏବଂ ପଣ୍ଡିତ ମାନଙ୍କର ଏକ ସଭା ଡକାଇ ଏହି ଗ୍ରନ୍ଥକୁ ଅନୁମୋଦିତ କରାଇଥିଲେ । ଓଡ଼ିଶାର ରାଜାଙ୍କ  ସ୍ୱହସ୍ତରେ ପ୍ରଣୀତ ଆଇନ ବସ୍ତୁତଃ କିପରି କାର୍ଯ୍ୟକାରୀ ହେବ ତାର ବ୍ୟବସ୍ଥା କରାଯାଇଥିବାରୁ; ଏହି ଆଇନ ପୁସ୍ତକର ମିମାଂସା ପଦ୍ଧତିକୁ ସଂପ୍ରତି ହାଇକୋର୍ଟରେ ବିଚାର ହେଉଥିବା ମୋକଦ୍ଦମାରେ ମଧ ଦର୍ଶାଯାଉ ଅଛି ।

ପ୍ରାଚୀନ ଭାରତର ଆଇନ (ଅର୍ଥାତ୍ ଧର୍ମସୂତ୍ର) ପ୍ରଣେତାଗଣ ହେଲେ, ଗୌତମ, ଅପତମ୍ବ, ବୌଦ୍ଧାୟନ ଓ ବଶିଷ୍ଠ (ଖ୍ରୀ:ପୂ:୬୦୦ରୁ ୩୦୦), ଯୈମିନି (ପୂର୍ବମୀମାଂସା) (ଖ୍ରୀ:ପୂ:୫୦୦ରୁ ୨୦୦); କୌଟିଲ୍ୟ (ଅର୍ଥଶାସ୍ତ୍ର) (ଖ୍ରୀ:ପୂ:୩୦୦ ରୁ ୨୦୦) ମନୁସ୍ମୃତି (ଖ୍ରୀ: ପୂ: ୨୦୦ ରୁ ୧୦୦)

ସେ କାଳରେ ଓଡ଼ିଶା ଭଳି ଧନଧାନ୍ୟ ଯୁକ୍ତା, ଯୋଦ୍ଧା ଜାତି ଏବଂ ବିକାଶଶୀଳ ସମାଜ ପକ୍ଷରେ (ଖ୍ରୀ: ପୂ: ୬୦୦-୩୦୦ ଠାରୁ ଖ୍ରୀଷ୍ଟାୟ ୧୪୯୭-୧୫୪୦) ଦୀର୍ଘ ପ୍ରାୟ ୧୯୦୦ ବର୍ଷ ଧରି ଯେ ବିଧିବଦ୍ଧ ଭାବରେ କୌଣସି ଆଇନ-କାନୁନ ନ ଥିବ,

ଏକଥା ବିଶ୍ୱାସଯୋଗ୍ୟ ନୁହେଁ । କାରଣ ବିଭିନ୍ନ ଶିଳାଲେଖ ଓ ତାମ୍ର ଶାସନ ଏପରି ଉକ୍ତିକୁ ଖଣ୍ଡନ କରୁଛି । ଏତିକି କୁହାଯାଇପାରେ ଯେ ଓଡ଼ିଶାର ପ୍ରାଚୀନତମ ଆଇନ କାନୁନର ସମ୍ପୂର୍ଣ୍ଣ ଅଥବା ଖଣ୍ଡ ବିଖଣ୍ଡିତ ଦଲିଲ (ଉଲ୍ଲିଖିତ ''ସରସ୍ୱତୀ ବିଳାସ'' ଆଇନ ପୁସ୍ତକ ଛଡ଼ା) ଅନାବିଷ୍କୃତ ଅବସ୍ଥାରେ ଅଛି ।

ପ୍ରାଚୀନ ଭାରତର ଆଇନ ପ୍ରଣେତାଙ୍କର ଆଇନ କାନୁନ ସମୂହକୁ ଦୃଷ୍ଟି ନିକ୍ଷେପ କଲେ, ସେଥିରେ ତତ୍‌କାଳୀନ ସମାଜର କଲ୍ୟାଣ ପାଇଁ ବହୁଳ ଭାବରେ 'ବିଧି' ଓ 'ବାରଣ'ର ଅବତାରଣା କରାଯାଇଥିବାର ଲକ୍ଷ୍ୟ କରାଯାଏ । ତେଣୁ ଓଡ଼ିଶାର ପ୍ରାଚୀନ ଆଇନକାନୁନ୍ ଅନାବିଷ୍କୃତ ହେଲେ ବି, ସେଥିରେ ମଧ ଏହିପରି ଅନେକ 'ବିଧି' ଓ 'ବାରଣ' ନିଶ୍ଚିତ ଭାବରେ ଥିବ ।

ସମାଜର ବ୍ୟବସ୍ଥା ଅନୁସାରେ ଆଇନ ପରିବର୍ତ୍ତନଶୀଳ । ଆଇନର ଯୁଗପୋଯୋଗୀ କ୍ରମବିକାଶ ଘଟିଥାଏ । ମାତ୍ର ଯାହାଦିନେ ସମାଜର ସମୂହ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଥିଲା; ସେ ସବୁ ଲିଖି ନଯାଇ ବଚନ, ପ୍ରବଚନ ଆକାରରେ ଆହୁରି ସରଳ ଭାବରେ 'ଢଗ', 'ଢମାଳି' ଆକାରରେ ସମାଜରେ ରହିଯାଏ କାଳ କାଳକୁ । କେବଳ ମାତ୍ର ଏହି ଦୃଷ୍ଟିକୋଣରୁ , ଓଡ଼ିଶାର ବଚନ, ପ୍ରବଚନ, ଢଗ, ଢମାଳି ସମୂହର ଉତ୍ପତ୍ତିକାଳ ଆଜିଠାରୁ (୧୯୯୬) ଅତି କମ୍‌ରେ ପ୍ରାୟ ଦୁଇ ହଜାର ବର୍ଷ ହେବ ।

ଏହି ପୃଷ୍ଠଭୂମିରେ ବିଚାର କଲେ ଖ୍ରୀ. ପୂ ୧ମ ଶତାବ୍ଦୀ ପୂର୍ବରୁ ଓଡ଼ିଶାର ସମାଜ, ସାହିତ୍ୟ ଓ ସଂସ୍କୃତି ତଥା ଆଇନ କାନୁନ ଯେ ଅତି ଉଚ୍ଚମାନର ଥିଲା, ଏହା ଆନୁଷଙ୍ଗିକ ପ୍ରମାଣସିଦ୍ଧ । କାରଣ ସମସ୍ତ ବିଷୟର ଅଭିବୃଦ୍ଧି ଧନଧାନ୍ୟ ତଥା ଐଶ୍ୱର୍ଯ୍ୟ ଉପରେ ପର୍ଯ୍ୟବସିତ ।

ଏହି ସମୟର ସ୍ରୋତସ୍ୱିନୀରେ କେତେ ଯେ '' ଦନାଇ ବଚନ'' '' ଡାକରଷି ବଚନ'', ''କୃଷି ବଚନ'' ପ୍ରଭୃତି କେଉଁ ପରିସ୍ଥିତିରେ ଆବିର୍ଭୂତ ହୋଇ ମିଳାଇ ଯାଇଛି କିଏ ବା ତା ଖବର ରଖିଛି ?

ଏହି ସିଦ୍ଧ ବଚନ ସମୂହ ଓଡ଼ିଆ ସାରସ୍ୱତ ଭଣ୍ଡାରର ଅମୂଲ୍ୟ ରତ୍ନ; ସେଇ ରତ୍ନ ସବୁକୁ ସାଉଁଟା ସାଉଁଟି କରି ସାହିତ୍ୟ ଚାଙ୍ଗୁଡ଼ିରେ ସଜାଇ ମା' ସାରଳାଙ୍କୁ ଅର୍ଘ୍ୟ ଦେଇ ତାଙ୍କରି ନିର୍ଦ୍ଦେଶ ପାଳନ କରିବା ସଙ୍କଳୟିତାଙ୍କର ଏକମାତ୍ର ସାନ୍ତ୍ୱନା ।



# ଚାଣକ୍ୟ ନୀତି

(୧) (କ) ସୁଖର ମୂଳ- ଧର୍ମ

(ଖ) 'ଦାନ' ହିଁ ଧର୍ମ ଅଟେ ।

(ଗ) ଧର୍ମ ଓ ଅର୍ଥକୁ ଯିଏ ବର୍ଦ୍ଧିତ କରାଏ ତାକୁ 'କାମ' କହନ୍ତି ।

(ଘ) ଧର୍ମ ଓ ଅର୍ଥ ହାନିକାରକ 'କାମ' ସେବୀକୁ ଅନର୍ଥ ସେବୀ କହନ୍ତି ।

(ଙ) ଅର୍ଥ ଅର୍ଥାତ୍ ସ୍ୱାର୍ଥ ସହିତ ମନୁଷ୍ୟର ନିତ୍ୟ ସମ୍ବନ୍ଧ ଅଛି ।

(ଚ) ସମସ୍ତେ ଅର୍ଥର ବଶ ।

(ଛ) 'ଦାନ' 'ଧନ' ର ଅନୁଗାମୀ ଅର୍ଥାତ୍ ଧନର ପ୍ରାଭୃତ (ପରିମାଣ) ଅନୁସାରେ ଦାନ କରିବା ଉଚିତ୍ ।

(ଜ) ଯେଉଁ ବ୍ୟକ୍ତି ତୃଷାତୁର ବା ଅର୍ଥାତୁର ତାକୁ ସହଜରେ ମନାଇ ହୁଏ ।

(ଝ) ତୃଷ୍ଣା ମତିକୁ ଆଚ୍ଛନ୍ନ କରେ ।

(ଞ) ଧର୍ମ ସଂସାରକୁ ଧାରଣ କରିଅଛି ।

(ଟ) ମଲାପରେ ମନୁଷ୍ୟର ପ୍ରେତାତ୍ମା ସହିତ ଧର୍ମ ଅଧର୍ମ ଗତି କରନ୍ତି ।

(ଠ) ଦୟା ଧର୍ମର ଜନ୍ମ ଭୂମି ।

(ଡ) ଧର୍ମର ମୂଳରେ ସତ୍ୟ ଓ ଦାନ ରହିଥାନ୍ତି ।

(ଢ) ଧର୍ମବଳ ଦ୍ୱାରା ସାରାଜଗତକୁ ଜୟ କରାଯାଏ ।

(ଣ) ଧାର୍ମିକ ଲୋକକୁ ମୃତ୍ୟୁ ମଧ ରକ୍ଷାକରେ ।

(ତ) ଧର୍ମର ବିପରୀତ 'ପାପ', 'ପାପ' ଯେଉଁ ଯେଉଁ ସ୍ଥାନରେ ପ୍ରବର୍ତ୍ତିତହୁଏ, ସେହି ସେହି ସ୍ଥାନରେ ଧର୍ମର ଅବମାନନା ହୁଏ ।

(ଥ) ଅଧର୍ମ ବୁଦ୍ଧି ନିଜକୁ ବିନାଶ କରେ ।

(ଦ) ନିଜକୁ ଅମର ମନେକରି ଅର୍ଥ ଉପାର୍ଜ୍ଜନ କରିବା ଉଚିତ ।

(ଧ) ଅର୍ଥବାନ (ଧନୀ) ବ୍ୟକ୍ତି ସମସ୍ତଙ୍କ ମଧ୍ୟରେ ବଡ଼ବୋଲି ବିବେଚିତ ହୁଏ ।

(ନ) ଧନହୀନ ହେଲେ, ଦେବରାଜ ଇନ୍ଦ୍ରଙ୍କପରି ବ୍ୟକ୍ତି ମଧ୍ୟ ଅନାଦୃତ ହୁଅନ୍ତି ।

(ପ) ଧନବାନ୍ (ଧନୀ ) ବ୍ୟକ୍ତି ବିରୂପ ହୋଇଥିଲେ ମଧ୍ୟ ସୁରୂପ ବୋଲି ଗୃହିତ ହୁଅନ୍ତି ।

(ଫ) ଧନବାନ୍ (ଧନୀ) ବ୍ୟକ୍ତି କୃପଣ ହେଲେ ମଧ୍ୟ ତାକୁ ଯାଚକମାନେ ଛାଡ଼ନ୍ତି ନାହିଁ ।

(ବ) ଧନବାନ୍ (ଧନୀ) ବ୍ୟକ୍ତି ଅକୁଳୀନ ହୋଇଥିଲେ ମଧ୍ୟ କୁଳୀନଠାରୁ ମଧ୍ୟ ବିଶିଷ୍ଟ ସ୍ଥାନ ଅଧିକାର କରେ ।

(ଭ) ଐଶ୍ୱର୍ଯ୍ୟ ପ୍ରାପ୍ତି ବୁଦ୍ଧିର ଫଳ ଅଟେ ।

(୨) ଧର୍ମର ମୂଳ ଅର୍ଥ (ଧର୍ମାଚରଣ ପାଇଁ ଅର୍ଥ ଆବଶ୍ୟକ । ଧର୍ମକୁ ରକ୍ଷା କରିବା ପାଇଁ ଅର୍ଥ ନିତାନ୍ତ ପ୍ରୟୋଜନ) ।

(୩) ଅର୍ଥର ମୂଳ ରାଜ୍ୟ । (ରାଜ୍ୟରୁ ଅର୍ଥ ସଂଗୃହୀତ ହୋଇଥାଏ)

(୪) ରାଜ୍ୟର ମୂଳ ହେଉଛି ଇନ୍ଦ୍ରିୟ ଜୟ ।
(କାମ, କ୍ରୋଧ, ମୋହ, ମଦ, ମାତ୍ସର୍ଯ୍ୟକୁ ଦମନ ନ କଲେ ରାଜ୍ୟ ଶାସନ ଅସମ୍ଭବ- ରାଜ୍ୟରେ ଅରାଜକତା ସୃଷ୍ଟି ହୁଏ ।)

(୫) ଇନ୍ଦ୍ରିୟ ଜୟର ମୂଳରେ ରହିଛି ବିନୟ । (ନମ୍ରତା ତଥା ଶାଳୀନତାର ଅଭ୍ୟାସ ଦ୍ୱାରା ଇନ୍ଦ୍ରିୟମାନଙ୍କ ଉପରେ ବିଜୟ ବିସ୍ତାର କରାଯାଇପାରେ)

(୬) ବିନୟର ମୂଳ ହେଉଛି ବୃଦ୍ଧ ଜନସେବା ।
(ବୃଦ୍ଧ ବ୍ୟକ୍ତିମାନେ ସଂସାର ବିଷୟରେ ଅଭିଜ୍ଞ, ତେଣୁ ସେମାନଙ୍କୁ ସେବା କରିବାଦ୍ୱାରା ତାଙ୍କଠାରୁ ସଂସାର ବିଷୟରେ ବହୁବିଧ ଅନୁଭୂତି ଉପଦେଶ ଗ୍ରହଣ କରାଯାଇ ପାରେ) ତେଣୁ କୁହାଯାଇଛି :-

(କ) ସେ ସଭା ପ୍ରକୃତ ସଭା ନୁହେଁ- ଯେଉଁଠାରେ ଅନୁଭବୀ ବୃଦ୍ଧ ନ ଥାନ୍ତି ।

(ଖ) ସେ ବୃଦ୍ଧଜନ ବୃଦ୍ଧ ନୁହଁନ୍ତି- ଯେଉଁମାନେ ଧର୍ମାନୁମୋଦିତ କଥା ନ କୁହନ୍ତି ।

(ଗ) ସେ ଧର୍ମକଥା ଧର୍ମ ନୁହେଁ- ଯାହାକି ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ ।

(ଘ) ସେ ସତ୍ୟ ସତ୍ୟ ନୁହେଁ- ଯାହା ଛଳନା ଉପରେ ଆଧାରିତ ।

(୭) ବୃଦ୍ଧ ସେବାରୁ ବିଜ୍ଞାନ ଲାଭ ।

(୮) ବିଜ୍ଞାନ ଦ୍ୱାରା ଆତ୍ମୋନ୍ନତି ସମ୍ପାଦିତ ହୁଏ ।

(୯) ଆତ୍ମ ସମ୍ପନ୍ନ ବ୍ୟକ୍ତି ଜିତେନ୍ଦ୍ରିୟ ହୁଏ ।

(୧୦) ଜିତେନ୍ଦ୍ରିୟ ବ୍ୟକ୍ତି ସକଳ ମନୋରଥ ପ୍ରାପ୍ତ ହୁଏ ।

(୧୧) ଅର୍ଥ ସମ୍ପଦ, ପ୍ରକୃତି ସମ୍ପଦ (ଯଥା:- ମନ୍ତ୍ରୀ, ସୈନ୍ୟ, ଅମାତ୍ୟ, ମିତ୍ର, ଦୁର୍ଗ, ଭୂମି ଇତ୍ୟାଦି) ଲାଭ କରାଏ ।

(୧୨) ଆତ୍ମଶକ୍ତି ସମ୍ପାଦନ କରିବା ବ୍ୟକ୍ତି ସହାୟକମାନଙ୍କୁ ଉତ୍ପନ୍ନ କରିପାରିବ ।

(୧୩) ତେଜ ମନୁଷ୍ୟର ବିଭିନ୍ନ କାର୍ଯ୍ୟସିଦ୍ଧିର କାରଣ ଅଟେ ।
(ଯେପରି ବିନା ତାତିରେ ଲୁହା ଯୋଡାଯାଇ ପାରେ ନାହିଁ) ।

(୧୪) (କ) ବ୍ୟସନାସକ୍ତ ବ୍ୟକ୍ତିର କୌଣସି କାର୍ଯ୍ୟ ସଫଳ ହୁଏ ନାହିଁ ।

(ଖ) ବ୍ୟସନୀ ବ୍ୟକ୍ତି କାଯର୍ୟକାଳ ପ୍ରବେଶ ପୂର୍ବରୁ ତାହା ପାଶୋରି ଦେଇଥାଏ ।

(୧୫) ଜୁଆଡ଼ିମାନଙ୍କ କାର୍ଯ୍ୟ ସିଦ୍ଧ ହୁଏ ନାହିଁ ।

(୧୬) ମୃଗୟାଶକ୍ତ ବ୍ୟକ୍ତିର ଧର୍ମ ଓ ଅର୍ଥ ନଷ୍ଟ ହୁଏ ।

(୧୭) ଧନ ଅର୍ଜନ ପାଇଁ ଯତ୍ନ କରିବା ‘ବ୍ୟସନ’ ମଧ୍ୟରେ ଗଣ୍ୟ ହୁଏ ନାହିଁ ।

(୧୮) କାମାସକ୍ତ ବ୍ୟକ୍ତିର କୌଣସି କାର୍ଯ୍ୟ ଅନୁଷ୍ଠିତ ହୋଇପାରେ ନାହିଁ ।

(୧୯) ଲକ୍ଷ୍ମୀ ବୃଦ୍ଧିରେ ସନ୍ତୁଷ୍ଟ ହେବା ବ୍ୟକ୍ତିଙ୍କୁ ଲକ୍ଷ୍ମୀ ତ୍ୟାଗ କରନ୍ତି ।
(ଅର୍ଥ- ଉପାର୍ଜନରେ ସନ୍ତୁଷ୍ଟ ହେଲେ ଅର୍ଥହାନି ଘଟିଥାଏ, ତେଣୁ ସର୍ବଦା ଅର୍ଥଲାଭ ପାଇଁ ଯତ୍ନ କରାଯିବା ବିଧେୟ)

(୨୦) ବୃଦ୍ଧି ଓ ବିନାଶ ନିଜର ଅଧୀନ ଅଟନ୍ତି ।

(୨୧) ବୃତ୍ତି ହିଁ ଅର୍ଥ ଲାଭର ମୂଳ କାରଣ ।

(୨୨) ଧର୍ମ ଏବଂ କାମ ଅର୍ଥର ଅଧୀନ ଅଟନ୍ତି ।

(୨୩) ସମସ୍ତ କାର୍ଯ୍ୟ ଧନ ସାହାଯ୍ୟରେ ସମ୍ପନ୍ନ ହୋଇଥାଏ ।

(୨୪) ଧନ ଦ୍ୱାରା ଅଳ୍ପ ଯତ୍ନରେ ମଧ୍ୟ କାର୍ଯ୍ୟ ସିଦ୍ଧ ହୁଏ ।

(୨୫) ପୁରୁଷକାର ଦୈବର ଅନୁସରଣ କରେ ।

(୨୬) ଦୈବ ବିନା ଅତ୍ୟନ୍ତ ଯତ୍ନ ଦ୍ୱାରା ସମ୍ପାଦନ କରାଯାଉଥିବା କାର୍ଯ୍ୟ ମଧ ବିଫଳ ହୋଇଯାଏ ।

(୨୭) ଅହିତକର ବ୍ୟକ୍ତିର କୌଣସି କାର୍ଯ୍ୟ ସାଧିତ ହୁଏ ନାହିଁ ।

(୨୮) ପ୍ରଥମେ ନିଶ୍ଚିତକରି ପରେ କାର୍ଯ୍ୟ ଆରମ୍ଭ କରାଯାଏ ।

(୨୯) ଗୋଟିଏ କାର୍ଯ୍ୟକୁ ଛାଡି ତାହାର ଅନ୍ୟ ସହାୟକ କାର୍ଯ୍ୟ କରିବାରେ ଅଳସ ପଣିଆ କରିବା ଅନୁଚିତ ।

(୩୦) ଚଞ୍ଚଳମତି ବ୍ୟକ୍ତିର କୌଣସି କାର୍ଯ୍ୟ ସିଦ୍ଧ ହୁଏ ନାହିଁ ।

(୩୧) ହାତକୁ ଆସିଥିବା କାର୍ଯ୍ୟ ପ୍ରମାଦ ବଶତଃ ପରିତ୍ୟାଗକଲେ ଘୋର ବ୍ୟତିକ୍ରମ (ଅର୍ଥାତ ଅଘଟଣ) ଘଟେ ।

(୩୨) ଦୋଷ ବର୍ଜିତ କାର୍ଯ୍ୟ ଦୁର୍ଲ୍ଲଭ ଅଟେ ।

(୩୩) ଯେଉଁ କାର୍ଯ୍ୟ ଦୁଃଖଦାୟକ, ଯେଉଁ କାର୍ଯ୍ୟ ଦ୍ୱାରା ଝିଂଝଟର ସମ୍ମୁଖୀନ ହେବାକୁ ପଡେ, ସେପରି କାର୍ଯ୍ୟ ଆରମ୍ଭ କରିବା ଅନୁଚିତ ।

(୩୪) ଯେଉଁ ବ୍ୟକ୍ତି କାଳର ଗତିକୁ ଅନୁମାନ କରି ଚଳିପାରେ, ସେ ନିଶ୍ଚିତରେ କାର୍ଯ୍ୟ ସାଧନ କରିଥାଏ ।

(୩୫) ଦେଶ ଏବଂ କାଳ ସମ୍ପର୍କରେ ବିହିତ ଜ୍ଞାନ ଆହରଣ କରି ଯେ କୌଣସି କାର୍ଯ୍ୟ ଆରମ୍ଭ କରିବା ଉଚିତ ।

(୩୬) ନୀତିବାନ ତଥା ଜ୍ଞାନି ବ୍ୟକ୍ତି ଦେଶ ଓ କାଳକୁ ପରୀକ୍ଷା କରି କାର୍ଯ୍ୟ କରିବେ ।

(୩୭) ଦୈବ ସାହାଯ୍ୟ ବିନା ସୁସାଧ କାର୍ଯ୍ୟ ମଧ୍ୟ ଦୁଃସାଧ ହୋଇଯାଏ ।

(୩୮) ଯେଉଁ ବ୍ୟକ୍ତି ଦେଶ ଓ କାଳକୁ ଦେଖିଚାହିଁ କାର୍ଯ୍ୟକରେ, ଲକ୍ଷ୍ମୀ ଚିରକାଳ ତା' ନିକଟରେ ରହିଥାନ୍ତି ।

(୩୯) ଯେତେ ଭାଗ୍ୟବାନ ହେଲେ ମଧ୍ୟ ବୁଝି ବିଚାରି କାର୍ଯ୍ୟ ନ କଲେ ଲକ୍ଷ୍ମୀ ତାକୁ ଛାଡି ଚାଲିଯାଆନ୍ତି ।

(୪୦) ଯେଉଁ ବ୍ୟକ୍ତି କେଉଁ କାର୍ଯ୍ୟରେ ବିଶାରଦ ବା ଅଭିଜ୍ଞ ତାକୁ ସେହି କାର୍ଯ୍ୟରେ ନିଯୁକ୍ତି କରିବା ଉଚିତ ।

(୪୧) ଉପାୟଜ୍ଞ ବ୍ୟକ୍ତି ଦୁଃସାଧ କର୍ମକୁ ମଧ ସୁସାଧ କରିପାରେ ।

(୪୨) ଅଜ୍ଞାନୀ ଦ୍ୱାରା ସିଦ୍ଧ ହେବା କାର୍ଯ୍ୟକୁ ସଫଳତାର ମାପକାଠି ହିସାବରେ ଗ୍ରହଣଯୋଗ୍ୟ ନୁହେଁ । କାରଣ ଦୈବାତ୍ କେତେ କାର୍ଯ୍ୟ ଅଜ୍ଞାନୀଦ୍ୱାରା ମଧ୍ୟ ସିଦ୍ଧ ଭାବରେ ସମ୍ପାଦିତ ହୋଇଥାଏ ।

(୪୩) (କ) ସିଦ୍ଧହେବା କାର୍ଯ୍ୟକୁ ପ୍ରକାଶ କରିବା କର୍ତ୍ତବ୍ୟ ଅଟେ ।

(ଖ) ଅପମାନ ଦ୍ୱାରା ଆସିବା ଐଶ୍ୱର୍ଯ୍ୟକୁ ମନସ୍ୱୀ ବ୍ୟକ୍ତି ଭ୍ରୂକ୍ଷେପ କରେ ନାହିଁ ।

(୪୪) (କ) ଜ୍ଞାନୀ ବ୍ୟକ୍ତିର ସୁବ୍ୟବସ୍ଥିତ କାର୍ଯ୍ୟ ମଧ୍ୟ ଅନ୍ୟ ବ୍ୟକ୍ତିର ଦୋଷ ଓ ଦୈବର ପ୍ରତିକୂଳତା ଯୋଗୁ ନଷ୍ଟ ହୋଇଯାଏ ।

(ଖ) ସମୟେ ସମୟେ ବହୁତଗୁଡ଼ିଏ ଗୁଣକୁ ଏକମାତ୍ର ଦୋଷ ମଧ ନଷ୍ଟ କରିଦିଏ ।

(ଗ) ବିଦ୍ୱାନ ପୁରୁଷଠାରେ ମଧ ଦୋଷ ଥାଏ ।

(ଉଦ୍ଧାହରଣ ସ୍ୱରୂପ-ରତ୍ନରେ ମଧ ଛିଦ୍ର ଅଛି ଅର୍ଥାତ୍ ଅଛିଦ୍ର ରତ୍ନ ନାହିଁ )।

(୪୫) ନିଜର କାର୍ଯ୍ୟ ସିଦ୍ଧି କରିବାକୁ ଇଚ୍ଛାକରୁଥିବା ବ୍ୟକ୍ତି କଦାପି ଉଦାସୀନ ହୋଇ ରହିବେ ନାହିଁ; ପରନ୍ତୁ କାର୍ଯ୍ୟ ସିଦ୍ଧିପାଇଁ ବିବିଧ ପ୍ରକାର ଚେଷ୍ଟା କରିବେ । (କାରଣ, କ୍ଷୀର ପାନ କରିବାକୁ ବାଛୁରୀ ମା'ର ପହ୍ନାକୁ ବାରମ୍ବାର ଆଘାତ ନକଲେ ମା'ତାକୁ ସ୍ୱଇଛାରେ କ୍ଷୀର ପାନ କରାଏ ନାହିଁ ।)

(୪୬) ଯତ୍ନ ନ କଲେ କାର୍ଯ୍ୟରେ ବିପତ୍ତି ଘଟେ ।

(୪୭) କେବଳ ଦୈବ ଅଥବା ଭାଗ୍ୟ ଉପରେ ନିର୍ଭର ତଥା ଭରସା ରଖିବା ବ୍ୟକ୍ତିର କାର୍ଯ୍ୟ ସିଦ୍ଧି ହୁଏ ନାହିଁ ।

(୪୮) ମନୁଷ୍ୟଦ୍ୱାରା ସଂଗଠିତ ବିପତ୍ତିକୁ ନିଜର ଚାତୁରୀ ବଳରେ ଦୂର କରିବାକୁ ହେବ ।

(୪୯) କୌଣସି କାମ ବିଗିଡ଼ି ଗଲେ, ମୂର୍ଖମାନେ ଏହାର ଦୋଷକୁ ବର୍ଣ୍ଣନା କରିଥାନ୍ତି ।

(୫୦) ଦୈବ ପ୍ରତିକୂଳ ହେଲେ ହୋମ, ପୂଜାପାଠ ପ୍ରଭୃତି ଶାନ୍ତିକର୍ମଦ୍ୱରା ତାହାର ପ୍ରତିଷେଧ କରିବାକୁ ହେବ ।

(୫୧) କେଉଁ କାର୍ଯ୍ୟ କେଉଁ ସମୟରେ କରାଯାଏ ତାହା ଯିଏ ଠିକ୍‌ଭାବରେ ଜାଣେ ନାହିଁ, ସେ ଅନ୍ଧ ଅଟେ ।

(୫୨) ନିର୍ଦ୍ଦିଷ୍ଟ କାର୍ଯ୍ୟର ସମୟ ସୀମା ମଧ୍ୟରେ କାର୍ଯ୍ୟ ସାଧନ କରିବା ବିଧେୟ, କାରଣ ସମୟ ଅତିବାହିତ ହୋଇଗଲେ ସେ କାର୍ଯ୍ୟ ସିଦ୍ଧି ହୋଇପାରେ ନାହିଁ । ପରନ୍ତୁ ସେହି କାର୍ଯ୍ୟର ଫଳ ସେହି ଅତୀତ ସମୟହିଁ ହରଣକରି ନେଇଥାଏ । (ଉପରୋକ୍ତ କାରଣରୁ ସମସ୍ତ କାର୍ଯ୍ୟସାଧନ ବେଳେ କାଳକ୍ଷେପ କଦାପି କରିବା ଉଚିତ ନୁହେଁ) ।

(କୌଣସି କାର୍ଯ୍ୟ କରିବା ସକାଶେ କାଳକ୍ଷେପ କଲେ ସେଥିରେ ବିଘ୍ନ ଉପସ୍ଥିତ ହୋଇଯିବା ସ୍ୱାଭାବିକ) ।

(୫୩) ପ୍ରତ୍ୟକ୍ଷ, ପରୋକ୍ଷ ଓ ଅନୁମାନ ଦ୍ୱାରା କାର୍ଯ୍ୟ ପରୀକ୍ଷା କରି ସିଦ୍ଧ କରି ନେବାକୁ ହୁଏ ।

(୫୪) ପରୀକ୍ଷା ନକରି କାର୍ଯ୍ୟକରିବା ବ୍ୟକ୍ତିକୁ ଲକ୍ଷ୍ମୀ ପରିତ୍ୟାଗ କରନ୍ତି ।

(୫୫) ନିଜର ଶକ୍ତିକୁ ଦେଖି କାର୍ଯ୍ୟ ଆରମ୍ଭ କରିବା ଉଚିତ ।

(୫୬) ଗୁଡ଼ିଏ ଲାଭଜନକ ବ୍ୟବସାୟ / ବୃତ୍ତି ଖୋଲିଦେଲେ ଆୟର ଉତ୍ସ ବୃଦ୍ଧିପ୍ରାପ୍ତ ହୁଏ ।

(୫୭) ଶ୍ରମକାତର ବ୍ୟକ୍ତିର କାର୍ଯ୍ୟହାନୀ ସକାଶେ ଚିନ୍ତା ନଥାଏ ।

(୫୮) ସ୍ୱାମୀ/କର୍ତ୍ତାର ସ୍ୱଭାବ ଜାଣି କାର୍ଯ୍ୟକରିବା ବ୍ୟକ୍ତି ନିଜର ଉଦ୍ଦେଶ୍ୟ ସାଧନ କରିଥାଏ ।

(ଉଦାହରଣ ସ୍ୱରୂପ :- ଯେ ଗାଈର ସ୍ୱଭାବ ଜାଣି ଦୁଧ ଦୁହେଁ ସେ ଭଲ-ଭାବରେ ଦୁଧ ଖାଏ) ।

(୫୯) କେବଳ ସାହସ ଦ୍ୱାରା କାର୍ଯ୍ୟ ସିଦ୍ଧି ହୁଏ ନାହିଁ ।

(୬୦) ସତ୍ୟବାନ୍ ବ୍ୟକ୍ତିର ଅପ୍ରାପ୍ୟ ହୋଇ କିଛି ନାହିଁ ।

(୬୧) ସରଳ ପ୍ରକୃତିର ଲୋକ ସଂସାରରେ ଦୁର୍ଲ୍ଲଭ ।

(୬୨) ଯେଉଁ କାର୍ଯ୍ୟ କରିବା ଦ୍ୱାରା ନିଶ୍ଚିତ ଭାବେ ବିନାଶର ସମ୍ଭାବନା ଥାଏ, ତା' ଅପେକ୍ଷା ଯେଉଁ କାର୍ଯ୍ୟ କରିବା ଦ୍ୱାରା ବିନାଶର ସନ୍ଦେହ ଥାଏ ତାହାହିଁ କରିବା ଶ୍ରେୟସ୍କର ।

(୬୩) (କ) ଅନେକଗୁଡ଼ିଏ କାର୍ଯ୍ୟ ଥିଲେ, ଯେଉଁ କାର୍ଯ୍ୟ ଦ୍ୱାରା ଭବିଷ୍ୟତରେ ବହୁତ ଫଳ ମିଳିବାର ଆଶାଥାଏ ସେହିକାର୍ଯ୍ୟ ପ୍ରଥମେ କରିବା ବିଧେୟ ।

(ଖ) ଉନ୍ନତି ଓ ଅବନତିର ଲକ୍ଷଣ ମନୁଷ୍ୟର ପ୍ରକୃତି ଓ କାଯ୍ୟରୁ ପ୍ରତୀୟମାନ ହୁଏ ।

(ଗ) ମନସ୍ୱୀ ବ୍ୟକ୍ତିମାନଙ୍କର ନିଜର ବୁଦ୍ଧି ବିଷୟରେ ଭୟ ନଥାଏ ।

(ଘ) ସଂଯମୀ ବ୍ୟକ୍ତିମାନଙ୍କର ସାଂସାରିକ ଭୟ ନଥାଏ ।

(ଙ) ଯେଉଁ ବ୍ୟକ୍ତି ନିଜର କର୍ତ୍ତବ୍ୟ ପୂରା କରିପାରିଥାଆନ୍ତି, ତାଙ୍କର ମରଣ ଭୟ ନଥାଏ ।

(ଚ) ସଜ୍ଜନ ବ୍ୟକ୍ତି ଅନ୍ୟର ସ୍ୱାର୍ଥକୁ ନିଜର ସ୍ୱାର୍ଥଭାବି, ତା'କୁ ପୂରଣ କରିଥାଆନ୍ତି ।

(ଛ) ନିଜର କାର୍ଯ୍ୟ ସିଦ୍ଧ କରିବା ବେଳେ ଶତ୍ରୁମାନଙ୍କ ସହଯୋଗ କରିବ ନାହିଁ ।

(ଜ) ନିଜର କାର୍ଯ୍ୟ ସିଦ୍ଧ ହେବାପରେ ମଧ୍ୟ ଶତ୍ରୁକୁ ବିଶ୍ୱାସ କରିବା ଉଚିତ ନୁହେଁ ।

(ଝ) ଦୁଷ୍କର କାର୍ଯ୍ୟ ଯଦି ଉପାୟର ସହିତ ସାଧନ କରାଯାଏ, ତାହାହେଲେ ନିଶ୍ଚିତ ଭାବେ କାର୍ଯ୍ୟର ସିଦ୍ଧି ଲାଭ ହୁଏ ।

(ଞ) ସିଦ୍ଧିଲାଭ ହେବା କାର୍ଯ୍ୟ ମଧ, ଅନୁପାୟ ଦ୍ୱାରା ବିନଷ୍ଟ ହୋଇଯାଏ ।

(ଟ) କାର୍ଯ୍ୟାର୍ଥି ବ୍ୟକ୍ତିମାନଙ୍କର ଏକମାତ୍ର, ଉପାୟ ହିଁ, ସହାୟକ ହୋଇଥାଏ ।

(ଠ) ପୁରୁଷକାର ଯୋଗେ କରାଯିବା କାର୍ଯ୍ୟ ଦ୍ୱାରା ଲକ୍ଷ୍ୟ ସିଦ୍ଧି ବା ହାସଲ ହୋଇଥାଏ ।

(୬୪) ମୂର୍ଖମାନଙ୍କର ଯେ କୌଣସି କାର୍ଯ୍ୟ କରିବା ପାଇଁ ଡେଇଁ ପଡ଼ିବାର ସାହାସ ଅଛି । (ମୂର୍ଖମାନଙ୍କର ଏହି କର୍ମଯୋଗିତା ପାଇଁ ସେମାନଙ୍କ ସହିତ ବିବାଦ କରିବା ଉଚିତ ନୁହେଁ)।

(୬୫) ମୂର୍ଖମାଙ୍କର ସହିତ ମୂର୍ଖମାନେ ସେମାନଙ୍କର ବୁଝିବା (ବା ସମଝିବା) ଭାଷାରେ କଥାବାର୍ତ୍ତା କରନ୍ତି। (ଲୁହାଦ୍ୱାରା ଲୁହାକୁ ଯେପରି ଛେଦନ କରାଯାଏ, ସେହିଭଳି ମୂର୍ଖକୁ ମୂର୍ଖଦ୍ୱାରା ସାଧନ କରାଯାଏ) ।

(୬୬) ମୂର୍ଖର କେହି ମିତ୍ର ନୁହଁନ୍ତି ।

(୬୭) ଲାଭ ଆଶାରେ ଦେବା-ଦାନ ସଫଳ ହୁଏ ନାହିଁ, ବରଂ ଏପରି ଯେଉଁ ଦାନ ଦିଆଯାଇଥାଏ ତାହା ବହୁତ ଅନର୍ଥର କାରଣ ହୁଏ ।

(୬୮) ଜ୍ଞାନବାନ ତଥା ଗୁଣବାନ ବ୍ୟକ୍ତି ଅନ୍ୟକୁ ଦଣ୍ଡିତ କରିବା ଉଚିତ ନୁହେଁ ।

(୬୯) ଜାଣିବା ବ୍ୟକ୍ତି ଶତ୍ରୁ ସହିତ ସମ୍ପର୍କ ରଖିବା ଉଚିତ ନୁହେଁ ।

(୭୦) ଚରିତ୍ର ତଥା ସଦାଚାରକୁ କସ୍ମିନ କାଳେ ଲଂଘନ କରିବା ଉଚିତ ନୁହେଁ। (ଉଦାହରଣ ସ୍ୱରୁପ :- ସିଂହ ଯେତେ କ୍ଷୁଧାର୍ତ୍ତ ହେଲେ ମଧ ଘାସ ଖାଏ ନାହିଁ )।

(୭୧) ତୁମ୍ଭ ଉପରେ ନିର୍ଭର କରୁଥିବା ବ୍ୟକ୍ତିର ଭରସାକୁ, ତୁମ୍ଭେ ପ୍ରାଣଦେଇ ମଧ ପୂରଣ କରିବା ଉଚିତ୍ ।

(୭୨) ଅଳ୍ପ ଦୋଷ ହେତୁ ବହୁଗୁଣସମ୍ପନ୍ନ ବ୍ୟକ୍ତିଙ୍କୁ ପରିତ୍ୟାଗ କରିବା ଅନୁଚିତ ।

(୭୩) ବାଳକର ସାର୍ଥକ ବଚନ ମଧ ଶୁଣିବା ଉଚିତ ।

(୭୪) ସତ୍ୟ ହେଲେ ମଧ ଅଶ୍ରଦ୍ଧାକର ବାକ୍ୟ କହିବା ଅନୁଚିତ ।

(୭୫) ଖଳ ପ୍ରକୃତି ଓ ଚୁଗୁଲିଖୋର ବ୍ୟକ୍ତିକୁ ପୁତ୍ର ଏବଂ ଭାର୍ଯ୍ୟା ମଧ ପରିତ୍ୟାଗ କରନ୍ତି ।

(୭୬) ଅନ୍ୟର ଧନକୁ ବିଶ୍ୱାସରେ ରଖିବା ବ୍ୟକ୍ତିର ସ୍ୱାର୍ଥ ଉକ୍ତ ବ୍ୟକ୍ତିର ସ୍ୱାର୍ଥ ସହିତ ଏକ ହେବା ବିଧେୟ ।

(୭୭) କଟୁବାକ୍ୟ ନିଆଁରେ ପୋଡ଼ି ହେବାଠାରୁ ଅଧିକ ଯନ୍ତ୍ରଣା ଦାୟକ ଅଟେ ।

(୭୮) ତୀକ୍ଷ୍ଣ ଦଣ୍ଡ ସମସ୍ତଙ୍କ ଉଦ୍‌ବେଗର କାରଣ ହୋଇଥାଏ ।

(୭୯) ଅତ୍ୟନ୍ତ ତୀକ୍ଷ୍ଣ ପ୍ରକୃତିର ବ୍ୟକ୍ତି ସମସ୍ତଙ୍କର ଅପ୍ରିୟ ହୋଇଥାଏ ।

(୮୦) ଯନ୍ତ୍ରଣାଦାୟକ କଠୋର ଦଣ୍ଡ ଦେବା ଫଳରେ ସମସ୍ତେ ଅପ୍ରିୟ ହୋଇଥାଆନ୍ତି । (ଅତଏବ ଯଥାଯୋଗ୍ୟ ଦଣ୍ଡ ବିଧାନ୍ କରିବା ବିଧେୟ) ।

(୮୧) ରାଷ୍ଟ୍ରକର୍ତ୍ତା ଦଣ୍ଡନୀତିକୁ ପ୍ରୟୋଗ କରି ଶତ୍ରୁ ସେନାକୁ ଆୟତ୍ତ କରନ୍ତି ଏବଂ ପ୍ରଜା ପାଳନ ମଧ୍ୟ କରନ୍ତି ।

(୮୨) (କ) ଦଣ୍ଡନୀତିକୁ ଆୟତ୍ତ କରିପାରିଲେ ଆତ୍ମରକ୍ଷା ସହଜ ହୋଇଥାଏ ।

(ଖ) ଆତ୍ମରକ୍ଷା ହେଲେ ରାଜ୍ୟରକ୍ଷା ହେଲା ବୋଲି ବୁଝିବାକୁ ହେବ ।

(ଗ) ବୁଝିବିଚାରି ଦଣ୍ଡନୀତି ପ୍ରୟୋଗ କରିବା ଶ୍ରେୟସ୍କର ଅଟେ । (ଯେପରି ଅଗ୍ନି କୌଣସି କାଳେ ଦୁର୍ବଳ ନୁହେଁ, ତେଣୁ ଅଗ୍ନିଠାରୁ ସାବଧାନ ରହିବା ଉଚିତ; ସେହିପରି ରାଷ୍ଟ୍ର କର୍ତ୍ତା ଦୁର୍ବଳ ହୋଇଥିଲେ ମଧ ତାଙ୍କୁ ଅବହେଳା ବା ଅବମାନନା କରିବା ଉଚିତ ନୁହେଁ) ।

(ଘ) ସାରା ସଂସାରର ବ୍ୟବହାର ଦଣ୍ଡନୀତି ଉପରେ ହିଁ ଅବଲମ୍ବିତ ହୋଇଅଛି ।

(୮୩) (କ) ବଳବାନ୍ ବ୍ୟକ୍ତି ଦୁର୍ବଳ ବ୍ୟକ୍ତି ସହିତ ଯୁଦ୍ଧ ଘୋଷଣା କରିବେ ।

(ଖ) କିନ୍ତୁ ନିଜଠାରୁ ଅଧିକ ଶକ୍ତିଶାଳୀ କିମ୍ବା ନିଜ ସମାନସ୍କନ୍ଧ ବ୍ୟକ୍ତି ସହିତ ଯୁଦ୍ଧ କରିବେ ନାହିଁ ।

(ଗ) ବଳବାନ୍ ସହିତ ଯୁଦ୍ଧ କରିବା ଅର୍ଥ ହାତୀର ପାଦ ସହିତ ଯୁଦ୍ଧ କରିବା ସଙ୍ଗେ ସମାନ ।

(ଘ) ସେହିପରି ଦୁଇଜଣ ଦୁର୍ବଳ ବ୍ୟକ୍ତି ପରସ୍ପର ମଧ୍ୟରେ ଯୁଦ୍ଧ କଲେ ଉଭୟେ ସମୂଳେ ନଷ୍ଟ ହୋଇଯାନ୍ତି ।

(ଯେପରି କଞ୍ଚା ହାଣ୍ଡି ଅନ୍ୟ ଏକ କଞ୍ଚା ହାଣ୍ଡିରେ ବାଜି ନଷ୍ଟଭ୍ରଷ୍ଟ ହୋଇଯାଏ)।

(୮୪) କାରଣ ଥାଇ ଏକ ଅନ୍ୟର ଶତ୍ରୁ କିମ୍ବା ମିତ୍ର ହୋଇଥାଏ ।

(୮୫) ନିଜ ଆସ୍ଥାନ ନିକଟକୁ ଲାଗି ରହିଥିବା ଆସ୍ଥାନର ଅଧିକାରୀ ସ୍ୱଭାବତଃ 'ଶତ୍ରୁ' ହୋଇଥାଏ ।

(୮୬) ନିଜ ଆସ୍ଥାନ ପାଖରୁ ଗୋଟିଏ ଆସ୍ଥାନ ଛାଡି ଅନ୍ୟ ଆସ୍ଥାନର ଅଧିକାରୀ ସ୍ୱଭାବତଃ 'ମିତ୍ର' ହୁଅନ୍ତି ।

(୮୭) ଶତ୍ରୁର ବିରୋଧ କାର୍ଯ୍ୟରୁ ନିଜକୁ ଆତ୍ମରକ୍ଷା କରିବାକୁ ହେବ ।

(୮୮) ଶକ୍ତିହୀନ ବ୍ୟକ୍ତି ବଳବାନ ବ୍ୟକ୍ତିକୁ ଆଶ୍ରୟ କରିବା ବାଞ୍ଛନୀୟ । (ଦୁର୍ବଳ ବ୍ୟକ୍ତିକୁ ଆଶ୍ରୟ କଲେ ଦୁଃଖ ଓ କଷ୍ଟ ଭୋଗିବାକୁ ପଡ଼ିଥାଏ) ।

(୮୯) ନିଆଁ ପାଖରେ ଯେପରି ସାବଧାନତା ସହକାରେ ଚଳିବାକୁ ହୁଏ, ସେହିପରି କର୍ତ୍ତାଙ୍କ ପାଖରେ ମଧ୍ୟ ସାବଧାନ ହୋଇ ଚଳିବାକୁ ହେବ ।

(୯୦) କର୍ତ୍ତାଙ୍କର ପ୍ରତିକୂଳ କାର୍ଯ୍ୟ କରିବା ଅନୁଚିତ ।

(୯୧) କର୍ତ୍ତାଙ୍କ ସମ୍ମୁଖରେ ଉଦ୍ଧତ ବେଶ ଧାରଣ କରି ଦେଖାଦେବା ଅନୁଚିତ ।

(୯୨) ଦେବତାମାନଙ୍କ ପରି ପୂଜା ପାଇବାକୁ ଯତ୍ନ କରିବା ଅନୁଚିତ; ଏବଂ ଦେବତାଙ୍କ ମହିମାପରି ମହିମା ବିସ୍ତାର କରିବାକୁ ଇଚ୍ଛା କରିବା ଅନୁଚିତ ।

(୯୩) ଅସହାୟ ବ୍ୟକ୍ତିଙ୍କର ମନ୍ତ୍ରଣା ସଫଳ ହୁଏ ନାହିଁ । (ଯେପରି ଗୋଟିଏ ଚକରେ ଗାଡି ଚାଲି ପାରେ ନାହିଁ) ।

(୯୪) ସୁଖ ଓ ଦୁଃଖରେ ସହାନୁଭୂତି ପ୍ରଦର୍ଶନ କରିବା ବ୍ୟକ୍ତି ପ୍ରକୃତ ସହାୟକ ।

(୯୫) ଶିକ୍ଷିତ, ଶୁଦ୍ଧ ସ୍ୱଭାବ ବ୍ୟକ୍ତି ହିଁ ମନ୍ତ୍ରୀ ପଦବାଚ୍ୟ ।

(୯୬) ଅଶିକ୍ଷିତ ବ୍ୟକ୍ତି ଯେତେ ସ୍ନେହୀ ହେଲେ ମଧ୍ୟ ତାକୁ କଦାପି ମନ୍ତ୍ର ଅଧିକାର ଦେବା ଉଚିତ ନୁହେଁ ।

(୯୭) ଯେକୌଣସି ଉଦ୍ୟମ ମନ୍ତ୍ରମୂଳକ ଅଟେ ।

(୯୮) ମନ୍ତ୍ରରକ୍ଷା କରି ପାରିଲେ ଅଥବା କରିଜାଣିଲେ ସର୍ବ କାର୍ଯ୍ୟ ସିଦ୍ଧ ହୁଏ ।

(୯୯) ମନ୍ତ୍ରକୁ ଖୋଲିଦେବା ଅର୍ଥାତ ପ୍ରକାଶ କରିଦେବା ବ୍ୟକ୍ତିର ସମସ୍ତ କାର୍ଯ୍ୟ ବିନଷ୍ଟ ହୁଏ ।

(୧୦୦) ମନ୍ତ୍ରକୁ ପ୍ରମାଦଗ୍ରସ୍ତ କରିବା ବ୍ୟକ୍ତି ଶତ୍ରୁର ବଶବର୍ତ୍ତୀ ହୁଏ ।

(୧୦୧) ଉପରୋକ୍ତ କାରଣ ହେତୁ, ସବୁ ପ୍ରକାର ଯତ୍ନ କରି ମନ୍ତ୍ର ରକ୍ଷା କରିବା ଉଚିତ ।

(୧୦୨) ମନୁଷ୍ୟ କିଂକର୍ତ୍ତବ୍ୟ ବିମୂଢ଼ ହେଲାବେଳେ ମନ୍ତ୍ର (ମନ୍ତ୍ରଣା) ପ୍ରଦୀପ-ତୁଲ୍ୟ ଆଲୋକ ବିତରଣ କରେ ।

(୧୦୩) ମନ୍ତ୍ରରୂପକ ଚକ୍ଷୁଦ୍ୱାରା ଶତ୍ରୁର ଛିଦ୍ରଗୁଡିକୁ ନିରୂପଣ କରାଯାଏ ।

(୧୦୪) ମନ୍ତ୍ର ସମୟରେ କାହାପ୍ରତି ଈର୍ଷା ବା ଦ୍ୱେଷ କରିବା ଅନୁଚିତ । ଅର୍ଥାତ୍ କୌଣସି ମନ୍ତ୍ରଣାକୁ ଦ୍ୱେଷ ଯୋଗୁଁ ଉପେକ୍ଷା କରିବା ଉଚିତ ନୁହେଁ ।

(୧୦୫) ମନ୍ତ୍ର ଶକ୍ତି ଦ୍ୱାରା ରାଜ୍ୟ ବୃଦ୍ଧି ପ୍ରାପ୍ତ ହୁଏ । ଏଣୁ ମନ୍ତ୍ରକୁ ଗୁପ୍ତ ଭାବରେ ରଖିବା ସର୍ବଶ୍ରେଷ୍ଠ କାର୍ଯ୍ୟ ଅଟେ ।

(୧୦୬) ତିନିଜଣ ଏକାପରି କହିଲେ ସେଥିରେ ବିଶ୍ୱାସ ସ୍ଥାପନ କରିବା ବିଧେୟ ।

(୧୦୭) ଛ'କାନ ହେଲେ ଅର୍ଥାତ୍ ଦୁଇ ଜଣରୁ ତିନିଜଣ ଜାଣିଲେ ମନ୍ତ୍ର ପ୍ରକାଶ ପାଇଥାଏ ।

(୧୦୮) ଆପଦ ସମୟରେ ସଙ୍ଗତ୍ୟାଗ ନ କରିବା ବ୍ୟକ୍ତିକୁ ମିତ୍ର କୁହାଯାଏ ।

(୧୦୯) ମିତ୍ର ବୃଦ୍ଧି ହେଲେ ବଳ ବୃଦ୍ଧି ହୁଏ ।

(୧୧୦) ବଳବାନ୍ ଲବ୍ଧ ଲାଭରେ ବଳବାନ୍ ଶତ୍ରୁକୁ ମଧ୍ୟ ଜୟ କରିଥାଏ ।

(କ) ଆଳସ୍ୟପରାୟଣ ବ୍ୟକ୍ତି (ଅଳସୁଆ ଲୋକ)ର ଅଲବ୍ଧ ଲାଭ ହୁଏ ନାହିଁ ।

(ଖ) ଅଳସୁଆ ଲୋକ ଲାଭ କରିଥିବା ଦ୍ରବ୍ୟକୁ ମଧ୍ୟ ରକ୍ଷା କରିପାରେ ନାହିଁ ।

(ଗ) ଅଳସୁଆ ଲୋକର ସୁରକ୍ଷିତ ଦ୍ରବ୍ୟ ବୃଦ୍ଧିପ୍ରାପ୍ତ ହୁଏ ନାହିଁ ।

(ଘ) ଅଳସୁଆ ଲୋକ ନିଜର ଧନକୁ ଭୃତ୍ୟମାନଙ୍କ ଉପଯୋଗରେ ମଧ୍ୟ ଲଗାଇ ପାରେ ନାହିଁ ।

(ଙ) ଅଳସୁଆ ଲୋକର ଇହଲୋକ ଓ ପରଲୋକରେ ସୁଖଶାନ୍ତି ନାହିଁ ।

(ଚ) ଅଳସୁଆ ବ୍ୟକ୍ତିକୁ ଶାସ୍ତ୍ରଜ୍ଞାନ ପ୍ରାପ୍ତ ହୁଏ ନାହିଁ ।

(୧୧୧) (କ) ଅପ୍ରାପ୍ୟ ବସ୍ତୁକୁ ପ୍ରାପ୍ତ ହେବା,

(ଖ) ପ୍ରାପ୍ତ ବସ୍ତୁକୁ ରକ୍ଷା କରିବା,

(ଗ) ରକ୍ଷିତ ବସ୍ତୁର ବୃଦ୍ଧି କରିବା

(ଘ) ବୃଦ୍ଧି ପ୍ରାପ୍ତ ବସ୍ତୁକୁ ସେବକମାନଙ୍କ ଉପଭୋଗରେ ବିନିଯୋଗ କରିବାକୁ ରାଜତନ୍ତ୍ର କହନ୍ତି ।

(୧୧୨) ନୀତି ଶାସ୍ତ୍ର ରାଜ୍ୟତନ୍ତ୍ରର ଅଧୀନ ଅଟେ ।

(୧୧୩) ନିଜ ଦେଶରେ କର୍ତ୍ତବ୍ୟା କର୍ତ୍ତବ୍ୟ ନିର୍ଣ୍ଣୟକୁ 'ତନ୍ତ୍ର' କୁହାଯାଏ ।

(୧୧୪) ନୀତି ଶାସ୍ତ୍ର ଅନୁସାରେ ରାଜ୍ୟ ଶାସନ କଲେ ତାଙ୍କୁ ଉତ୍ତମ ଶାସକ(ରାଜା) କୁହାଯାଏ ।

(୧୧୫) ସମସ୍ତ ସମ୍ପତ୍ତିକୁ ସବୁ ପ୍ରକାର ଉପାୟ ପ୍ରୟୋଗକରି ଏକତ୍ରିତ କରିବା କର୍ତ୍ତବ୍ୟ ।

(୧୧୬) ପୋକ କାଟୁ କାଟୁ ମଧ୍ୟ ଚାରି ଅଙ୍କ (ଯୁଗଯୁଗ) ବିତିଯାଏ ।

(୧୧୭) କାର୍ଯ୍ୟ ସିଦ୍ଧି ନହେଲେ କର୍ତ୍ତା ଆଶ୍ରିତମାନଙ୍କୁ ପୋଷଣ କରିପାରନ୍ତି ନାହିଁ ।

(୧୧୮) ନିଜର ଆତ୍ମୀୟ ସ୍ୱଜନମାନଙ୍କୁ ଭୋଜନ କରାଇ ଯେଉଁ ବ୍ୟକ୍ତି ଭୋଜନ କରେ ସେ ଅମୃତ ଭୋଜନ କରେ ।

(୧୧୯) କୋମଳ ପ୍ରକୃତିର ଲୋକ ନିଜ ଚାକର/କର୍ମଚାରୀମାନଙ୍କ ଦ୍ୱାରା ମଧ୍ୟ ଅବମାନିତ ତଥା ଅପମାନିତ ହୋଇଥାଏ ।

(୧୨୦) କ୍ଷୁଦ୍ର ବ୍ୟକ୍ତି ଆଗରେ ନିଜର ଗୁପ୍ତକଥା ପ୍ରକାଶ କରିବ ନାହିଁ ।

(୧୨୧) ବିଦ୍ୟା ଏବଂ ଶାସ୍ତ୍ରରେ ଯେତେ ପାରଦର୍ଶିତା ଥିଲେ ମଧ ଦୁର୍ବଳ ବ୍ୟକ୍ତିକୁ ସଂସାର ଆଦର କରେ ନାହିଁ ।

(୧୨୨) ଅତିଶୟ ଦାୟିତ୍ୱ ବା ବୋଝ ମନୁଷ୍ୟକୁ କ୍ଷୀଣ ଓ ଅବସନ୍ନ କରିପକାଏ ।

(୧୨୩) ଯେଉଁ ବ୍ୟକ୍ତି ସଭାରେ ଅନ୍ୟର ଦୋଷ ପ୍ରକାଶ କରେ ସେ ସମସ୍ତଙ୍କ ଅପେକ୍ଷା ନିଜର ଧୃଷ୍ଟତା ଅଧିକ ପ୍ରକାଶ କରିଥାଏ ।

(୧୨୪) ନିଜକୁ ଆୟତ ନ କରି ଚଳିବା ଦୁର୍ବଳ ବ୍ୟକ୍ତି ଯଦି କ୍ରୋଧପରବଶ ହୁଏ, ତାହେଲେ ସେ ନିଜର ବିନାଶ ହିଁ ସାଧନ କରେ ।

(୧୨୫) ସୀମାକୁ ଅତିକ୍ରମ କରି କାହାକୁ ବିଶ୍ୱାସ କରିବେ ନାହିଁ ।

(୧୨୬) ଅପ୍ରିୟ ବ୍ୟକ୍ତି ଦ୍ୱାରା କରାଯିବା ପ୍ରିୟ କାର୍ଯ୍ୟ ମଧ୍ୟ ବିରୋଧାଚରଣ କାର୍ଯ ପରି ପ୍ରତୀୟମାନ ହୁଏ ।

(୧୨୭) ସଜ୍ଜନମାନଙ୍କ ମତକୁ ଲଂଘନ କରିବେ ନାହିଁ ।

(୧୨୮) ଗୁଣବାନକୁ ଆଶ୍ରୟ କଲେ ନିର୍ଗୁଣୀ ମଧ ଗୁଣୀ ହୋଇଯାଏ ।

(ଯେପରି-- (କ) ଦୁଧରେ ମିଶିଥିବା ଜଳମଧ୍ୟ ଦୁଧହୋଇ ଦୁଧର ମୂଲ୍ୟରେ ବିକ୍ରୟ ହୋଇଥାଏ ।

(ଖ) ମାଟି ପିଣ୍ଡ ମଧ ପାଟଳୀ ଫୁଲର ସହଯୋଗରେ ଆସି ଫୁଲର ସୁଗନ୍ଧ ବିତରଣ କରିଥାଏ ।

(ଗ) ସୁନା ସହିତ ମିଶିଥିବା ତମ୍ବା, ପିତଳ ମଧ୍ୟ ସୁନା ପରି ହୋଇଯାଏ ।)

(୧୨୯) ଦୁଷ୍ଟ ବ୍ୟକ୍ତି ଉପକାରୀ ବ୍ୟକ୍ତିର ମଧ୍ୟ ଅପକାର କରିବା ପାଇଁ ଇଚ୍ଛାକରେ ।

(୧୩୦) ପାପକର୍ମ କରିବା ବ୍ୟକ୍ତି ନିନ୍ଦାକୁ ଭୟକରେ ନାହିଁ ।

(୧୩୧) ଉତ୍ସାହୀ ବ୍ୟକ୍ତିର ଶତ୍ରୁ ମଧ୍ୟ ବଶବର୍ତ୍ତୀ ହୋଇଯାଏ ।

(୧୩୨) ନିରୁତ୍ସାହ ହେବା ଫଳରେ ଭାଗ୍ୟ ମଧ୍ୟ ନଷ୍ଟ ହୋଇଯାଏ ।

(୧୩୩) ପରାକ୍ରମ ହିଁ ପଦସ୍ଥମାନଙ୍କର ପ୍ରଧାନ ଧନ ଅଟେ ।

(୧୩୪) ମାଛ ଧରିବା ବ୍ୟକ୍ତି ଯେପରି ଜଳର ଉପଯୋଗ କରି ନିଜ କାର୍ଯ୍ୟ ସାଧନ କରିଥାଏ, ସେହିପରି ନିଜର ଶ୍ରମକୁ ଉପଯୋଗ କରି ଯେକୌଣସି କାର୍ଯ୍ୟ ସିଦ୍ଧ କରିବା ବିଧେୟ ।

(୧୩୫) ଅବିଶ୍ୱାସୀ ବ୍ୟକ୍ତିଙ୍କୁ କଦାପି ବିଶ୍ୱାସ କରିବନାହିଁ ।
(କାରଣ ବିଷ ସର୍ବଦା ବିଷ ହୋଇ ରହିବ)

(୧୩୬) ଶତ୍ରୁର ମଧ୍ୟ ସୁତ (ପୁଅ) ଓ ସଖା (ଅନ୍ତରଙ୍ଗ ବନ୍ଧୁ) ରକ୍ଷା ଯୋଗ୍ୟ ଅଟନ୍ତି ।

(୧୩୭) ନିଜର ଛିଦ୍ର (ଗଲତି)କୁ କସ୍ମିନ୍‌କାଳେ ପ୍ରକାଶ କରିବ ନାହିଁ ।
(କାରଣ, ଶତ୍ରୁମାନେ ଛିଦ୍ର (ଗଲତି) ଜାଣି ପ୍ରତିଶୋଧ ନିଅନ୍ତି)

(୧୩୮) ଯେ ପର୍ଯ୍ୟନ୍ତ ଶତ୍ରୁର ଛିଦ୍ର ଜଣାଯାଇ ନାହିଁ, ସେ ପର୍ଯ୍ୟନ୍ତ ତାକୁ ଉପରଠାଉରିଆ ଭାବେ ହାତରେ ରଖିବ ଅଥବା କାନ୍ଧରେ ବସାଇବ ।

(୧୩୯) ମାତ୍ର ଶତ୍ରୁର ଛିଦ୍ର ମିଳିଯିବା ପରେ ତାକୁ ତ୍ୟାଗ କରିବା ବିଧେୟ ।

(୧୪୦) ଶତ୍ରୁ ଅଧୀନ ହୋଇ ରହିଥିଲେ ମଧ୍ୟ ତାକୁ କଦାପି ବିଶ୍ୱାସ କରିବ ନାହିଁ ।

(୧୪୧) ନିଜର ବନ୍ଧୁ ଲୋକଙ୍କର ଦୂରାଚରଣ ନିବାରଣ କରିବା ବିଧେୟ ।

(୧୪୨) କେବଳ ସଦାଚରଣ ହିଁ ଶତ୍ରୁକୁ ଜୟ କରେ ।

(୧୪୩) ଆତ୍ମୀୟସ୍ୱଜନ ଅର୍ଥାତ୍ ନିଜର ସମ୍ବନ୍ଧୀୟ ବ୍ୟକ୍ତିମାନଙ୍କ ଅପମାନ ମଧ ମନସ୍ୱୀ ବ୍ୟକ୍ତିମାନଙ୍କ ମନରେ ଦୁଃଖ ଜାତ କରାଏ ।

(୧୪୪) ଗୋଟିଏ ସାଧାରଣ ଦୋଷ (ତ୍ରୁଟି) ମଧ କୌଣସି ବ୍ୟକ୍ତିକୁ ନାଶ କରିବା ପାଇଁ ଯଥେଷ୍ଟ ହୁଏ ।

(୧୪୫) (କ) ନୀଚକୁ କଦାପି ବୁଦ୍ଧି ଶିଖାଇବ ନାହିଁ କିମ୍ବା ବିଶ୍ୱାସ କରିବ ନାହିଁ ।

(ଖ) ନୀଚ ଲୋକର ଅପମାନର ଭୟ ନ ଥାଏ ।

(ଗ) ନୀଚ ଲୋକକୁ ବିଦ୍ୟା ପାପ କାର୍ଯ୍ୟରେ ପ୍ରବୃତ୍ତ କରାଏ । (ଯେପରି-- ସର୍ପକୁ କ୍ଷୀରପାନ କରାଇଲେ ବିଷ ବୃଦ୍ଧିହୁଏ, ମାତ୍ର ଅମୃତ ଉତ୍ପନ୍ନ ହୁଏ ନାହିଁ )

(ଘ) ନୀଚ ସହିତ ଉଚ୍ଚ କୁଳର ବିବାହ ସମ୍ବନ୍ଧ କରିବା ଅନୁଚିତ ।

(ଙ) ନୀଚ ପ୍ରକୃତିର ଲୋକେ ଅନ୍ୟକୁ ଛଳନା କରିବା ଓ ଅପମାନ ଦେବା ଏମାନଙ୍କର ପ୍ରିୟ କାର୍ଯ୍ୟ ଅଟେ ।

(ଚ) ନୀଚ ବ୍ୟକ୍ତିଠାରେ ଥିବା ବିଦ୍ୟାକୁ ଉପେକ୍ଷା କରିବା ଅନୁଚିତ ।

(ଛ) ନୀଚ ବ୍ୟକ୍ତି କୌଣସି ସହାୟକ ଦ୍ୱାରା ଦୁଷ୍କର କାର୍ଯ୍ୟ କରାଇ ପୁଣି ତାକୁ ଉପେକ୍ଷା ବା ଅବମାନନା କରେ ।

(୧୪୬) ଉତ୍ତମରୂପେ ଆଦର କଲେ ମଧ ଦୁର୍ଜନ ବ୍ୟକ୍ତି କେବଳ ପୀଡା ହିଁ ଦେଇଥାଏ । (ଯେପରି-- ବନ ଅଗ୍ନି ଚନ୍ଦନ ଗଛକୁ ମଧ୍ୟ ଜାଳି ଦିଏ)

(୧୪୭) ମନସ୍ୱୀ ବ୍ୟକ୍ତିଙ୍କୁ କଦାପି ଅନାଦର କରିବେ ନାହିଁ ।

(୧୪୮) କୌଣସି ବ୍ୟକ୍ତିକୁ କ୍ଷମା କରିବା ସକାଶେ ଯିବା ବ୍ୟକ୍ତିକୁ ବାଧା ଦେବ ନାହିଁ ।

(୧୪୯) ଦୁର୍ଜନ ବ୍ୟକ୍ତି କର୍ତ୍ତାଙ୍କର ଏକାନ୍ତରେ କହିଥିବା ବିଶ୍ୱାସ କଥାକୁ ମଧ ଖୁବ୍ ବଢ଼ାଇ ସମସ୍ତଙ୍କ ଆଗରେ ପ୍ରକାଶ କରିଦିଏ ।

(୧୫୦) ନିଶ୍ଚିତ ଭାବେ ଦାନ କରିଯିବା ପଦାର୍ଥକୁ ମଧ ମୂର୍ଖ-ଲୋଭୀ ବ୍ୟକ୍ତି ବଡ଼ କଷ୍ଟରେ ଦେଇଥାଏ ।

(୧୫୧) ଧୈର୍ଯ୍ୟହୀନ ବ୍ୟକ୍ତିର ଇହଲୋକ ଓ ପରଲୋକରେ ସୁଖ ଲାଭ ହୁଏ ନାହିଁ; ପୁଣି ସେ ମହାନ୍ ଐଶ୍ୱର୍ଯ୍ୟ ପାଇଲେ ମଧ୍ୟ ତାହା ନଷ୍ଟ ହୋଇଯାଏ ।

(୧୫୨) ଦୁଷ୍ଟ ପୁରୁଷର ସଂସର୍ଗ କର୍ତ୍ତବ୍ୟ ନୁହେଁ ।
(ଯେପରି-- ଶୁଣ୍ଡି ହାତରେ ଥିବା ଦୁଧ ମଧ୍ୟ ମଦପରି ପ୍ରତୀତ ହୁଏ)

(୧୫୩) ସଙ୍କଟ ସମୟରେ ଯେଉଁ ବୁଦ୍ଧି କାମ ଦିଏ, ତାହାକୁ ଶ୍ରେଷ୍ଠ ବୁଦ୍ଧି କହନ୍ତି ।

(୧୫୪) ପରିମିତ ଭୋଜନ ସ୍ୱାସ୍ଥ୍ୟପ୍ରଦ ଅଟେ ।

(୧୫୫) (କ) ଅଜୀର୍ଣ୍ଣହେଲେ ହିତକାରୀ ବା ଅହିତକାରୀ ଯେକୌଣସି ଖାଦ୍ୟ ହେଉ ତାହା ଖାଇବା ଉଚିତ ନୁହେଁ ।

(ଖ) ଅଜୀର୍ଣ୍ଣ ଅବସ୍ଥାରେ ପୁନର୍ଭୋଜନ ଅତ୍ୟନ୍ତ ଦୁଃଖଦାୟକ ।

(ଗ) ଜୀର୍ଣ୍ଣ ହେବାପରେ ଭୋଜନ କଲେ ବ୍ୟାଧି ଆକ୍ରମଣ କରେନାହିଁ ।

(୧୫୬) ବୃଦ୍ଧ ଶରୀରରେ ବୃଦ୍ଧି ପାଉଥିବା ରୋଗକୁ ଉପେକ୍ଷା କରିବା ଉଚିତ ନୁହେଁ ।

(୧୫୭) ବ୍ୟାଧି, ଶତ୍ରୁ ଅପେକ୍ଷା ଅଧିକ କ୍ଷତିକାରକ ।

(୧୫୮) ପ୍ରେମର ପରୀକ୍ଷା, ତାର ଫଳରୁ ହିଁ ସୂଚିତ ହୋଇଥାଏ ।

(୧୫୯) ଅନ୍ୟର ଗୁପ୍ତକଥା ଶୁଣିବା ଉଚିତ ନହେଁ ।

(୧୬୦) କର୍ତ୍ତାଙ୍କର ଆସନ ଅଧିକାର କରିବାର ଚେଷ୍ଟା କରିବା ଅଧର୍ମ ।

(୧୬୧) ମାତା ଦୁଷ୍ଟା ହେଲେ, ତା'କୁ ମଧ ପରିତ୍ୟାଗ କରିବାକୁ ହେବ ।

(୧୬୨) ବିଷାକ୍ତ ହେଲେ, ନିଜର ହାତକୁ ମଧ କାଟିଦେବାକୁ ହେବ ।

(୧୬୩) ଚୋରମାନଙ୍କୁ ବିଶ୍ୱାସ କରିବ ନାହିଁ।

(୧୬୪) ଅଳ୍ପ ବ୍ୟସନ ମଧ୍ୟ କ୍ଷତି କାରକ ଅଟେ।

(୧୬୫) ଆତ୍ମୀୟ ତଥା ସ୍ନେହୀ ଲୋକଙ୍କ ନିୟମକୁ ଲଂଘନ କରିବା ଅନୁଚିତ ।

(୧୬୬) ପରଲୋକ ହିତକାରୀ ହେଲେ, ତାକୁ ବନ୍ଧୁବୋଲି ମନେକରିବ।

(୧୬୭) ପ୍ରତିକାର ଅଯୋଗ୍ୟ ପଦାର୍ଥକୁ ଅନାଦର କରିବା ଅନୁଚିତ।

(୧୬୮) ପର ସମ୍ପତ୍ତି ପ୍ରତି ଲାଳାୟିତ ହେବା କର୍ତ୍ତବ୍ୟ ନୁହେଁ।

(୧୬୯) ପର ସମ୍ପତ୍ତିର ଲାଳସା ନିଜ ବିନାଶର ମୂଳ ଅଟେ।
(ଏପରିକି--ଧାନର ତସୁପରି ତୁଚ୍ଛ ପରଦ୍ରବ୍ୟ ମଧ୍ୟ ଅପହରଣ କରିବା ଅନୁଚିତ)

(୧୭୦) ପରଦ୍ରବ୍ୟ ହରଣ ନିଜ ଦ୍ରବ୍ୟର ବିନାଶର କାରଣ ଅଟେ।

(୧୭୧) ଚୋରୀ ଅପେକ୍ଷା ଅଧିକ ମୃତ୍ୟୁଫାଶ ନାହିଁ ।

(୧୭୨) ମଲା ମଣିଷର ଔଷଧ ଦରକାର ନାହିଁ।

(୧୭୩) ସମୟ ପଡ଼ିଲେ ଜାଉ (ଭାତ) ମଧ୍ୟ ପ୍ରାଣ ରକ୍ଷା କରିଥାଏ।

(୧୭୪) ଦାରିଦ୍ର୍ୟ ମନୁଷ୍ୟର ମରଣ ସଦୃଶ ଅଟେ।

(୧୭୫) ଖାଦ୍ୟଦ୍ରବ୍ୟପରି ଅନ୍ୟ କୌଣସି ଧନ ନାହିଁ।

(୧୭୬) ଭୋକ ଏବଂ ଅହଂକାର ପରି ଅନ୍ୟ କୌଣସି ଶତ୍ରୁ ନାହିଁ।

(୧୭୭) କର୍ମ ନ କରିବା ବ୍ୟକ୍ତିକୁ, ନିଶ୍ଚିତ ଭାବେ ଭୋକ ବାଧା ଦେବ।

(୧୭୮) କ୍ଷୁଧାତୁର ବ୍ୟକ୍ତିର ଅଭକ୍ଷ୍ୟ ବୋଲି କିଛି ନାହିଁ।

(୧୭୯) ଇନ୍ଦ୍ରିୟମାନେ ଶରୀରକୁ ଜରାଜୀର୍ଣ୍ଣ କରିପକାନ୍ତି।

(୧୮୦) (କ) ମୈଥୁନ ଫଳରେ ପୁରୁଷକୁ ବୃଦ୍ଧାବସ୍ଥା ଆକ୍ରମଣ କରେ।

(ଖ) ସ୍ତ୍ରୈଣ ବ୍ୟକ୍ତିର ସ୍ୱର୍ଗପ୍ରାପ୍ତି ହୁଏ ନାହିଁ ଏବଂ ସେ କୌଣସି ଧର୍ମକାର୍ଯ୍ୟ କରିପାରେ ନାହିଁ।

(ଗ) ସ୍ତ୍ରୀମାନଙ୍କ ପାଖରେ ପଡ଼ିରହିବା ଭଡୁଆକୁ ସ୍ତ୍ରୀମାନେ ମଧ୍ୟ ଅବମାନନା କରିନ୍ତି।

(୧୮୧) ମୈଥୁନ ନ ମିଳିଲେ ସ୍ତ୍ରୀକୁ ବୃଦ୍ଧାବସ୍ଥା ଆକ୍ରମଣ କରେ ।

(୧୮୨) ଅଗମ୍ୟା ସ୍ତ୍ରୀକୁ ସମ୍ଭୋଗ କଲେ ଆୟୁ, ଯଶ ଓ ପୁଣ୍ୟ କ୍ଷୀଣ ହୋଇଯାଏ । (ଅଗମ୍ୟା କେଉଁମାନେ- ମାତା, ଗୁରୁପତ୍ନୀ, ଭଗିନୀ, କନ୍ୟା, ବୋହୂ, ଭାଇବୋହୂ, ବୟୋଜ୍ୟେଷ୍ଠା)

(୧୮୩) ଦୟାଳୁ କର୍ତ୍ତାଙ୍କ ନିକଟରେ କର୍ମଚାରୀମାନେ କାମକରିବାକୁ ଇଚ୍ଛାକରନ୍ତି ।

(୧୮୪) ବିଦ୍ୱାନ୍ କର୍ତ୍ତାଙ୍କ ପାଖରେ ଆଶ୍ରୟନେବା ଶ୍ରେୟସ୍କର ।

(୧୮୫) ଲୋଭୀ କର୍ତ୍ତାର ସେବକ ବା କର୍ମଚାରୀ ଜୁଲୁଜୁଳିଆ ପୋକର ପରରୁ ମଧ ନିଆଁ କାଢ଼ିବାକୁ ଚେଷ୍ଟାକରେ ।

(୧୮୬) ସଭାରେ ଶତ୍ରୁକୁ ମଧ ନିନ୍ଦା କରିବ ନାହିଁ ।

(୧୮୭) ଶତ୍ରୁର ବିପତ୍ତି ଶୁଣିବାକୁ ସୁଖଲାଗେ ।

(୧୮୮) ନିର୍ଦ୍ଧନ ବ୍ୟକ୍ତିର ବୁଦ୍ଧି ରହେ ନାହିଁ ।

(୧୮୯) ନିର୍ଦ୍ଧନ ବ୍ୟକ୍ତି ଭାର୍ଯ୍ୟାଦ୍ୱାରା ମଧ ତିରସ୍କୃତ ହୁଏ ।

(୧୯୦) ନିର୍ଦ୍ଧନ ବ୍ୟକ୍ତିର ହିତବାକ୍ୟ ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ ।

(୧୯୧) ବିଦ୍ୟା ନିର୍ଦ୍ଧନ ବ୍ୟକ୍ତିର ଏକମାତ୍ର ଧନ ଅଟେ ।

(୧୯୨) ବିଦ୍ୟାଧନକୁ ଚୋର ମଧ ଚୋରାଇ ନେଇ ପାରେ ନାହିଁ ।

(୧୯୩) ବିଦ୍ୟାଦ୍ୱାରା ଅତିଶୀଘ୍ର ପ୍ରସିଦ୍ଧି ଲାଭ ହୁଏ ।

(୧୯୪) ପୁଷ୍ପହୀନ ଆମ୍ବଗଛ ନିକଟକୁ ଭ୍ରମରମାନେ ମଧ ଯାଆନ୍ତି ନାହିଁ ।

(୧୯୫) ଯେଉଁ ବ୍ୟକ୍ତି ପର ଉପକାର କରିବାକୁ ଅଗ୍ରସର ହୁଏ, ସେ ସତ୍‌ପୁରୁଷ ଅଟେ ।

(୧୯୬) ମ୍ଳେଚ୍ଛମାନଙ୍କର ଭାଷଣରୁ କିଛି ଶିକ୍ଷା କରିବା ଅନୁଚିତ ।

(୧୯୭) କିନ୍ତୁ ମ୍ଳେଚ୍ଛ (ଅଭଦ୍ର) ମାନଙ୍କ ଠାରେ ଉତ୍ତମ ବିଦ୍ୟା ଥିଲେ ତାହା ଗ୍ରହଣଯୋଗ୍ୟ ।

(୧୯୮) ଅନ୍ୟର ଗୁଣ କେବେହେଲେ କ୍ଷୁଣ୍ଣ କରିବାକୁ ଚେଷ୍ଟା କରିବା ଉଚିତ ନୁହେଁ ।

(୧୯୯) ଶତ୍ରୁଠାରୁ ମଧ ଉତ୍ତମ ଗୁଣ ଗ୍ରହଣ କରିବା ବିଧେୟ । (ଯେପରି-- ବିଷରୁ ମଧ୍ୟ ଅମୃତ ଗ୍ରହଣ କରିବା ଉଚିତ)

(୨୦୦) ମନୁଷ୍ୟର ଯଶ କୌଣସିକାଳେ ନଷ୍ଟ ହୁଏ ନାହିଁ।

(୨୦୧) ଶାସ୍ତ୍ରଜ୍ଞାନ କେବଳ ଇନ୍ଦ୍ରିୟମାନଙ୍କର ବେଗକୁ ଅଟକାଇବାକୁ ସମର୍ଥ ହୁଏ।

(୨୦୨) ଶାସ୍ତ୍ରଜ୍ଞାନରୂପକ ଅଙ୍କୁଶ, ଉଚ୍ଛୃଙ୍ଖଳ କାର୍ଯ୍ୟ କଲାବେଳେ ମନୁଷ୍ୟକୁ ଦୁଷ୍କର୍ମରୁ ନିବାରଣ କରେ।

(୨୦୩) ମନୁଷ୍ୟକୁ ସ୍ଥାନ ଅନୁସାରେ ପୂଜା ମିଳେ।

(୨୦୪) ମନୁଷ୍ୟ ଯେଉଁପରି ଅବସ୍ଥାରେ ଥାଏ, ତାକୁ ସେହିପରି ମାନମର୍ଯ୍ୟାଦା ମିଳିଥାଏ।

(୨୦୫) ମନୁଷ୍ୟ ସର୍ବଦା ଭଦ୍ର ଆଚରଣ କରିବା ଉଚିତ୍।

(୨୦୬) ମର୍ଯ୍ୟାଦାର ସୀମାକୁ କଦାପି ଅତିକ୍ରମ କରିବା ଉଚିତ ନୁହେଁ।

(୨୦୭) ସମସ୍ତ ଭୟ ମଧ୍ୟରେ ଅପକୀର୍ତ୍ତି ବା ଅପଯଶର ଭୟ ଶ୍ରେଷ୍ଠ ଅଟେ।

(୨୦୮) ପୁଷ୍ପାର୍ଥୀ ମନୁଷ୍ୟ ଶୁଖିଲା ଗଛରେ ପାଣିଦିଏ ନାହିଁ।

(୨୦୯) ବାଲିକୁ ପେଡିଲେ ଯେପରି ସେଥିରୁ ତେଲ ବାହାରେ ନାହିଁ, ସେହିପରି ଅଦ୍ରବ୍ୟରେ ପରିଶ୍ରମ କଲେ କୌଣସି ଫଳ ଲାଭ ହୁଏ ନାହିଁ।

(୨୧୦) (କ) କୌଣସି କାର୍ଯ୍ୟର ଲକ୍ଷଣ ତାର ସିଦ୍ଧି ଓ ଅସିଦ୍ଧିକୁ ସୂଚିତ କରେ।

(ଖ) କାର୍ଯ୍ୟର ଲକ୍ଷଣ ଗ୍ରହ ନକ୍ଷତ୍ରଠାରୁ ମଧ ଅଧିକ କାର୍ଯ୍ୟର ସିଦ୍ଧିସୂଚକ ବୋଲି ଜାଣିବାକୁ ହେବ।

(ଗ) କାର୍ଯ୍ୟକୁ ଅତିଶୀଘ୍ର ପୂର୍ଣ୍ଣ କରିବାକୁ ଇଚ୍ଛୁକ ବ୍ୟକ୍ତି ଗ୍ରହ-ନକ୍ଷତ୍ର-କୋଷ୍ଠି ଇତ୍ୟାଦି ଦେଖିବା ଅନାବଶ୍ୟକ।

(ଘ) କାର୍ଯ୍ୟ ଅନୁରୂପ ଯତ୍ନ କରିବା ଆବଶ୍ୟକ।

(୨୧୧) ମହାନ ବ୍ୟକ୍ତିମାନଙ୍କୁ ଲକ୍ଷ୍ୟକରି ହାସ୍ୟ କରିବ ନାହିଁ।

(୨୧୨) କୌଣସି ବଡ଼ଲୋକ ସହିତ ପରିଚିତ ହୋଇଗଲେ ନିଜର ଦୋଷ ଘୋଡ଼ାଇ ହୋଇଯାଏ ନାହିଁ।

(୨୧୩) ଯେ ନିଜେ ଦୋଷପୂର୍ଣ୍ଣ, ସେ ପରଠାରେ ଅଧିକ ଦୋଷର ଆଶଙ୍କା କରିଥାଏ।

(୨୧୪) ସ୍ୱଭାବକୁ ଅତିକ୍ରମ କରିବା ସାଧ୍ୟାତୀତ।

(୨୧୫) ପୁରୁଷ ରତ୍ନର ମୂଲ୍ୟ କଳନା କରିହେବ ନାହିଁ ।

(୨୧୬) ସ୍ତ୍ରୀ ରତ୍ନ ସମାନ ରତ୍ନ ନାହିଁ ।

(୨୧୭) ରତ୍ନ ଦୁର୍ଲଭ ଅଟେ ।

(୨୧୮) ଯେପରି ପ୍ରଶ୍ନ, ସେପରି ଉତ୍ତର ଦେବା ଆବଶ୍ୟକ ।

(୨୧୯) କୁଳ ଅନୁରୂପ ବୃତ୍ତି କରିବା ଆବଶ୍ୟକ ।

(୨୨୦) ପାତ୍ର ଅନୁରୂପ ଦାନ କରିବା ଆବଶ୍ୟକ ।

(୨୨୧) ବୟସ ଅନୁରୂପ ବେଶ ସଜାଇବା ଆବଶ୍ୟକ ।

(୨୨୨) ସମ୍ପତ୍ତି ଅନୁସାରେ ଅଳଙ୍କାର, ପୋଷାକ ପିନ୍ଧିବା ଆବଶ୍ୟକ ।

(୨୨୩) ପୁତ୍ର ପିତାଙ୍କ ଆଜ୍ଞାନୁବର୍ତ୍ତୀ ହେବା ଆବଶ୍ୟକ ।

(୨୨୪) ଶିଷ୍ୟ ଗୁରୁ ଆଜ୍ଞାଧୀନ ହେବା ଆବଶ୍ୟକ ।

(୨୨୫) ଭୃତ୍ୟ କର୍ତ୍ତାଙ୍କ ସ୍ୱଭାବର ଅନୁକୂଳ ହେବା ଆବଶ୍ୟକ ।

(୨୨୬) ସେବକ ସର୍ବଦା କର୍ତ୍ତାଙ୍କ ଆଜ୍ଞା ଅନୁସାରେ କାର୍ଯ୍ୟ କରିବା ଉଚିତ ।

(୨୨୭) କର୍ତ୍ତାର ବଶବର୍ତ୍ତିନୀ ପତ୍ନୀଙ୍କୁ ଉତ୍ତମ ପତ୍ନୀ କୁହାଯାଏ ।

(୨୨୮) ଅତ୍ୟଧିକ ଆଦର ଶଙ୍କାର କାରଣ ଅଟେ ।

(୨୨୯) ସ୍ନେହ କରିବା ବ୍ୟକ୍ତିର କୋପ/ରାଗ ବହୁତ କମ ସମୟ ରୁହେ । (ମାତା ଶିଶୁକୁ ମାରିଲେ ମଧ ସେ ଯେପରି କାନ୍ଦି କାନ୍ଦି ତା ପଛରେ ଗୋଡାଏ, ସେବକ ସେପରି କର୍ତ୍ତାଙ୍କ ତାଡନା ସତ୍ତ୍ୱେ ତାଙ୍କରି ଅନୁବର୍ତ୍ତୀ ହେବା ଉଚିତ)

(୨୩୦) ଛଳନା, ସେବା ସହିତ କରାଯାଇଥାଏ ।

(୨୩୧) 'କୌଣସି ବିଶେଷ କାମନାକୁ ଲକ୍ଷ୍ୟକରି କରିବା ସେବାକୁ 'ଉପଚାର' କହନ୍ତି ।

(୨୩୨) ଚିରପରିଚିତ ବ୍ୟକ୍ତିର ଅତିଶୟ ଉପଚାର ମଧ ଶଙ୍କାର କାରଣ ହୁଏ ।

(୨୩୩) ଅତିଶୟ ସ୍ତ୍ରୀ ସଙ୍ଗ ଜୀବନୀ ଶକ୍ତି କ୍ଷୟର କାରଣ ହୋଇଥାଏ ।

(୨୩୪) ବୁଦ୍ଧିମାନ ବ୍ୟକ୍ତି ମୂର୍ଖ, ମିତ୍ର, ଗୁରୁ, ଉପରଅଧିକାରୀ ବା କର୍ତ୍ତାଙ୍କ ସହିତ ବିବାଦ କରିବେ ନାହିଁ ।

(୨୩୫) ଅକ୍ରୋଧୀ ବ୍ୟକ୍ତି ସମସ୍ତଙ୍କୁ ଜୟ କରେ ।

(୨୩୬) ଗୋଟିଏ ଗାଈ ଶହେଟା କୁକୁରଠାରୁ ଶ୍ରେୟସ୍କର ଅଟେ ।

(୨୩୭) କାଲି 'ମୟୂର' ମିଳିବା ଅପେକ୍ଷା ଆଜି 'କପୋତ' ମିଳିବା ଶ୍ରେୟସ୍କର ଅଟେ । (ଅର୍ଥାତ୍ ନଗଦା ନଗଦି ଅଳ୍ପ ମିଳିଗଲେ ମଧ ପରେ ଅଧିକ ମଳିବାଠାରୁ ଶ୍ରେୟସ୍କର ବୁଝିବାକୁ ହେବ ।)

(୨୩୮) ଯଦି ଅପକାରୀ ଉପରେ କ୍ରୋଧ କରିବାକୁ ଇଚ୍ଛାକର, ତାହାହେଲେ ପ୍ରଥମେ ତାକୁ (ଅପକାରୀ) କୋପ କରିବାକୁ ଛାଡ଼ିଦିଅ, ପରେ ନିଜେ କୋପ କରିବ । (ଅର୍ଥାତ୍ ନିଜେ ପ୍ରଥମେ ଅପକାର କରନାହିଁ, ଦୁଷ୍ଟ ଅପକାର କରିବା ପରେ ତାକୁ ବଦଳାଇଦେବା କର୍ତ୍ତବ୍ୟ ।)

(୨୩୯) ଐଶ୍ୱର୍ଯ୍ୟ ମନୁଷ୍ୟକୁ ପିଶାଚ ନ କରି ଛାଡ଼େ ନାହିଁ ।

(୨୪୦) ଧନବାନ ବ୍ୟକ୍ତି ଶୁଭକାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି ନାହିଁ ।

(୨୪୧) ଯାନରେ ଯାତାୟତ କରିବା ବ୍ୟକ୍ତି ବାଟ ଚାଲିବାର ଶ୍ରମ କରେନାହିଁ । (ଅର୍ଥାତ୍ ଧନବାନ ଧନରୂପକ ଯାନରେ ଆରୋହଣ କରି ଶୁଭକର୍ମ ରୂପେ ଚାଲିବା ବାଟରେ ଚାଲେ ନାହିଁ ।)

(୨୪୨) ଦୁଷ୍ଟା ଭାର୍ଯ୍ୟା ମନସ୍ୱୀ ବ୍ୟକ୍ତିର ଶରୀରକୁ ତିଳ ତିଳ କରି କାଟିପକାଏ

(୨୪୩) ପ୍ରମାଦ ରହିତ ହୋଇ ସ୍ତ୍ରୀମାନଙ୍କୁ ରକ୍ଷା କରିବ ।

(୨୪୪) ବିନା ଲୁହା ଶିକୁଳୀରେ ସ୍ତ୍ରୀ ବନ୍ଧନସ୍ୱରୂପ କାର୍ଯ୍ୟ କରେ ।

(୨୪୫) ଗୁରୁମାନଙ୍କ ମଧରେ 'ମାତା' ଶ୍ରେଷ୍ଠ ଗୁରୁ ଅଟନ୍ତି ।

(୨୪୬) ଯେ କୌଣସି ଅବସ୍ଥାରେ ମାତା (ମା)ଙ୍କୁ ଭରଣ ପୋଷଣ କରିବା କର୍ତ୍ତବ୍ୟ ।

(୨୪୭) (କ) 'ଲଜ୍ଜା' ଓ 'ସୌଭାଗ୍ୟ' ସ୍ତ୍ରୀ ମାନଙ୍କର ଭୂଷଣ ।

(ଖ) 'ଗୁରୁ, ଦେବତା ଓ ବ୍ରାହ୍ମଣ' ମାନଙ୍କଠାରେ ଭକ୍ତି ହିଁ ମନୁଷ୍ୟର ଭୂଷଣ ।

(ଗ) 'ବିନୟ' (ନମ୍ରତା) ସମସ୍ତଙ୍କର ଭୂଷଣ ।

(ଘ) ଅକୁଳୀନ ବ୍ୟକ୍ତି ନମ୍ର ହେଲେ, ସେ ଉଦ୍ଦଣ୍ଡ କୁଳୀନ ବ୍ୟକ୍ତିଠାରୁ ଲକ୍ଷ ଗୁଣରେ ଅଧିକ ।

(୨୪୮) 'ବେଦ' ବିପ୍ରମାନଙ୍କର ଭୂଷଣ ।

(୨୪୯) 'ଧର୍ମ' ସମସ୍ତଙ୍କର ଭୂଷଣ ।

(୨୫୦) 'ବିଜ୍ଞତା' ସମସ୍ତ ଭୂଷଣର ଭୂଷଣ ।

(୨୫୧) ଉପଦ୍ରବବିହୀନ ଦେଶରେ ବସବାସ କରିବା ଉଚିତ ।

(୨୫୨) ଯେଉଁଦେଶରେ ବହୁତ ସାଧୁ ତଥା ଭଦ୍ରବ୍ୟକ୍ତି ରହିଥାନ୍ତି, ତାହା ଉତ୍ତମ ଦେଶ ଅଟେ ।

(୨୫୩) ପୁତ୍ର ଗୁଣବାନ୍ ହେଲେ କୁଟୁମ୍ବ ଲୋକର ସ୍ୱର୍ଗପ୍ରାପ୍ତି ହୁଏ ।

(୨୫୪) ଯେତେ କ୍ଲେଶ ହେଲେ ମଧ୍ୟ ପୁତ୍ରକୁ ଶିକ୍ଷାର ଶେଷ ସୀମାରେ ପହଞ୍ଚାଇ ଦେବାକୁ ହେବ ।

(୨୫୫) ସବୁ ଲାଭଠାରୁ ପୁତ୍ରଲାଭ ଶ୍ରେଷ୍ଠ ଅଟେ ।

(୨୫୬) ମାତା ପିତାଙ୍କୁ ଦୁର୍ଗତିରୁ ତ୍ରାଣ କରିବା ପୁତ୍ର ସତ୍‌ପୁତ୍ର ଅଟେ ।

(୨୫୭) ସୁପୁତ୍ର କୁଳକୁ ଖ୍ୟାତିସମ୍ପନ୍ନ କରେ ।

(୨୫୮) ଯେଉଁ ସ୍ତ୍ରୀ ପୁତ୍ର ପ୍ରସବ କରେ ସେ ଭାର୍ଯ୍ୟା ଅଟେ ।

(୨୫୯) ପୁତ୍ର ଲାଭ ସକାଶେ ସ୍ତ୍ରୀ ସମ୍ଭୋଗ ପ୍ରୟୋଜନ ।

(୨୬୦) ତୀର୍ଥ କରିଗଲାବେଳେ ସ୍ତ୍ରୀ ଓ ପୁତ୍ରକୁ ସାଥିରେ ଧରି ଯିବାକୁ ହେବ ।

(୨୬୧) (କ) ଜଣେ ପୁରୁଷର ଅନେକଗୁଡିଏ ସ୍ତ୍ରୀ ଏକ ସମୟରେ ଋତୁମତୀ ହେଲେ (ଆଦର ବୃଦ୍ଧି କରିବା ପାଇଁ) ପ୍ରଥମେ ପୁତ୍ରବତୀଙ୍କ ନିକଟକୁ ହିଁ ଗମନ କରିବା ଉଚିତ ।

(ଖ) ପର ସ୍ତ୍ରୀ ସହ ଗମନ କରିବ ନାହିଁ ।

(ଗ) ସନ୍ଧ୍ୟାବେଳେ ସ୍ତ୍ରୀ ସମ୍ଭୋଗ କରିବା ଉଚିତ ନୁହେଁ ।

(ଘ) ରଜସ୍ୱଳା ସ୍ତ୍ରୀ ପାଖକୁ ଗମନ କଲେ ବ୍ରହ୍ମଚର୍ଯ୍ୟ ନଷ୍ଟ ହୋଇଥାଏ ।

(ଙ) ପର ସ୍ତ୍ରୀ ଗର୍ଭରେ ବୀର୍ଯ୍ୟକ୍ଷେପ କରିବ ନାହିଁ ।
(ଅର୍ଥାତ୍, ପର ସ୍ତ୍ରୀ ସହିତ ସହବାସ ବା ରମଣ କରିବ ନାହିଁ)

(ଚ) ନିଜର ଦାସୀକୁ ସମ୍ଭୋଗ କରିବା (ଅର୍ଥାତ୍ ତା ସହିତ ସହବାସ କରିବା) ଅର୍ଥ ନିଜକୁ ତାର ଦାସ ବନାଇବା ।

(ଛ) ସ୍ତ୍ରୀ ବନ୍ଧନରୁ ମୁକ୍ତି ପାଇବା ଦୁରୂହ ଅଟେ ।

(ଜ) ସ୍ତ୍ରୀମାନେ ପୁରୁଷର ଗୁଣ ପରୀକ୍ଷା କରିବା ଜାଣନ୍ତି ନାହିଁ ।

(ଝ) ସ୍ତ୍ରୀମାନଙ୍କର ମନ ସର୍ବଦା ଚଞ୍ଚଳ ହୋଇ ଉଠୁଥାଏ ।

(ଞ) ଅଶୁଭ କାର୍ଯ୍ୟ କରିବାକୁ ଘୃଣା କରୁଥିବା ବ୍ୟକ୍ତି, ସ୍ତ୍ରୀ ଠାରେ ଆସକ୍ତ ହେବା ଉଚିତ ନୁହେଁ ।

(ଟ) ସ୍ତ୍ରୀ ମାନଙ୍କର ପତି ବ୍ୟତୀତ ଅନ୍ୟ ଦେବତା ନାହିଁ ।

(ଠ) ପତିର ଇଚ୍ଛାନୁଯାୟୀ ଚଳିବା ଫଳରେ ସ୍ତ୍ରୀ ଇହଲୋକ ଓ ପରଲୋକରେ ସୁଖ ଲାଭ ହୁଏ ।

(ଡ଼) ରାଜାଙ୍କ ଦାସୀ ସହିତ ସମ୍ବନ୍ଧ ରଖିବେ ନାହିଁ ।

(ଢ) ସ୍ତ୍ରୀକୁ ତିଳେ ମାତ୍ର ବିଶ୍ୱାସ କରିବା ଅନୁଚିତ୍ ।

(୨୬୨) ଇନ୍ଦ୍ରିୟ ନିରୋଧ ହିଁ ଶ୍ରେଷ୍ଠ ତପସ୍ୟା ।

(୨୬୩) ଖାଲି ହାତରେ ରାଜା, ଗୁରୁ ଓ ଦେବତାମାନଙ୍କ ସମ୍ମୁଖକୁ ଯିବା ଉଚିତ୍ ନୁହେଁ ।

(୨୬୪) ରାଜାଙ୍କୁ ସର୍ବଦା ଭୟ ରଖିବାକୁ ହେବ ।

(୨୬୫) ରାଜାଙ୍କ ଠାରୁ ବଳି ଅଧିକ ଦେବତା କେହି ନାହିଁ ।

(୨୬୬) ରାଜାରୂପୀ ଅଗ୍ନି ଦୂରସ୍ଥାନକୁ ମଧ୍ୟ ଜାଳିଦିଏ ।

(୨୬୭) ରାଜକୁଳର ବ୍ୟକ୍ତିମାନଙ୍କ ପାଖକୁ ସର୍ବଦା ଯାତାୟତ କରିବ ।

(୨୬୮) ରାଜ ପୁରୁଷଙ୍କ ସହିତ ସମ୍ବନ୍ଧ ରଖିବ ।

(୨୬୯) ରାଜାଙ୍କ ଦ୍ରବ୍ୟକୁ ଆଡ଼ଆଖିରେ ମଧ୍ୟ ଚାହିଁବ ନାହିଁ ।

(୨୭୦) କୁଟୁମ୍ବୀ ବ୍ୟକ୍ତିମାନଙ୍କୁ ଭୟରଖି ଚଳିବା ଉଚିତ ।

(୨୭୧) ଦେଶର ହିତ ପାଇଁ ଗ୍ରାମ ତ୍ୟାଗ କରିବା ଉଚିତ ।

(୨୭୨) ଗ୍ରାମର ହିତ ପାଇଁ କୁଟୁମ୍ବ ତ୍ୟାଗ କରିବା ଉଚିତ ।

(୨୭୩) ଅପତ୍ୟହୀନ ବ୍ୟକ୍ତିର ସ୍ୱର୍ଗ ପ୍ରାପ୍ତି ହୁଏ ନାହିଁ ।

(୨୭୪) ଯାହାର ବିନାଶ ନିକଟବର୍ତ୍ତୀ ହୋଇଥାଏ, ସେ ହିତକଥା ଶୁଣେ (ଅର୍ଥାତ ଗ୍ରହଣ କରେ) ନାହିଁ ।

(୨୭୫) ସାଧୁ ଓ ଗୁଣବାନ ବ୍ୟକ୍ତି, ଟିକେ ମାତ୍ର ଉପକାରକୁ ପର୍ବତ ସମାନ ବୋଲି ମନେ କରିନ୍ତି ।

(୨୭୬) (କ) ଅନାର୍ଯ୍ୟ (ଅଶିକ୍ଷିତ) ବ୍ୟକ୍ତିର ଉପକାର କରିବା କର୍ତ୍ତବ୍ୟ ନୁହେଁ । (କାରଣ ସେ ଉପକାରୀର ପ୍ରତ୍ୟୁପକାର ତ ଦୂରର କଥା ଓଲଟି ଶତ୍ରୁତା କରିଥାଏ)

(ଖ) ଆର୍ଯ୍ୟ (ଶିକ୍ଷିତ) ବ୍ୟକ୍ତିଙ୍କ ଅଳ୍ପମାତ୍ର ଉପକାର କରିଥିଲେ ସେ ପ୍ରତ୍ୟୁପକାର ନ କରିବା ପର୍ଯ୍ୟନ୍ତ ଥୟ ହୋଇ ରହିପାରନ୍ତି ନାହିଁ ।

(୨୭୭) ଦେହଧାରୀମାନଙ୍କୁ କେତେବେଳେ ଦୁଃଖ ଆଉ କେତେବେଳେ ସୁଖ ଲାଗି ରହିଛି ।

(୨୭୮) ବାଛୁରୀ ମା' ପଛରେ ଗୋଡ଼ାଇଲା ପରି ସୁଖ ଓ ଦୁଃଖ କର୍ତ୍ତା ପଛରେ ଗୋଡ଼ାଇଛନ୍ତି । (ଅର୍ଥାତ୍ କର୍ତ୍ତା ପୁଣ୍ୟବନ୍ତ ହେଲେ ସୁଖ ଓ କର୍ତ୍ତା ପାପୀ ହେଲେ ଦୁଃଖ ଗୋଡ଼ାଇଥାଏ)

(୨୭୯) ସଦାଚାର ଦ୍ୱାରା ଆୟୁ ଓ କୀର୍ତ୍ତି ବୃଦ୍ଧି ପାଏ ।

(୨୮୦) ପ୍ରିୟ ହେଲେ ମଧ ଅହିତକର କଥା କହିବା ଉଚିତ ନୁହେଁ ।

(୨୮୧) ବହୁତ ଲୋକଙ୍କ ବିରୁଦ୍ଧରେ ଯାଉଥିବା କୌଣସି ଗୋଟିଏ ଲୋକ ସହିତ ସାଥୀ ହେବା ଉଚିତ ନୁହେଁ ।

(୨୮୨) ଦୁର୍ଜନ ବ୍ୟକ୍ତି ସହିତ ନିଜର ଭାଗ୍ୟକୁ ସଂଯୁକ୍ତ କରିବା ଉଚିତ ନୁହେଁ ।

(୨୮୩) କୌଣସି କାର୍ଯ୍ୟରେ କୃତକାର୍ଯ୍ୟ ହୋଇଥିଲେ ମଧ ନୀଚ ସହିତ ସମ୍ବନ୍ଧ ରଖିବା ଉଚିତ ନୁହେଁ ।

(୨୮୪) ଅନ୍ନଦାନ, ଭ୍ରୁଣହତ୍ୟା ଦୋଷକୁ ମଧ ଧୋଇଦେଇ ଥାଏ ।

(୨୮୫) ଦାନ ଛଡ଼ା ବଶବର୍ତ୍ତୀ କରିବାର ଅନ୍ୟ କୌଣସି ଅଧିକ ଉପାୟ ନାହିଁ ।

(୨୮୬) ଧନହୀନ (ଦରିଦ୍ର) ଲୋକ ପକ୍ଷେ ସଂସାର ଯାତ୍ରା ବଡ଼ କଷ୍ଟକର ହୁଏ ।

(୨୮୭) (କ) ଯେପରି ବୁଦ୍ଧି ହୁଏ ସେହିପରି ବିଭବ ମିଳିଥାଏ ।

(ଖ) ସାତ୍ତ୍ୱିକ, ରାଜସିକ ଓ ତାମସିକ-ଯେଉଁପରି ଶରୀର ହୁଏ ସେପରି ବୁଦ୍ଧି ହୁଏ ।

(୨୮୮) ଅଗ୍ନି ଉପରକୁ ଅଗ୍ନି ପିଙ୍ଗିବ ନାହିଁ । (ଅର୍ଥାତ୍ ତେଜୀୟାନ ବ୍ୟକ୍ତି ଚିଡ଼ିବା ଭଳି ତେଜ କଥା କହିବ ନାହିଁ) ।

(୨୮୯) (କ) ତପସ୍ୱୀମାନେ ପୂଜନୀୟ ଅଟନ୍ତି ।

(ଖ) କସ୍ମିନ୍‌କାଳେ ଦେବତାମାନଙ୍କୁ ଉପେକ୍ଷା ଓ ଅବମାନନା କରିବ ନାହିଁ ।

(୨୯୦) (କ) ଜଳରେ ପରିଶ୍ରା କରିବା ଉଚିତ୍ ନୁହେଁ ।

(ଖ) ଲଙ୍ଗଳା ହୋଇ ଜଳରେ ପ୍ରବେଶ କରିବା ଉଚିତ ନୁହେଁ ।

(୨୯୧) (କ) ଚକ୍ଷୁ ସମାନ ଅନ୍ୟ କୌଣସି ଜ୍ୟୋତି ନାହଁ ।

(ଖ) ଚକ୍ଷୁ ହିଁ ଶରୀରର ନେତା ଅଟେ ।

(ଗ) ଚକ୍ଷୁହୀନର ଶରୀରରେ କିବା ପ୍ରୟୋଜନ ।

(୨୯୨) (କ) ସତ୍ୟ ଆଚରଣରୁ ବଳି ତପସ୍ୟା ନାହିଁ ।

(ଖ) ସତ୍ୟ ହିଁ ଏକମାତ୍ର ସ୍ୱର୍ଗର ସାଧନ ଅଟେ ।

(ଗ) ସତ୍ୟଭାଷୀ ସ୍ୱର୍ଗକୁ ଯାଇଥାଏ ।

(ଘ) ସତ୍ୟଦ୍ୱାରା ହିଁ ପ୍ରାଣୀସମୂହ ଧାରଣ ହୋଇଛନ୍ତି ।

(ଙ) ସତ୍ୟଯୋଗୁଁ ହିଁ ଦେବତାମାନେ ବର୍ଷା କରାନ୍ତି ।

(୨୯୩) (କ) ମିଥ୍ୟା ଆଚରଣରୁ ବଳି ପାପ ନାହିଁ ।

(ଖ) ଖଳ ପ୍ରକୃତି ଲୋକର କେହି ମିତ୍ର ନାହିଁ ।

(ଗ) ଖଳତ୍ୱକୁ କଦାପି ସ୍ୱୀକାର କରିବା ଉଚିତ ନୁହେଁ ।

(୨୯୪) ଗୁରୁଜନମାନେ ସମାଲୋଚନାର ପାତ୍ର ନୁହଁନ୍ତି ।

(୨୯୫) ଯେ କୌଣସି ପ୍ରକାରେ ହେଉ ଧର୍ମସେବା କରିବା ଉଚିତ ।

(୨୯୬) ଋଣ, ଶତ୍ରୁ ଓ ବ୍ୟାଧିକୁ ନିଃଶେଷ କରିବା କର୍ତ୍ତବ୍ୟ ।

(୨୯୭) କଲ୍ୟାଣ ପଥରେ ଗୋଡାଇବା ମନୁଷ୍ୟ ପକ୍ଷେ ରସାୟନ ସ୍ୱରୂପ ହୁଏ ।

(୨୯୮) କୌଣସି ପ୍ରକାର ସହାୟତା କରିବା ସକାଶେ ନିବେଦନ କରିବା ବ୍ୟକ୍ତିକୁ ଘୃଣା କରିବେ ନାହିଁ ।

(୨୯୯) କୃତଘ୍ନ ଲୋକକୁ ନରକରୁ ନିବର୍ତ୍ତିବାର ଉପାୟ ନାହିଁ ।

(୩୦୦) (କ) ଉନ୍ନତି ଓ ଅବନତି ଜିହ୍ୱାର ଅଧୀନ ଅଟେ ।

(ଖ) ଜିହ୍ୱା ବିଷ ଓ ଅମୃତର ଖଣି ଅଟେ ।

(୩୦୧) ପ୍ରିୟବାଦୀ ବ୍ୟକ୍ତିର କେହି ଶତ୍ରୁ ହୁଅନ୍ତି ନାହିଁ ।

(୩୦୨) ସ୍ତୁତିରେ ମନୁଷ୍ୟ କ'ଣ, ଦେବତା ମଧ୍ୟ ସନ୍ତୁଷ୍ଟ ହୁଅନ୍ତି ।

(୩୦୩) ମିଥ୍ୟା ହେଲେ ମଧ୍ୟ କଡ଼ା କଥା ଚିରକାଳ ଜ୍ୱାଳା ଜାତ କରୁଥାଏ ।

(୩୦୪) କାନକୁ ରୁଚିକର ବଚନ, କୋଇଲିର ସ୍ୱରଠାରୁ ଅଧିକ ମିଠା ଲାଗେ ।

(୩୦୫) ଉଚ୍ଚ କର୍ତ୍ତୃପକ୍ଷଙ୍କ ମନରେ ଦ୍ୱେଷଭାବ ଜାତ କରୁଥିବା ବାକ୍ୟ/ବଚନ କହିବା ଅନୁଚିତ ।

(୩୦୬) ନିଜର ଧର୍ମ ଅକ୍ଷୁଣ୍ଣଭାବେ ପାଳନ କରିବା ହେତୁ ମନୁଷ୍ୟ ସତ୍‌ପୁରୁଷ ହୁଏ ।

(୩୦୭) ଶତ୍ରୁର ମଧ୍ୟ ଜୀବିକା ନଷ୍ଟ କରିବା ଅନୁଚିତ ।

(୩୦୮) ମାଗିବା ଲୋକର ଗୌରବ ରହେ ନାହିଁ ।

(୩୦୯) ଅତି ଧନୀ ହେବା ଗୁଣର କାରଣ ନୁହେଁ ।

(୩୧୦) ଯେପରି ଶିକ୍ଷା ସେପରି ବୁଦ୍ଧି ହୁଏ ।

(୩୧୧) ଯେପରି କୁଳ ସେପରି ଆଚରଣ ହୁଏ ।

(୩୧୨) ପାଇଥିବା ସୁଖକୁ କଦାପି ଛାଡ଼ିବ ନାହିଁ ।

(୩୧୩) ଯେପରି ବୀଜ ସେହିପରି ଫଳ ହୁଏ ।

(୩୧୪) ଯେପରି ପିତା ସେପରି ସନ୍ତାନ ହୁଅନ୍ତି ।

(୩୧୫) ଯେଉଁଠାରେ ବିନା ଯନ୍ତ୍ରରେ ଜଳ ବାହାରେ ତାହା ହିଁ 'ଉତ୍ତମ କ୍ଷେତ୍ର' ଅଟେ । (ଅର୍ଥାତ୍- ଯେଉଁ ଦେଶରେ ଅଳ୍ପ ପରିଶ୍ରମରେ ପ୍ରଚୁର ଲାଭହୁଏ ତାହା ଉତ୍ତମ ଦେଶ ଅଟେ) ।

(୩୧୬) ଗବଗଛର ସାହାଯ୍ୟ ନେଇ ହାତୀ ସହିତ ଯୁଦ୍ଧ କରିବା ଅନୁଚିତ । (ଅର୍ଥାତ ଦୁର୍ବଳର ସାହାଯ୍ୟରେ ବଳବାନ ସହିତ ଟକ୍କର/ମୁକାବିଲା କରିବା ଅନୁଚିତ)

(୩୧୭) ଯେପରି ବହୁତ ଲମ୍ୱାଚୌଡା ଶିମୁଳି ବୃକ୍ଷ, ହାତୀ ବନ୍ଧା ସ୍ତମ୍ଭ ହୋଇ ପାରେନା, ସେହିପରି ଗୁଣହୀନ ଧନବାନ୍ ବ୍ୟକ୍ତି ବିଦ୍ୱାନ ବ୍ୟକ୍ତିକୁ ବଶବର୍ତ୍ତୀ କରିପାରେ ନାହିଁ ।

(୩୧୮) ବହୁତ ବଡ଼ ହେଲେ ମଧ୍ୟ କନିଅର ଗଛରେ ମୂଷଳ ତିଆରି କରାଯାଇ ପାରେନାହିଁ ।

(୩୧୯) ଯେତେ ତେଜୀୟାନ ହେଲେ ମଧ ଜୁଳୁଜୁଳିଆ ପୋକ ନିଆଁପରି ହୋଇ ପାରେନାହିଁ ।

(୩୨୦) ବହୁ ପୁରୁଣା ନିମଗଛ ମଧ ଛେଦନଯୋଗ୍ୟ ନୁହେଁ ।

(୩୨୧) ସଂସ୍କାର କରାଗଲେ ମଧ ନିମଗଛ ଆମ୍ବଗଛ ହୁଏ ନାହିଁ ।

(୩୨୨) କର୍ମ ଅନୁସାରେ ମନୁଷ୍ୟ ନିଜେ ଦୁଃଖ ପାଏ ।

(୩୨୩) ପରଗୃହରେ କାରଣ ନଥାଇ ପ୍ରବେଶ କରିବା ଉଚିତ ନୁହେଁ ।

(୩୨୪) ପର ଆୟତ୍ତରେ ଥିବା ଜିନିଷକୁ ପାଇବା ସକାଶେ ଉତ୍କଣ୍ଠା ପ୍ରକାଶ କରିବା ଉଚିତ ନୁହେଁ ।

(୩୨୫) (କ) ସମୁଦ୍ର କେବେ ତୃଷା ନିବାରଣ କରେ ନାହିଁ ।

(ଖ) ବାଲୁକା ମଧ ନିଜର ଗୁଣକୁ ଆଶ୍ରୟ କରେ । (ଅର୍ଥାତ କ୍ଷୁଦ୍ର ମନୁଷ୍ୟ ମଧ ନିଜର ସ୍ୱଭାବ ଛାଡ଼େ ନାହିଁ)

(୩୨୬) ସାରା ସଂସାର ଧନ ପଛରେ ଗୋଡ଼ାଉଅଛି ।

(୩୨୭) ସାରା ସଂସାରର ଲୋକେ ଆଶା-ରଜ୍ଜୁରେ ବନ୍ଧା ହୋଇଛନ୍ତି ।

(୩୨୮) (କ) ଆଶାବଦ୍ଧ ବ୍ୟକ୍ତିକୁ ଲକ୍ଷ୍ମୀ ପ୍ରାପ୍ତ ହୁଏ ନାହିଁ ।

(ଖ) ଆଶାରେ ଲିପ୍ତ ହେବା ଲୋକର ଧୈର୍ଯ୍ୟ ଲୋପ ହୁଏ ।

(ଗ) ଆଶା ଦ୍ୱାରା ଲଜ୍ଜା ନଷ୍ଟ ହୋଇଥାଏ ।
(ଅର୍ଥାତ୍- ଆଶାୟୀ ବ୍ୟକ୍ତି ଲଜ୍ଜା ପରିତ୍ୟାଗ କରିଥାଏ ।

(୩୨୯) ଐଶ୍ୱର୍ଯ୍ୟରେ ଅନ୍ଧ ହୋଇଥିବା ବ୍ୟକ୍ତି ନିକଟରେ ଘଟୁଥିବା ଘଟଣାକୁ ଦେଖେନାହିଁ କିମ୍ବା ହିତକାରୀର କଥା ଶୁଣେ ନାହିଁ ।

(୩୩୦) ଅସଜ୍ଜନ ବ୍ୟକ୍ତିର ଧନ ଅସଜ୍ଜନ ହିଁ ଭୋଗ କରିଥାଏ ।
(ଯେପରି ନିମ ଫଳକୁ କେବଳ କୁଆ ଏକା ଖାଇବାକୁ ଯାଏ) ।

(୩୩୧) ସଜ୍ଜନ ବ୍ୟକ୍ତି ଅସଜ୍ଜନ ବ୍ୟକ୍ତିକୁ ସ୍ନେହ କରେ ନାହିଁ ।

(୩୩୨) ଦୀନଦଶା ଅପେକ୍ଷା ମରଣ ଶ୍ରେୟସ୍କର ।

(୩୩୩) ଏକାନ୍ତରେ ମାତା ସହିତ ମଧ ରହିବା ନିଷେଧ ।

(୩୩୪) ନିଜର ପ୍ରଶଂସା ନିଜେ କରିବା ଅନୁଚିତ ।

(୩୩୫) ଦିନବେଳେ ଶୋଇବା ଅନୁଚିତ ।

(୩୩୬) ଅତିଥି ଓ ଅଭ୍ୟାଗତଙ୍କୁ ସମ୍ମାନର ସହ ଅଭ୍ୟର୍ଥନା ଓ ଆଦର ସତ୍କାର କରିବା ବିଧେୟ ।

(୩୩୭) ଦେବତାଙ୍କ ଉଦ୍ଦେଶ୍ୟରେ ଦିଆଯାଇଥିବା ଦାନ, କର୍ମ ନଷ୍ଟ କରେ ନାହିଁ ।

(୩୩୮) ଅଜ୍ଞାନୀ ଲୋକକୁ ଶତ୍ରୁ, ମିତ୍ର ପରି ପ୍ରତୀୟମାନ ହୁଏ ।

(୩୩୯) ଦୁଃଷ୍ଟ ବ୍ୟକ୍ତିକୁ ଅସତ୍ ଶାସ୍ତ୍ର (ଗୁଣି ଗାରିଡ଼ି ଆଦି ଶାସ୍ତ୍ର) ମୋହିତ କରିଥାଏ ।

(୩୪୦) ସତ୍ସଙ୍ଗ ହିଁ ସ୍ୱର୍ଗବାସ ଅଟେ ।

(୩୪୧) ରୂପ (ଆକାର) ଅନୁସାରେ ଗୁଣ ହୋଇଥାଏ ।

(୩୪୨) ସାଧୁ ତଥା ଉତ୍ତମ ବ୍ୟକ୍ତି ଅନ୍ୟକୁ ମଧ ନିଜ ସଦୃଶ ମନେ କରେ ।

(୩୪୩) ଯେଉଁଠାରେ ସୁଖରେ ରହି ହୁଏ ତାହା ହିଁ ଉଚିତ ତଥା ସମ୍ମାନଜନକ ସ୍ଥାନ ବୋଲି ଧରାଯାଏ ।

(୩୪୪) ବିଶ୍ୱାସଘାତକ ବ୍ୟକ୍ତିର ନିସ୍ତାର ନାହିଁ । ବିଶ୍ୱାସଘାତକ ପରି ପାପ ପାଇଁ କୌଣସି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ନାହିଁ, ତଥା ଏପରି ପାପ କସ୍ମିନ୍ କାଳେ ବିନଷ୍ଟ ହୁଏ ନାହିଁ ।

(୩୪୫) ଆଶ୍ରୟାଧୀନ ବ୍ୟକ୍ତିର ଦୁଃଖକୁ ସାଧୁ ତଥା ଉତ୍ତମ ବ୍ୟକ୍ତି ନିଜର ଦୁଃଖ ପରି ଜ୍ଞାନ କରେ ।

(୩୪୬) ଯେଉଁ ବିଷୟ ଦୈବର ଅଧୀନ ସେ ବିଷୟରେ ଶୋଚନା ଅନୁଚିତ ।

(୩୪୭) ଅସାଧୁ ଓ ଦୁଷ୍ଟ ଲୋକ ସତ୍ୟକୁ ମନରେ ଚାପିରଖି ମୁହଁରେ ମିଠା ମିଠା ଅସତ୍ୟ କଥା କହିଥାଏ ।

(୩୪୮) ବୁଦ୍ଧିହୀନ ବ୍ୟକ୍ତି ପିଶାଚ ସଦୃଶ ଅଟେ ।

(୩୪୯) କାହାକୁ ସାଥିରେ ନ ନେଇ ଏକାକୀ ପଥ ପର୍ଯ୍ୟଟନେ କରିବା ଅନୁଚିତ ।

(୩୫୦) ରାତିରେ ଏଣେ ତେଣେ ବୁଲିବା ଉଚିତ ନୁହେଁ ।

(୩୫୧) ଅଧରାତିରେ ଶୋଇବା ଉଚିତ ନୁହେଁ ।
(ଅର୍ଥାତ୍ ତା ପୂର୍ବରୁ ଶୋଇ ପଡିବା ଉଚିତ)

(୩୫୨) ରାତ୍ରି ଶେଷରେ ନିଜର ହିତଚିନ୍ତା କରିବା ବିଧେୟ ।

(୩୫୩) ପୁତ୍ରକୁ ସ୍ପର୍ଶ କରିବା ସୁଖଠାରୁ ଅଧିକ ସୁଖ ନାହିଁ ।

(୩୫୪) ନିଜ ପୁତ୍ରକୁ ପ୍ରଶଂସା କରିବା ଅନୁଚିତ ।

(୩୫୫) ଭୃତ୍ୟ/ଅଧସ୍ତନ କର୍ମଚାରୀ କର୍ତ୍ତାର ଗୁଣ କୀର୍ତ୍ତନ କରିବା କର୍ତ୍ତବ୍ୟ ।

(୩୫୬) ଭୃତ୍ୟ/ଅଧସ୍ତନ କର୍ମଚାରୀ ଯେଉଁ ଧର୍ମକାର୍ଯ୍ୟ କରେ ତାହା ମଧ୍ୟ କର୍ତ୍ତାଙ୍କର କୃପା ବୋଲି ପ୍ରକାଶ୍ୟରେ ଘୋଷଣା କରିବା କର୍ତ୍ତବ୍ୟ ।

(୩୫୭) କର୍ତ୍ତାଙ୍କ ଆଜ୍ଞା ଲଂଘନ କରିବା ଅନୁଚିତ ।

(୩୫୮) କର୍ତ୍ତା ଯେପରି ଆଜ୍ଞା ଦେବେ ସେପରି କାର୍ଯ୍ୟ କରିବା ଉଚିତ ।

(୩୫୯) କାମନାରେ ଦୋଷ ଥିବା ଚାଃ ମଧ ଲାଳସାର ବଶବର୍ତ୍ତୀ ହୋଇ ମନୁଷ୍ୟ ସେଥିରେ ଲିପ୍ତ ହୁଏ ।

(୩୬୦) ଯାହାର ବିନାଶ କାଳ ଉପସ୍ଥିତ ହୁଏ, ସେ ଅନ୍ୟାୟ କାର୍ଯ୍ୟରେ ହାତ ଦେଇଥାଏ ।

(୩୬୧) ଦୁଧ ପାଇବାକୁ ଇଚ୍ଛା କରିବା ଲୋକ ମାଈ ହାତୀ କିଣେ ନାହିଁ । (ଅର୍ଥାତ୍- ଯାହାର ଯାହା ଦରକାର ସେ ତାହା ହିଁ ଖୋଜିଥାଏ ବଡ଼ଲୋକର ଦରକାର ନଥିଲେ, ତାକୁ ଆଶ୍ରୟ କରିବା ନିରର୍ଥକ)

(୩୬୨) ଅଭଦ୍ର ବ୍ୟକ୍ତି ସହିତ ବନ୍ଧୁତା କରିବା ଅପେକ୍ଷା ଭଦ୍ର ବ୍ୟକ୍ତି ସହିତ ଶତ୍ରୁତା କରିବା ଶ୍ରେୟସ୍କର ।

(୩୬୩) ଦୁର୍ବଚନ କୁଳକୁ ମଧ ନାଶ କରେ ।

(୩୬୪) ବିବାଦ ବଢ଼ିଲେ ମଧ ଧର୍ମ ଅନୁସାରେ ଆଚରଣ କରବା ଉଚିତ ।

(୩୬୫) ସ୍ୱର୍ଗସୁଖ ସ୍ଥାୟୀ ନୁହେଁ । ଯେତିକି ପୁଣ୍ୟ କରାଯାଏ ସେତିକି ସ୍ୱର୍ଗଭୋଗ ମିଳିଥାଏ ।

(୩୬୬) ସ୍ୱର୍ଗଚ୍ୟୁତ ହେବାଠାରୁ ବଳି ଅଧିକ ଦୁଃଖ ନାହିଁ ।

(୩୬୭) ମନୁଷ୍ୟ ନିଜର ଶରୀର/ଦେହକୁ ଛାଡ଼ି ଇନ୍ଦ୍ରପଦ ମଧ୍ୟ ଚାହେଁ ନାହିଁ ।

(୩୬୮) ସମସ୍ତ ଦୁଃଖର ଔଷଧ କେବଳ 'ମୋକ୍ଷ' ଅଟେ ।

(୩୬୯) ଆପଦରୁ ରକ୍ଷା ପାଇବା ସକାଶେ ଧନରକ୍ଷା କରିବା ଉଚିତ ।

(୩୭୦) ଯାହାଦ୍ୱାରା ନିଜର ବୃତ୍ତି ଚଳୁଥିବ ତାକୁ ନିନ୍ଦା କରିବା ଅନୁଚିତ ।

(୩୭୧) କ୍ଷମତାବାନ ବ୍ୟକ୍ତି ସମସ୍ତ କାର୍ଯ୍ୟ ସାଧନ କରିପାରେ ।

(୩୭୨) ବୁଦ୍ଧିବାନ ଲୋକର କେହି ଶତ୍ରୁ ହୁଅନ୍ତି ନାହିଁ ।

(୩୭୩) ସାହସୀ ଲୋକ ନିଜର କର୍ତ୍ତବ୍ୟ ସାଧନ କରିବାକୁ ବେଶି ପସନ୍ଦ କରନ୍ତି ।

(୩୭୪) ମନୁଷ୍ୟମାନଙ୍କର ମନୋବୃତ୍ତି ଶାସ୍ତ୍ର ଅନୁସାରେ ହେବା ଉତ୍କୃଷ୍ଟ ଅଟେ ।

(୩୭୫) ଶାସ୍ତ୍ରଜ୍ଞାନରେ ଜ୍ଞାନୀ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ଆଚରଣ ଅନୁକରଣ କରି ଚଳିବା ବିଧେୟ ।

(୩୭୬) ଶିଷ୍ଟାଚାରଠାରୁ ବଳି ଅଧିକ ଶାସ୍ତ୍ର ନାହିଁ ।

(୩୭୭) ବ୍ୟବହାର ଓ ଅନୁଭବଦ୍ୱାରା ହିଁ ଲୋକ ସର୍ବଜ୍ଞ ହୁଏ, କେବଳ ଶାସ୍ତ୍ର ପଢ଼ିଲେ ସର୍ବଜ୍ଞ ହୋଇପାରେ ନାହିଁ ।

(୩୭୮) ଯେଉଁ ବ୍ୟକ୍ତି ଶାସ୍ତ୍ର ଜାଣି ଅନୁଭବୀ ହୋଇପାରେ ନାହିଁ, (ଅର୍ଥାତ୍-- ଲୋକ ବ୍ୟବହାରଜ୍ଞ ହୋଇପାରେ ନାହିଁ) ସେ ମୂର୍ଖ ସଦୃଶ ଅଟେ ।

(୩୭୯) ସମସ୍ତ ପଦାର୍ଥର ଯଥାର୍ଥ ଜ୍ଞାନ ଅର୍ଜନ ସକାଶେ ଶାସ୍ତ୍ରଜ୍ଞାନର ପ୍ରୟୋଜନ ଅନିର୍ବାର୍ଯ୍ୟ ।

(୩୮୦) ମେଣ୍ଢା ପଛରେ ଅନ୍ୟ ମେଣ୍ଢା ଗଲାପରି, ସାଧାରଣଲୋକ ଅନ୍ୟର ଆଚରଣକୁ ନକଲ କରନ୍ତି । ମାତ୍ର ତତ୍ତ୍ୱ ଜାଣିବାକୁ ଚେଷ୍ଟା କରନ୍ତି ନାହିଁ ।

(୩୮୧) ଲୋକ ଜ୍ଞାନ ହିଁ ତତ୍ତ୍ୱ ଜ୍ଞାନକୁ ଉତ୍ପନ୍ନ କରେ ।

(୩୮୨) ବିଶେଷଜ୍ଞଙ୍କ ଦ୍ୱାରା କୌଣସି କାର୍ଯ୍ୟ ପରୀକ୍ଷା କରାଇବା ବିଧେୟ ।

(୩୮୩) ନିଜର ଛିଦ୍ର (ଗଲତି)କୁ କେବେହେଲେ ପ୍ରକାଶ କରିବା ଉଚିତ୍ ନୁହେଁ ।

(୩୮୪) କାଲି କରିବା କାର୍ଯ୍ୟ ଆଜି କରିବା ଉଚିତ ।

(୩୮୫) ଅପରାହ୍ଣରେ କରିବା କାର୍ଯ୍ୟ ପୂର୍ବାହ୍ଣରେ କରି ପକାଇବା ଉଚିତ ।

(୩୮୬) ଯେପରି କର୍ମ କରାଯାଏ, ସେହିପରି ଧର୍ମ ଲାଭ ହୋଇଥାଏ ।

(୩୮୭) ବ୍ୟବହାର ଧର୍ମଠାରୁ ଗୁରୁତର ।

(୩୮୮) ବ୍ୟବହାରରେ କେଉଁ ପକ୍ଷପାତ କରିବା ଅନୁଚିତ ।

(୩୮୯) ଆତ୍ମା ହିଁ ସମଗ୍ର ଲୋକଙ୍କର ବ୍ୟବହାରର ସାକ୍ଷୀ ଅଟେ ।

(୩୯୦) ଆତ୍ମା ସମସ୍ତ କର୍ମର ସାକ୍ଷୀ ଅଟେ ।

(୩୯୧) ମିଛ ସାକ୍ଷୀ ହେବା ବା ଦେବା ଅନୁଚିତ ।

(୩୯୨) ମିଛ ସାକ୍ଷୀମାନେ ନର୍କରେ ପଡ଼ନ୍ତି ।

(୩୯୩) ଲୁଚାଇ ପାପ କରିବା ଲୋକର ସାକ୍ଷୀ ପଞ୍ଚଭୂତ (ଅର୍ଥାତ୍-- ପୃଥିବୀ, ଜଳ, ତେଜ, ଆକାଶ ଓ ପବନ) ଅଟନ୍ତି ।

(୩୯୪) ନିଜର ପାପକୁ ସମୟ ଆସିଲେ ମନୁଷ୍ୟ ନିଜେ ପ୍ରକାଶ କରେ ।

(୩୯୫) ବ୍ୟବହାର ଦ୍ୱାରା ମନୁଷ୍ୟ ନିଜ ଅର୍ନ୍ତନିହିତ ଭାବର ରୂପରେଖ ପ୍ରକାଶ କରିଥାଏ ।

(୩୯୬) ନିଜ ହୃଦୟର ଭାବକୁ ଦେବତା ସୁଦ୍ଧା ଲୁଚାଇ ରଖିପାରନ୍ତି ନାହିଁ ।

(୩୯୭) ଅହିଂସା ହିଁ ଶ୍ରେଷ୍ଠ ଓ ପରମ ଧର୍ମ ।

(୩୯୮) ସାରା ସଂସାର ଅନିତ୍ୟ ଅଟେ ।

(୩୯୯) ସାଧୁ ମହାତ୍ମା ନିଜର ଶରୀର ମଧ୍ୟ ଅନ୍ୟ ସକାଶେ ଉଚ୍ଛିଷ୍ଟ ବୋଲି ମନେ କରନ୍ତି ।

(୪୦୦) ମନୁଷ୍ୟର ଶରୀର ମଳ, ମୂତ୍ର, ଓ କୃମି ଇତ୍ୟାଦିର ଆଧାର ଏବଂ ପାପ ପୁଣ୍ୟରୂପକ କାର୍ଯ୍ୟର ଜନକ ଅଟେ ।

(୪୦୧) ଜନ୍ମ ଓ ମରଣରେ କେବଳ ଦୁଃଖ ଭୋଗ ହୋଇଥାଏ ।

(୪୦୨) ଜ୍ଞାନୀ ଲୋକଙ୍କୁ ସଂସାରର ଭୟ ହୁଏ ନାହିଁ ।

(୪୦୩) ବିଜ୍ଞାନର ପ୍ରଦୀପ ଦ୍ୱାରା ସଂସାର ଭୟ ଦୂର ହୁଏ ।

(୪୦୪) ମାଂସ ଭୋଜନ କରିବା ଉଚିତ୍ ନୁହେଁ ।

(୪୦୫) (କ) ତପସ୍ୟା ଦ୍ୱାରା ହିଁ ସ୍ୱର୍ଗପ୍ରାପ୍ତି ହୁଏ ।

(ଖ) କ୍ଷମାଶୀଳ ବ୍ୟକ୍ତିର ତପସ୍ୟା ବୃଦ୍ଧି ପାଏ ।

(ଗ) ତପସ୍ୟା ଦ୍ୱାରା ହିଁ ମନୁଷ୍ୟ ସମସ୍ତ କାର୍ଯ୍ୟରେ ସିଦ୍ଧିଲାଭ କରିଥାଏ ।

(୪୦୬) ଦୁଷ୍ଟ ବ୍ୟକ୍ତି ନିଜର ଦୋଷକୁ ନ ଦେଖି ସର୍ବଦା ପରଛିଦ୍ର ଅନ୍ୱେଷଣ କରୁଥାଏ ।

(୪୦୭) ଚୁଗୁଲିଖୋର ଲୋକର ଯେ କୌଣସି ରହସ୍ୟ ଖୋଲା ନ ହୋଇ ରହିପାରେ ନାହିଁ ।

(୪୦୮) ଅବିନୀତ ସ୍ୱାମୀଲାଭ ଅପେକ୍ଷା ଅସ୍ୱାମୀଲାଭ ହିଁ ଶ୍ରେୟସ୍କର ।

(୪୦୯) ମନ୍ତ୍ରୀମାନେ କାର୍ଯ୍ୟ ଓ ଅକାର୍ଯ୍ୟର ତତ୍ତ୍ୱ ଜାଣି ପାରନ୍ତି ।

(୪୧୦) କୌଣସି ଲୋକର ଶକ୍ତି କ୍ଷୀଣ ହୋଇଗଲେ ସେ ଅନ୍ୟ ସହିତ ସାଲିସ୍ ଅର୍ଥାତ୍ ସନ୍ଧି କରିନେବା ଉଚିତ୍ ।

(୪୧୧) ରାଜା ଶତ୍ରୁର ଚାଲାକି ପ୍ରତି ସର୍ବଦା ନଜର ଦେବା ଉଚିତ ଏବଂ ବହୁତ ଶତ୍ରୁ ହେଲେ ତନ୍ମଧ୍ୟରୁ ଜଣକ ସହିତ ସାଲିସ ବା ସନ୍ଧି କରିନେବା ବିଧେୟ ।

(୪୧୨) ଦୁଇଜଣ ଶତ୍ରୁତା କଲେ ଜଣକ ସହିତ କପଟ ମିତ୍ରତା କରି ଅନ୍ୟ ସହ ଲଢ଼ିବା ଉଚିତ ।

(୪୧୩) (କ) ହସ୍ତୀ, ଅଶ୍ୱ, ପଦାତିକ ଓ ରଥୀ ଏହି ଚତୁରଙ୍ଗ ସେନା ଯୁକ୍ତ ରାଜା ମଧ୍ୟ ଇନ୍ଦ୍ରିୟମାନଙ୍କୁ ଦମନ କରି ନପାରିଲେ ଯୁଦ୍ଧରେ ପରାଜିତ ହୁଅନ୍ତି ।

(ଖ) ସେନା କେବଳ ସମ୍ପଦ ପ୍ରଦାନ କରନ୍ତି ।

(ଗ) ସେନା ନ ଥିଲେ ମନ୍ତ୍ରୀ ବର୍ଗ ମଧ୍ୟ ରହିବେ ନାହିଁ ।

(ଘ) ସେନା ଥିଲେ ମନ୍ତ୍ରୀ ପ୍ରଭୃତି ଅମାତ୍ୟବର୍ଗ ଅକାର୍ଯ୍ୟରେ ରତ ହୁଅନ୍ତି ନାହିଁ ।

(ଙ) ଚାରି ଚକ୍ଷୁ ଦ୍ୱାରା ରାଜା ଦୂରସ୍ଥ ଜିନିଷକୁ ମଧ୍ୟ ଦେଖିପାରନ୍ତି ।

(ଚ) ଯେଉଁ ରାଜା ପ୍ରଜାମାନଙ୍କୁ କଷ୍ଟରେ ଦର୍ଶନ ଦିଅନ୍ତି ତାଙ୍କର ପ୍ରଜା-ମାନଙ୍କର ବିନାଶ ଘଟେ ।

(ଛ) ଯେଉଁ ରାଜା ବରାବର ପ୍ରଜାମାନଙ୍କୁ ଦେଖା ଦେଇ ସୁଖ ଦୁଃଖ ବୁଝନ୍ତି, ତାଙ୍କୁ ପ୍ରଜାମାନେ ପ୍ରସନ୍ନ ହୁଅନ୍ତି ।

(ଜ) ନ୍ୟାୟବାନ୍ ରାଜାଙ୍କୁ ପ୍ରଜାମାନେ ନିଜର ମାତାଙ୍କ ସଦୃଶ ପାଳକ ବୋଲି ମାନିଥାନ୍ତି ।

(ଝ) ମାତା ସଦୃଶ ପ୍ରଜାପାଳକ ରାଜା ଇହଲୋକରେ ସୁଖୀ ଓ ପର-ଲୋକରେ ସ୍ୱର୍ଗପ୍ରାପ୍ତ ହୁଅନ୍ତି ।

(ଞ) ପ୍ରକୃତି ସମ୍ପଦଯୁକ୍ତ (ଅର୍ଥାତ୍ -ମନ୍ତ୍ରୀ, ଅମାତ୍ୟ, ସେନା, ମିତ୍ର, ପ୍ରଭୃତି) ରାଜ୍ୟ, ରାଜା ହୀନ ହେଲେ ମଧ୍ୟ ସୁଚାରୁରୂପେ ଚଳିପାରେ ।

(ଟ) ମନ୍ତ୍ରୀ, ଅମାତ୍ୟ, ସେନା ପ୍ରଭୃତି ପ୍ରକୃତିମାନଙ୍କ କୋପ ସମସ୍ତ କୋପଠାରୁ ଗରିଷ୍ଠ ଅଟେ ।

(ଠ) ମନସ୍ୱୀ ରାଜା ଅନ୍ୟ ଏକ ମନସ୍ୱୀ ବ୍ୟକ୍ତିଙ୍କୁ ମନ୍ତ୍ରୀ ରୂପେ ନିର୍ବାଚନ କରିବେ ।

(ଡ) ପ୍ରଜାର ରକ୍ଷଣ ହିଁ ରାଜାଙ୍କର ଧର୍ମ ।

(୪୧୪) ବିଚାରପୂର୍ବକ ପରୀକ୍ଷା କରି ବିପତ୍ତିରୁ ରକ୍ଷା ପାଇବା ପାଇଁ ଚେଷ୍ଟା କରିବା ବିଧେୟ ।

(୪୧୫) ଯେପରି ଲମ୍ବିଥିବା ଟେଣ୍ଡାନଳ ଗଭୀର କୂପରୁ ପାଣି କାଢ଼ିପାରେ, ସେହିପରି ନଇଁପଡ଼ି କାର୍ଯ୍ୟ କରିବା ବ୍ୟକ୍ତି ଗଭୀର ସ୍ଥାନରୁ ମଧ୍ୟ ନିଜର କାର୍ଯ୍ୟ ହାସଲ କରିଥାଏ ।

(୪୧୬) ଶତ୍ରୁ ଉପରେ କରାଯିବା ଚଢ଼ାଉ ପ୍ରଭୃତି କାର୍ଯ୍ୟ ରାଜା ନିଜେ ନିରୀକ୍ଷଣ କରିବେ ।

(୪୧୭) ଶୁଖିଲା ବଣରୁ ମଧ୍ୟ ଔଷଧି ସଂଗ୍ରହ କରାଯାଇପାରେ ।

(୪୧୮) ସମାନ ସମାନ ଅବସ୍ଥାରେ ମଧ୍ୟ ନିଜର ପ୍ରଭୁତ୍ୱର ପ୍ରୟୋଜନ ହୁଏ ।

(୪୧୯) ରାଜପୁରୁଷ ଓ ଚୋରଙ୍କଠାରୁ ଧନ ସର୍ବଦା ରକ୍ଷା କରିବା ଉଚିତ ।

(୪୨୦) ତିନିବେଦ ଜାଣିବା ପଣ୍ଡିତମାନେ ଯଜ୍ଞ ଫଳ ପ୍ରାପ୍ତ ହୁଅନ୍ତି ।

(୪୨୧) ଐଶ୍ୱର୍ଯ୍ୟ ସ୍ୱୟଂ ଉପସ୍ଥିତ ହେଉଥିବାବେଳେ ତାକୁ ଉପେକ୍ଷା କରିବା ଉଚିତ ନୁହେଁ । (କାରଣ ଲୋକ ପ୍ରବାଦ ଅଛି ଯେ କୌଣସି ପୁରୁଷ ସହିତ ରମଣ ସକାଶେ ସ୍ୱଇଚ୍ଛାରେ ଆସିବା ସ୍ତ୍ରୀକୁ ପ୍ରତ୍ୟାଖ୍ୟାନ କଲେ ସେ (ସ୍ତ୍ରୀ) ପୁରୁଷକୁ ଅଭିଶାପ ଦିଏ)

(୪୨୨) କାର୍ଯ୍ୟ ସାଧନ ସକାଶେ ବହୁକାଳ ଧରି ଅପେକ୍ଷା କରିଥିବା ଶୁଭମୁହୂର୍ତ୍ତ ଥରେ ମାତ୍ର ଆସେ, ଏହି ମୁହୂର୍ତ୍ତକୁ ଉପେକ୍ଷା କଲେ ତାହା ପୁନରାୟ ଆସେ ନାହିଁ । ତେଣୁ ଶୁଭମୁହୂର୍ତ୍ତକୁ ଉପେକ୍ଷା କରିବା ଅନୁଚିତ ।

(୪୨୩) ଧନ ସମ୍ପର୍କୀୟ ନୀତିମାନଙ୍କରୁ ଏହା ପ୍ରତୀୟମାନ ହୁଏ ଯେ- ଚୋରି, ହିଂସା, ମିଥ୍ୟା, ଦମ୍ଭ, କାମ, କ୍ରୋଧ, ଗର୍ବ, ଅହଂକାର, ଭେଦବୁଦ୍ଧି, ବୈରାଚରଣ, ଅବିଶ୍ୱାସ, ସ୍ପର୍ଦ୍ଧା, ଲମ୍ପଟତା, ଜୁଆ ଏବଂ ମଦ୍ୟପାନ - ଏହି ପନ୍ଦର ପ୍ରକାର 'ଅନର୍ଥ' ଧନ ଯୋଗୁ ମନୁଷ୍ୟ ପାଖକୁ ଆସିଥାଏ । ଏଣୁ କଲ୍ୟାଣକାମୀ ପୁରୁଷ ଏହି ଅର୍ଥ ନାମ-ଧାରୀ ଅନର୍ଥକୁ ଦୂରରୁ ତ୍ୟାଗ କରିବା ଉଚିତ ।

(୪୨୪) କଳାକାଂକ୍ଷୀ ପୁରୁଷ କାର୍ଯ୍ୟ ସାଧନ ସକାଶେ ବହୁକାଳରୁ ଅପେକ୍ଷା କରିଥିବା ସମୟ (ଶୁଭ ମୁହୂର୍ତ୍ତ) ଥରେ ମାତ୍ର ପ୍ରାପ୍ତ ହୁଏ । ସେହି ସମୟ ପ୍ରାପ୍ତ ହୋଇ ସେ ଯଦି ତାକୁ ଉପେକ୍ଷା କରେ, ତେବେ ସେ ସେହି ସମୟକୁ ପୁନରାୟ ଲାଭ କରିପାରେ ନାହିଁ । (ସେ ସମୟ ତା' ପକ୍ଷେ ଦୁର୍ଲଭ ହୁଏ) ଅତଏବ, ଶୁଭ ମୁହୂର୍ତ୍ତ ସର୍ବଦା ଅନୁପେକ୍ଷଣୀୟ ।

(୪୨୫) (କ) ଧର୍ମ ଓ ଅର୍ଥର ଅବିରୋଧରେ କାମସେବା କର, ଏକାବାରେ ନିଃସୁଖ ଜୀବନ ଯାପନ କରନାହିଁ ।

(ଖ) ଧର୍ମ ଓ କାମସିଦ୍ଧି ଅର୍ଥମୂଳକ ଅଟେ ।

(ଗ) ଧର୍ମଯୁକ୍ତ ଚରିତ୍ର ଅନ୍ୟଦ୍ୱାରା ଆଚରିତ ହେଲେ ତାହା ପ୍ରବର୍ତ୍ତିତ କରିବା ଉଚିତ । କିନ୍ତୁ ଅଧର୍ମ ଯୁକ୍ତ ଚରିତ୍ରକୁ କଦାପି ପ୍ରବର୍ତ୍ତିତ କରିବା ଉଚିତ ନୁହେଁ ଏବଂ ଅନ୍ୟ ଦ୍ୱାରା ଏପରି ଅଧର୍ମଯୁକ୍ତ ଚରିତ୍ର ପ୍ରବର୍ତ୍ତିତ ହୋଇଥିଲେ ତାକୁ ନିବର୍ତ୍ତିତ କରିବା ବିଧେୟ ।

(ଘ) ଅର୍ଥ ଧର୍ମର ମୂଳ କାରଣ ଅଟେ । ତେଣୁ ଅର୍ଥଜନିତ ସିଦ୍ଧିକୁ 'ସର୍ବାର୍ଥ ସିଦ୍ଧି' କୁହାଯାଏ ।

(୪୨୬) ନିଜର ଯେଉଁ ଦୋଷରୁ ତ୍ରୁଟି ଘଟିଲା, ସେହି ପ୍ରକୃତିଗତ ଦୋଷକୁ ଦମନ କରିବା ବିଧେୟ । ପୁଣି ଯେଉଁ ଗୁଣ ଯୋଗୁଁ ଘଟିଥିବା ତ୍ରୁଟି ନିବାରଣ କରାଯାଇପାରିଲା, ସେହି ଗୁଣଗୁଡ଼ିକୁ ଦୃଢ଼ୀଭୂତ କରିବା ଉଚିତ ।

(୪୨୭) କୌଣସି ବ୍ୟକ୍ତି ଅରିଷଡ୍‌ବର୍ଗର (ଅର୍ଥାତ୍--କାମ, କ୍ରୋଧ, ଲୋଭ, ମାନ, ମଦ ଓ ହର୍ଷ) ବଶବର୍ତ୍ତୀ ହେଲେ ନାଶପ୍ରାପ୍ତ ହୁଅନ୍ତି ।

(୪୨୮) ପରମ ରୂପ ଯୌବନା ସ୍ତ୍ରୀ ମାନଙ୍କ ସହାୟତାରେ ଶତ୍ରୁର ଗୁପ୍ତଚରମାନେ ମୁଖ୍ୟ ବ୍ୟକ୍ତିବିଶେଷଙ୍କୁ ପ୍ରଲୋଭିତ, ମୋହିତ ତଥା ଉନ୍ମାଦିତ କରାଇ ତାଙ୍କୁ ହତ୍ୟା କରାନ୍ତି ।

(୪୨୯) ଗଧ ଯେପରି ତାର ଫଳ କ'ଣ ନଜାଣି ଖଟେ ସେହିପରି ଖଟିବା ଉଚିତ ।

(୪୩୦) ବେତ ଓ କୁରାଢ଼ି ଯେପରି ପରକୁ ହିଂସାକରି ଅନ୍ୟକୁ ଲାଭବାନ କରାନ୍ତି, ସେହିପରି ନିର୍ଜୀବ ଭାବରେ ଯିଏ କର୍ମ ବା ଆଚରଣ କରେ ସେ ବେତ ଓ କୁରାଢ଼ି ପରି ପରହିଂସା କରି ମଧ୍ୟ ନିଜେ ତାର ଫଳ ଭୋଗେ ନାହିଁ; ପରନ୍ତୁ ଅନ୍ୟ ବ୍ୟକ୍ତି ଭୋଗନ୍ତି ।

(୪୩୧) (କ) ଶାସ୍ତ୍ର ମତରେ ନାନାବିଧ ହିଂସାତ୍ମକ ବିଧିବିଧାନର ବ୍ୟବସ୍ଥା ଥିବା ଯୋଗୁଁ ଏହା କେବଳ ଅଧର୍ମ ବ୍ୟକ୍ତି ବିଶେଷଙ୍କ ଉପରେ ହିଁ ପ୍ରୟୋଗ କରିବାକୁ ହେବ । କାରଣ ଧର୍ମକର୍ମ ପରାୟଣ ଜନସାଧାରଣଙ୍କୁ ଅଧର୍ମିଷ୍ଠ ପ୍ରବର୍ତ୍ତିତ ପ୍ରତିକାର୍ଯ୍ୟ ଆପଦରୁ ରକ୍ଷା କରିବା ସକାଶେ ଏହା ଏକମାତ୍ର ଉପାୟ ।

(ଖ) ଯେତେ ମନୁଷ୍ୟ କ୍ଷୟ ହୁଅନ୍ତୁ ନା କାହିଁକି, ଯେତେ ଧନ ବ୍ୟୟ ହେଉ ନା କାହିଁକି ଶତ୍ରୁକୁ ସମ୍ମୁଖ ଯୁଦ୍ଧରେ ହିଁ ମାରିପିଟି ଧ୍ୱଂସ କରିଦେବା ଅଭିମତ ବୋଲି ଗୃହୀତ ହେବା ଉଚିତ ।

(ଗ) ପୁଣି ଲୋକ କ୍ଷୟ ଓ ଧନବ୍ୟୟ ସମାନ ହେଲେ ମଧ୍ୟ, ଯେ ଯୋଦ୍ଧା ବା ପ୍ରତିଯୋଦ୍ଧା ପ୍ରଥମତଃ ନିଜ ରାଜ୍ୟର ହାନିକାରକ ତଥା ରାଜ ଦ୍ରୋହ ଆଚରଣରେ ବ୍ୟାପୃତ ଥିବା ସେନାକୁ ଶତ୍ରୁ ଦ୍ୱାରା ସମୂଳେ ଧ୍ୱଂସ କରାଇ ନିଷ୍କଣ୍ଟକ ହେବେ ଏବଂ ପରେ ନିଜର ରାଜ୍ୟରେ ଥିବା ସେନାକୁ ନେଇ ଯୁଦ୍ଧ କଲେ, ସେ ବିଶେଷ ଲାଭବାନ ହୁଅନ୍ତି ।

(୪୩୨) (କ) ଶତ୍ରୁ ଆକ୍ରମଣର ପ୍ରତିରୋଧ, ଘର ପୋଡି ପରି ଆକସ୍ମିକ ଦୁର୍ଘଟଣାର ପ୍ରତିରୋଧ ବା ପ୍ରତିକାର ପାଇଁ ନକ୍ଷତ୍ର ଦେଖି ଅନୁକୂଳ କରିବା ମୂର୍ଖତା ।

(ଖ) ଅର୍ଥସିଦ୍ଧି ପାଇଁ ଅର୍ଥ ହିଁ ନକ୍ଷତ୍ର ବୋଲି ବିବେଚନା କରିବା ଉଚିତ । ଏଥିରେ ତାରକା ଅର୍ଥାତ୍ ନକ୍ଷତ୍ର କ'ଣ କରି ପାରିବ ?

(୪୩୩) ଧନ ରୂପକ ସାଧନାରହିତ ଦରିଦ୍ର ବ୍ୟକ୍ତିମାନେ ଶତଚେଷ୍ଟା ଓ ଯତ୍ନ କରି ମଧ୍ୟ ଧନ ପ୍ରାପ୍ତ ହୋଇ ପାରନ୍ତି ନାହିଁ ।

(୪୩୪) ପୋଷା ହାତୀ ଦ୍ୱାରା ଯେପରି ବଣୁଆ ହାତୀକୁ କବଳିତ କରାଯାଇ ଥାଏ; ସେହିପରି ଧନ ଦ୍ୱାରା ହିଁ ଅନ୍ୟାନ୍ୟ ଅଭୀଷ୍ଟ ବିଷୟ ମଧ୍ୟ କବଳିତ ହୋଇଥାଏ ।

(୪୩୫) ନିଜ ଲୋକଠାରୁ ବା ପର ଲୋକଙ୍କଠାରୁ ଅର୍ଥ ସମ୍ବନ୍ଧୀୟ କୌଣସି ଭୟ ଉତ୍ପନ୍ନ ହେଲେ ତାକୁ ଅନର୍ଥ ରୂପକ ଆପଦ କହନ୍ତି । ଏହି ଆପଦର ସଂଶୟ ଚାରି ପ୍ରକାର ଯଥା:-

(କ) ଏହା ଅର୍ଥ ନା ନୁହେଁ ? (ଖ) ଏହା ଅନର୍ଥ ନା ନୁହେଁ ?

(ଗ) ଏହା ଅର୍ଥ ବା ଅନର୍ଥ ? (ଘ) ଏହା ଅନର୍ଥ ବା ଅର୍ଥ ?

ଏହି ଚାରି ପ୍ରକାର ସଂଶୟ ମଧ୍ୟରୁ ଯେଉଁଟି ଅର୍ଥ ସିଦ୍ଧିକର ଓ ଅନର୍ଥର ସମ୍ପର୍କ ରହିତ, ତାକୁ ବିଜୟାଭିଳାଷୀ ଅବଲମ୍ବନ କରିବା ଉଚିତ ।

(୪୩୬) (କ) ଶ୍ମଶାନରେ ଗାଈ ଦୁହିଁଲେ ଭୂତ, ପ୍ରେତ, ପିଶାଚ ପ୍ରଭୃତି ଶାନ୍ତ ହୁଅନ୍ତି ଓ ଗ୍ରାମର ଅନିଷ୍ଟ କରନ୍ତି ନାହିଁ ।

(ଖ) ଚାଉଳ ଚୂନା ଓ ଲିଆ/ଖଇ ଗୁଣ୍ଡି ତିଆରି ମୁଣ୍ଡ ନଥିବା ମନୁଷ୍ୟ ମୂର୍ତ୍ତି ଦହନ କଲେ- ମହାମାରୀ, ପ୍ଲେଗ, ହଇଜା ଇତ୍ୟାଦି ମଡ଼କ ପଡ଼ିଲେ ମଧ୍ୟ କେହି ମରନ୍ତି ନାହିଁ ।

(ଗ) ଜନସାଧାରଣ ଗଙ୍ଗା, ଗୋଦାବରୀ ପ୍ରଭୃତି ତୀର୍ଥ ସ୍ଥାନରେ ସ୍ନାନ କରିବେ, ବରୁଣ ଦେବତାଙ୍କୁ ପୂଜା କରିବେ ଓ କୌଣସି ଦେବତାଙ୍କ ଅର୍ଚ୍ଚନା ଉପଲକ୍ଷେ ରାତ୍ରି ଉଜାଗର ରହି ଦେବତାଙ୍କର ଅର୍ଚ୍ଚନା କରିବେ । ମହାମାରୀର ପ୍ରତିକାର ପାଇଁ ଏହା କରିବା ବିଧେୟ ।

(୪୩୭) (କ) ରାଜ୍ୟ ସମ୍ପଦ ପୃଥିବୀର ସର୍ବଶ୍ରେଷ୍ଠ ସମ୍ପଦ । ଏହି ସମ୍ପଦର ଲାଭ ଓ ପାଳନ ଫଳରେ ଧର୍ମ, ଅର୍ଥ, କାମ ତ୍ରିବର୍ଗ ସମ୍ପତ୍ତି ଆୟତ୍ତ

ହୁଏ । ଏଥିପାଇଁ ଦକ୍ଷ, ସ୍ୱାଧୀନଚେତା ଓ କର୍ତ୍ତବ୍ୟ ପରାୟଣ ନାଗରିକ ଗଠନର ନାନା ବିଧି ଉପାୟ ଅଛି, ସେହି ଶାସ୍ତ୍ରର ନାମ ''ଅର୍ଥଶାସ୍ତ୍ର''।

(ଖ) ଚତୁର ବ୍ୟକ୍ତି ନିଜର ପ୍ରିୟ ଓ ହିତାକାଙ୍କ୍ଷୀ ବ୍ୟକ୍ତିମାନଙ୍କ ସହ-ଯୋଗରେ ଆତ୍ମଗୁଣ ସମ୍ପନ୍ନ ଓ ଏବଂ ପ୍ରକୃତିସମ୍ପନ୍ନ ରାଜାଙ୍କର ଆଶ୍ରୟ ଗ୍ରହଣ କରିବେ । ଅନ୍ୟପକ୍ଷରେ, ଅପ୍ରିୟ ଅହିତାକାଙ୍କ୍ଷୀ ବ୍ୟକ୍ତିଙ୍କ ସହଯୋଗରେ ଅଯୋଗ୍ୟ ରାଜାଙ୍କର ଆଶ୍ରୟ ଗ୍ରହଣ କରିବେ ନାହିଁ ।

(ଗ) ପ୍ରଜା ଯଦି ପରିହାର ଦ୍ରବ୍ୟ ରାଜାଙ୍କୁ ଯଥାରୀତିରେ ପରିଶୋଧ କରେ, ତେବେ ରାଜା ତାକୁ ପିତାସଦୃଶ ଅନୁଗ୍ରହ କରିବେ ।

(୪୩୮) (କ) ଉଗ୍ରଦଣ୍ଡ ପ୍ରଜାମାନଙ୍କ ଉତ୍ତେଜନା ସୃଷ୍ଟିକାରକ ।

(ଖ) ମୃଦୁଦଣ୍ଡ ଘୃଣା ବା ହେୟଭାବ ଜନକ ।

(ଗ) ଦେଶକାଳ ଓ ଅପରାଧର ମାତ୍ରାନୁଯାୟୀ ବ୍ୟବସ୍ଥିତ ଦଣ୍ଡ ଲୋକମାନ୍ୟ ଅଟେ ।

(୪୩୯) ଆର୍ଯ୍ୟ ମତରେ ଅଗମ୍ୟାନାରୀ (ଏମାନେ ସଂଭୋଗ ଯୋଗ୍ୟା ନୁହଁନ୍ତି) :

(୧) ଗୁରୁପତ୍ନୀ (୨) ରାଜପତ୍ନୀ (୩) ସାବତ-ମା (୪) ଜେଠେଇ (୫) ଖୁଡୀ (୬) ମାଇଁ (୭) ମାଉସୀ (୮) ପିଉସୀ (୯) ଦେଢ଼ଶାଶୁ (ସ୍ତ୍ରୀର ବଡଭଉଣୀ) (୧୦) ଝିଅ (୧୧) ଭାଇବୋହୂ (୧୨) ଝିଆରୀ (୧୩) ପୁତ୍ରବଧୂ (୧୪) ଶାଶୁ (୧୫) ଗର୍ଭବତୀ ସ୍ତ୍ରୀ (୧୬) ଭଉଣୀ (୧୭) ଭାଣିଜି (୧୮) ଶିଷ୍ୟା (୧୯) ଶିଷ୍ୟପତ୍ନୀ (୨୦) ଭଣଜା ବୋହୂ (୨୧) ପୁତୁରା ବୋହୂ ।

(୪୪୦) କୁଆ ଦୁଇ ଆଖିରେ ଚାହିଁଲା ପରି ଦେଖାଯାଉ ଥିଲେ ମଧ୍ୟ ସେ ଯେପରି, ଗୋଟିଏ ଆଖିରେ ଚାହେଁ, ସେହିପରି ଦୁଇଜଣ ଶତ୍ରୁଙ୍କ ନିକଟରେ ଆତ୍ମ-

ସମର୍ପଣ କଲାପରି ବାହାରକୁ ଦେଖାଇ ଜଣକ ସହିତ ସନ୍ଧି ଓ ଆଉଜଣକ ସହିତ ସୁବିଧା ସୁଯୋଗ ଉଣ୍ଡି ଯୁଦ୍ଧକରି ପ୍ରତିଶୋଧ ନିଆଯାଇଥାଏ ।

**(୪୪୧) ରାଜାଙ୍କର ଅଧୀନସ୍ଥ ମନ୍ତ୍ରୀ ଏବଂ କର୍ମଚାରୀବର୍ଗ**

(କ) ରାଜାଙ୍କର ତୁରନ୍ତ ପ୍ରୟୋଜନୀୟ ବିଷୟ କହିବେ ।

(ଖ) ନିଜନିଜର ପ୍ରୟୋଜନୀୟ ବିଷୟ ରାଜାଙ୍କର ପ୍ରିୟ ଓ ହିତକାମୀ ବ୍ୟକ୍ତିଙ୍କ ମାଧ୍ୟମରେ ଓ ସହାୟତାରେ ଜଣାଇବେ ।

(ଗ) ଅନ୍ୟମାନଙ୍କର ପ୍ରୟୋଜନୀୟ ବିଷୟ ଦେଶ ଓ ସମୟକୁ ବିଚାର କରି ଜଣାଇବେ ।

( ମନ୍ତ୍ରୀ ଓ କର୍ମଚାରୀମାନେ ଯାହା ଯାହା କହିବେ ସେ ସବୁ ଧର୍ମ ଓ ଅର୍ଥ ସଂଯୁକ୍ତ ହୋଇଥିବା ଉଚିତ)

(୪୪୨) ରାଜା କୌଣସି କଥା ପଚାରିଲେ କିମ୍ବା ସେ କୌଣସି କଥା ଶୁଣିବାକୁ ଆଗ୍ରହ ଓ ଶ୍ରଦ୍ଧା ପ୍ରକାଶ କରୁଥିବା ଜଣାଗଲେ, ଅଧୀନସ୍ଥ କର୍ମଚାରୀ ରାଜାଙ୍କର ଅନୁମତି ପ୍ରାପ୍ତ ହୋଇ ଗୋପନରେ ତାଙ୍କୁ :

(କ) ପ୍ରିୟ ଓ ହିତବାକ୍ୟ କହିବେ ।

(ଖ) ଅହିତ ପ୍ରିୟବାକ୍ୟ କହିବେ ନାହିଁ ।

(ଗ) ଅପ୍ରିୟ ହେଲେ ମଧ ହିତବାକ୍ୟ କହିବେ ।

(୪୪୩) ରାଜା ଅପ୍ରିୟ ହିତବାକ୍ୟ ଶୁଣିବେ ନାହିଁ ବୋଲି ମନେକଲେ ଅଧୀନସ୍ଥ କର୍ମଚାରୀ ଉତ୍ତର ନଦେଇ ଚୁପ ତଥା ତୁନି ହୋଇ ରହିବେ । ରାଜାଙ୍କର ଦୋଷ, ଦୁର୍ବଳତା ବା ଭୁଲ ସମ୍ପର୍କରେ ବର୍ଣ୍ଣନା କରିବେ ନାହିଁ ।

(୪୪୪) ରାଜା ଯେଉଁ ବିଷୟରେ ହସିବେ କର୍ମଚାରୀ ମଧ କାଠପରି ନିର୍ବିକାର ନ ହୋଇ ହସିବେ । (କିନ୍ତୁ ଅଟ୍ଟହାସ୍ୟ ବର୍ଜନ କରିବେ )

(୪୪୫) କୌଣସି ଭୟାନକ ସମ୍ବାଦ ରାଜାଙ୍କୁ ଶୁଣାଇବାକୁ ହେଲେ, କର୍ମଚାରୀ ନିଜେ ନ କହି ପରଦ୍ୱାରା, ଉକ୍ତ ସମ୍ବାଦ ରାଜାଙ୍କୁ ଶୁଣାଇବେ ଏବଂ କର୍ମଚାରୀଙ୍କର

ନିଜ ଉପରେ କୌଣସି ଭୟାନକ ବିଷୟ ଉପସ୍ଥିତ ହେଲେ , ସେ ସର୍ବଂସହା ପୃଥିବୀପରି ସମସ୍ତ ସହ୍ୟ କରିବେ ।

(୪୪୬) ନିଆଁ ସହିତ ଖେଳ କଲାପରି ରାଜସେବାକୁ ବିଚାର କରି କର୍ମଚାରୀମାନେ ସର୍ବଦା ଜାଗ୍ରତ ରହିବେ ।

(୪୪୭) ଉପରଲିଖିତ ନିୟମର ଅନୁବର୍ତ୍ତୀ ହୋଇ ନ ପାରିଲେ କର୍ମଚାରୀ ଯେତେ ଦକ୍ଷ ହେଲେ ମଧ ରାଜାଙ୍କର ଅପ୍ରିୟ ହୋଇପଡ଼ନ୍ତି । ଯେଉଁମାନଙ୍କର ରାଜାଙ୍କ ପ୍ରତି ମନ ଉପଯୋଗୀ ଅନୁବର୍ତ୍ତୀତା ପ୍ରକାଶ ପାଏ ସେମାନେ ଅନର୍ଥକାରୀ ହେଲେ ମଧ ରାଜାଙ୍କର ପ୍ରିୟପାତ୍ର ହେବାର ଦେଖାଯାଏ ।

(୪୪୮) ବିଜୟାଭିଳାଷୀ ରାଜା, ନିଜର କାର୍ଯ୍ୟ ସମ୍ପର୍କରେ ଅନ୍ୟମାନଙ୍କୁ କଦାପି ଜାଣିବାକୁ ଦେବା ଉଚିତନୁହେଁ । ତଥାପି କାର୍ଯ୍ୟର ଉତ୍କର୍ଷତା ପାଇଁ ରାଜା ତିନିଜଣ କିମ୍ବା ଚାରିଜଣ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ସମସ୍ତ ବିଷୟ ସିଦ୍ଧାନ୍ତ କରିବା ଉଚିତ ।

(କାରଣ ଜଣେ ମନ୍ତ୍ରୀଙ୍କ ସହିତ ମନ୍ତ୍ରଣାକରି କାର୍ଯ୍ୟ କଲେ, କାର୍ଯ୍ୟସଙ୍କଟ ସମୟରେ ବା ମତଭେଦ ହେଲେ, ରାଜା କୌଣସି ସିଦ୍ଧାନ୍ତ କରିପାରନ୍ତି ନାହିଁ । ଏବଂ ଜଣେ ମନ୍ତ୍ରୀ ହେଲେ ସେ ସ୍ୱେଚ୍ଛାଚାରୀ ହୁଅନ୍ତି ଅଥବା ଉଚ୍ଛୃଙ୍ଖଳ ଭାବେ କାର୍ଯ୍ୟ କରିଥାଆନ୍ତି । ପୁଣି ଦୁଇଜଣ ମନ୍ତ୍ରୀ ହେଲେ, ସାଧାରଣତଃ ଏମାନେ ଏକମତ ହୋଇଯିବା ଯଥେଷ୍ଟ ସମ୍ଭାବନା ଥିବାରୁ ଏମାନଙ୍କର ସିଦ୍ଧାନ୍ତ ସଙ୍ଗତ ହେଉ ବା ଅସଙ୍ଗତ ହେଉ ରାଜା ତାହା ଗ୍ରହଣ କରିବାକୁ ବାଧ ହୋଇଥାନ୍ତି । ପୁଣି ଦୁଇଜଣ ମନ୍ତ୍ରୀ ଭିନ୍ନ ଭିନ୍ନ ମତ ପ୍ରକାଶ କଲେ, ମନ୍ତ୍ରଣା ଭ୍ରଷ୍ଟ ହୋଇ ଯାଏ । ତେଣୁ ତିନିଜଣ ବା ଚାରିଜଣ ମନ୍ତ୍ରୀ ମିଳିତଭାବେ କୌଣସି ମନ୍ତ୍ରଣାର ସିଦ୍ଧାନ୍ତ କଲେ କୌଣସି ଦୋଷ ବା ଅନର୍ଥ ଘଟିବାର ସମ୍ଭାବନା ରହେନାହିଁ । ପୁଣି ଯଦି ଚାରିଜଣରୁ ଅଧିକ ମନ୍ତ୍ରୀ ମନ୍ତ୍ରଣା ସକାଶେ ନିଯୁକ୍ତ ହୁଅନ୍ତି ତାହାହେଲେ ମନ୍ତ୍ରଣାର ସିଦ୍ଧାନ୍ତ ଗୁପ୍ତ ରୁହେ ନାହିଁ ।)

(୪୪୯) କଇଁଚ ଯେପରି ଖୋଳ ଭିତରେ ନିଜର ଅଙ୍ଗଗୁଡ଼ିକୁ ସଙ୍କୁଚିତ କରି ରଖେ, ସେହିପରି ରାଜା ନିଜର ବିଚାରକୁ ଗୁପ୍ତ କରି ରଖିବେ ।

(୪୫୦) ନିଜ ଭାର୍ଯ୍ୟା (ପତ୍ନୀ) ଏବଂ ପୁତ୍ର ରାଜାଙ୍କର ପ୍ରଥମ ବିପତ୍ତିକାରୀ ଅଟନ୍ତି; ତାପରେ ନିଜର ବନ୍ଧୁବାନ୍ଧବ; ଓ ଶେଷରେ ଶତ୍ରୁମାନେ ବିପତ୍ତି ଘଟାଇ ଥାଆନ୍ତି । ତେଣୁ ରାଜା ଏ ସମସ୍ତଙ୍କଠାରୁ ନିଜକୁ ସୁରକ୍ଷିତ କରିବେ ।

(୪୫୧) ରାଜପୁତ୍ର ଯଦି ରାଜାଙ୍କ ବିରୋଧ କରନ୍ତି ତେବେ ସେ (ରାଜପୁତ୍ର) ରାଜାଙ୍କର ଏକମାତ୍ର ପ୍ରିୟ ପୁତ୍ର ହୋଇଥିଲେ ମଧ ତାଙ୍କୁ ବନ୍ଧନରେ ରଖିବେ ।

(୪୫୨) ରାଜା ନିଜର (ପତ୍ନୀ) ରାଣୀ ମାନଙ୍କଠାରୁ ସତର୍କ ରହିବା ପାଇଁ, ସେମାନଙ୍କୁ ବାହାର ଲୋକ ଏବଂ ଦାସୀମାନଙ୍କ ସହିତ ମିଶିବାର ସୁଯୋଗ ଦେବେ ନାହିଁ । ଅନ୍ତଃପୁରରୁ ବାହାରକୁ ଓ ବାହାରୁ ଅନ୍ତଃପୁରକୁ ଆସୁଥିବା ପଦାର୍ଥମାନଙ୍କୁ ଉତ୍ତମରୂପେ ପରୀକ୍ଷା କରି ଭିତର ବାହାରକୁ ନେବା ଆଣିବାର ବ୍ୟବସ୍ଥା କରିବେ ।

(୪୫୩) ସନ୍ତାନୋତ୍ପତ୍ତି ସକାଶେ କୌଣସି କନ୍ୟାର ପାଣିଗ୍ରହଣକୁ 'ବିବାହ' କହନ୍ତି । ସାଂସାରିକ ସମସ୍ତ ବ୍ୟବହାର ସାଧାରଣତଃ 'ବିବାହ' ପରେ ହୋଇଥାଏ । ତେଣୁ 'ବିବାହ' ସମସ୍ତ ବ୍ୟବହାରର ମୂଳ କାରଣ ।

(୪୫୪) ସହବାସ ଇଚ୍ଛୁକ ପୁରୁଷ ନିମ୍ନଲିଖିତ ସ୍ତ୍ରୀ ମାନଙ୍କ ସହିତ ସହବାସ କରିବେ ନାହିଁ :-

(କ) ସହବାସ ଅନିଚ୍ଛୁକ ପୁତ୍ରବତୀ ସ୍ତ୍ରୀ

(ଖ) ପୁତ୍ର ପ୍ରାପ୍ତି ପାଇଁ ବ୍ରତ ଉପବାସ କରୁଥିବା ସ୍ତ୍ରୀ ।

(ଗ) ମୃତ ବତ୍ସା ଓ ଋତୁବନ୍ଦ ହୋଇଯାଇଥିବା ବୟସ୍କା ସ୍ତ୍ରୀ ।

(ଘ) କୁଷ୍ଠରୋଗ ହୋଇଥିବା ସ୍ତ୍ରୀ କିମ୍ବା ପାଗଳୀ ସ୍ତ୍ରୀ ।

(ପୁଣି ଏହି ଉପରଲିଖିତ ସ୍ତ୍ରୀମାନେ ସହବାସ ଇଚ୍ଛୁକା ଥିଲେ ମଧ ସହବାସ ଅନିଚ୍ଛୁକ ପୁରୁଷ ମାନଙ୍କ ସହିତ ସହବାସ କରିବେ ନାହିଁ ।)

(କିନ୍ତୁ ପୁତ୍ର ଉତ୍ପାଦନ ସକାଶେ ସ୍ତ୍ରୀ ଇଚ୍ଛାକଲେ କୁଷ୍ଠରୋଗୀ ବା ପାଗଳ ସ୍ୱାମୀ ସହିତ ସହବାସ କରିପାରିବେ)

(୪୫୫) ବିବାହିତା ସ୍ତ୍ରୀ କେଉଁ କ୍ଷେତ୍ରରେ ସ୍ୱାମୀକୁ ତ୍ୟାଗ କରିବ :
ସ୍ୱାମୀ ଯଦି (କ) ଦୁଶ୍ଚରିତ୍ର (ଖ) ନୀଚତାପ୍ରାପ୍ତ

(ଗ) ଦୀର୍ଘପ୍ରବାସୀ (ଘ) ରାଜଯକ୍ଷ୍ମା ରୋଗୀ

(ଙ) ନରହନ୍ତା (ଚ) ପତିତ (ଛ) ନପୁଂସକ ହୁଏ ।

(୪୫୬) ଚୋରିଁ ପୁଅକୁ ସ୍ୱୀକୃତ କରି ଝିଅ ପ୍ରଦାନ କରାଯାଇଥିବା ଯୋଗୁଁ ଝିଅର ପୁଅ ସ୍ୱପୁତ୍ର ତୁଲ୍ୟ ଅଟେ ।

(୪୫୭) ରାଜବର୍ଷ (ରାଜାଙ୍କ ରାଜ୍ୟାଭିଷେକ ଦିନଠାରୁ ଆରମ୍ଭ ହେବା ବର୍ଷ) ତିନି ଭାଗରେ ବିଭକ୍ତ ହୋଇଛି ଯଥା-

ପ୍ରଥମ ଭାଗ - 'ସିଂହ', 'କନ୍ୟା', 'ତୁଳା', 'ବିଛା' - ଏ ଚାରିମାସକୁ ବର୍ଷା ଋତୁ କହନ୍ତି ।

୨ୟ ଭାଗ - 'ଧନୁ', 'ମକର', 'କୁମ୍ଭ', 'ମୀନ', - ଏ ଚାରିମାସକୁ ହେମନ୍ତ ଋତୁ କହନ୍ତି ।

୩ୟ ଭାଗ - 'ମେଷ', 'ବୃଷ', 'ମିଥୁନ', 'କର୍କଟ' - ଏ ଚାରିମାସକୁ ଗ୍ରୀଷ୍ମ ଋତୁ କହନ୍ତି ।

(୪୫୮) ଯେଉଁ ପରିମାଣରେ ବର୍ଷା ହେଲେ ତାହା ଶସ୍ୟ ପକ୍ଷରେ ହିତକର । ସେହି ବର୍ଷା ତିନି ଭାଗରେ ବିଭକ୍ତ ଯଥା-
ଶ୍ରାବଣ, ଭାଦ୍ରବ, ଆଶ୍ୱିନ ଓ କାର୍ତ୍ତିକ ମାସ ମଧ୍ୟରୁ ଶ୍ରାବଣ ଓ କାର୍ତ୍ତିକ ମାସରେ ବର୍ଷାର ପରିମାଣ ତିନିଭାଗରୁ ଏକଭାଗ ବର୍ଷା ଏବଂ ଭାଦ୍ରବ ଓ ଆଶ୍ୱିନରେ ବର୍ଷାର ପରିମାଣ ତିନିଭାଗରୁ ଦୁଇଭାଗ ବର୍ଷା ହେଲେ ତାହାକୁ ଉତ୍ତମ ବର୍ଷା କୁହାଯାଏ । (ଅର୍ଥାତ୍--ଏଥିରେ ୨୧ଦିନ ଟାଣବର୍ଷା, ୮୦ଦିନ ସାଧାରଣ ବର୍ଷା, ୬୦ଦିନ ଖରାରେ ଝିରିଝିରି ବର୍ଷା ହୋଇଥାଏ । ଏହି ବର୍ଷା ଲୋକ-ହିତକାରୀ ଅଟେ । ଏପରି ବର୍ଷା ହେବା ସମ୍ବତ୍ସରକୁ 'ଶୋଭନ ସମ୍ବତ୍ସର' କହନ୍ତି ।)

(୪୫୯) ଧର୍ମ, ଅର୍ଥ, କାମ ଓ ମୋକ୍ଷ ବିଷୟକ ଉପଦେଶ ସମନ୍ୱିତ ଧାରାବାହିକ ପୂର୍ବ ବୃତ୍ତାନ୍ତ କଥନକୁ ଶାସ୍ତ୍ର ଅନୁଯାୟୀ 'ଇତିହାସ' କହନ୍ତି ।

(୪୬୦) ଧର୍ମର ମର୍ମ ହେଉଛି (ବେଦବର୍ଣ୍ଣିତ) :

(କ) ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର (ଚାରିବର୍ଣ୍ଣ)।

(ଖ) ବ୍ରହ୍ମଚାରୀ, ଗୃହୀ, ବାନପ୍ରସ୍ଥ, ସନ୍ନ୍ୟାସୀ (ଚାରିପ୍ରକାର ଆଶ୍ରମୀ) ମାନଙ୍କର ବ୍ୟବସ୍ଥା କରିବା। ଅର୍ଥାତ୍ ଏହି 'ଚାରିବର୍ଣ୍ଣ' ଓ 'ଚାରିପ୍ରକାର ଆଶ୍ରମୀ' ସ୍ୱଧର୍ମ ଅନୁସାରେ କର୍ତ୍ତବ୍ୟ ପାଳନକରି ପରିଚାଳିତ ହେଲେ ମନୁଷ୍ୟ ଇହକାଳ ଓ ପରକାଳ ସୁଖ ଶାନ୍ତିରେ ଅତିବାହିତ ହୁଏ। ଏହାର ବ୍ୟତିକ୍ରମ ହେଉଛି ସ୍ୱଧର୍ମର ବ୍ୟଭିଚାର। ଫଳରେ ସମାଜର ପତନ ଘଟି, ବିନାଶ ପ୍ରାପ୍ତ ହୁଏ। ତେଣୁ ଶାସକ ପ୍ରଜାମାନଙ୍କୁ ସ୍ୱଧର୍ମ ଅନୁସାରେ କର୍ତ୍ତବ୍ୟ କରିବା ପାଇଁ ପ୍ରବର୍ତ୍ତାଇବେ ଏବଂ ତତ୍‌ସଙ୍ଗେ ସଙ୍ଗେ ସ୍ୱଧର୍ମର ଅପଚୟକୁ କଦାପି ପ୍ରଶ୍ରୟ ଦେବେ ନାହିଁ।

(୪୬୧) ଛ'ପ୍ରକାର ଶତ୍ରୁର ଜୟକୁ 'ଇନ୍ଦ୍ରିୟ ଜୟ' କହନ୍ତି :-

(କ) କାମ (ପରସ୍ତ୍ରୀ ଅଭିଳାଷ)

(ଖ) କ୍ରୋଧ (ହିଂସାପ୍ରବର୍ତ୍ତକ ବିକାର)

(ଗ) ଲୋଭ (ପରଦ୍ରବ୍ୟରେ ଇଚ୍ଛା)

(ଘ) ମାନ (ନିଜକୁ ସର୍ବଦା ବଡ଼ ବୋଲି ଭାବିବା)

(ଙ) ମଦ (ଧନ, ଜନ, ଯୌବନ, ବିଦ୍ୟାରୁ ଜାତହେବା ଗର୍ବ)

(ଚ) ହର୍ଷ (ଇଚ୍ଛାକୃତ ଦ୍ରବ୍ୟ ପ୍ରାପ୍ତି ଓ ତାର ଉପଭୋଗ ଜନିତ ଅତ୍ୟଧିକ ପ୍ରୀତି)

(୪୬୨) ମନୁଷ୍ୟର ଇନ୍ଦ୍ରିୟ ଗଣ ଓ ସେମାନଙ୍କର ସ୍ୱଧର୍ମ :

(କ) କର୍ଣ୍ଣ (କାନ) - ସ୍ୱଧର୍ମ ହେଲା - ଶବ୍ଦ

(ଖ) ଚର୍ମ (ଚମ) - ସ୍ୱଧର୍ମ ହେଲା - ସ୍ପର୍ଶ

(ଗ) ଚକ୍ଷୁ (ଆଖି) - ସ୍ୱଧର୍ମ ହେଲା - ରୂପ

(ଘ) ଜିହ୍ୱା (ଜିଭ) - ସ୍ୱଧର୍ମ ହେଲା - ରସ

(ଙ) ନାସିକା (ନାକ) - ସ୍ୱଧର୍ମ ହେଲା - ଗନ୍ଧ

(ଚ) ଲିଙ୍ଗ (ପୁରୁଷ ଇନ୍ଦ୍ରିୟ) - ସ୍ୱଧର୍ମ ହେଲା - ମୈଥୁନ ।

ଏମାନଙ୍କ ଦ୍ୱାରା ଉତ୍ପନ୍ନ କୁତ୍ସିତ ପ୍ରବୃତ୍ତିର ଦମନକୁ ମଧ୍ୟ 'ଇନ୍ଦ୍ରିୟ ଜୟ' କହନ୍ତି ।

(୪୬୩) ବ୍ୟବହାର ଧର୍ମ ଠାରୁ ବଡ ।

(୪୬୪) ସାଧାରଣତଃ ମନୁଷ୍ୟଠାରେ ରୂପ ଅନୁସାରେ ଗୁଣ ଦେଖାଦେଇଥାଏ ।

(୪୬୫) ଦୁଷ୍ଟ ଲୋକ ନିଜ ହୃଦୟ କଥାଟି ଗୋପନ ରଖି ଭଲ କଥା କହିଥାଏ ।

(୪୬୬) ଯାହା ଦୈବର ଆୟତ୍ତାଧୀନ ତା'ପ୍ରତି ଅନୁଶୋଚନା କରିବା ଅନୁଚିତ ।

(୪୬୭) ଦାନଦ୍ୱାରା ସଧାରଣ ଲୋକ ତ ଦୂରର କଥା ଶତ୍ରୁ ମଧ୍ୟ ବଶୀଭୂତ ହୋଇଥାଏ ।

(୪୬୮) ଦାନ ସମାନ କୌଣସି ବଶୀକରଣ ନାହିଁ ।

(୪୬୯) (କ) ସ୍ତ୍ରୀ ବନ୍ଧନରୁ ମୁକ୍ତିଲାଭ କରିବା ନିତାନ୍ତ କଷ୍ଟକର ବ୍ୟାପାର ।

(ଖ) ସ୍ତ୍ରୀଜାତି ଘିଅ ମାଠିଆ ଓ ପୁରୁଷ ଜଳନ୍ତା ଅଙ୍ଗାର ପରି; ଏ ଦୁହିଁକି ଏକତ୍ର ରଖିବ ନାହିଁ।

(ଗ) ପର ସ୍ତ୍ରୀ ଅଭିଗମନ କରନାହିଁ ।

(ଘ) ସ୍ତ୍ରୀମାନଙ୍କର ମନ ଅତ୍ୟନ୍ତ ଚଞ୍ଚଳ ।

(ଙ) ସ୍ତ୍ରୀମାନଙ୍କର ଅଳଙ୍କାର ହେଉଛି ସୁହାଗ ।

(ଚ) ଅଶୁଭ କର୍ମକୁ ଚାହୁଁନଥିବା ପୁରୁଷ, ସ୍ତ୍ରୀମାନଙ୍କଠାରେ ଆସକ୍ତି ହୁଅନ୍ତି ନାହିଁ।

(ଛ) କୁଳଭୂଷଣ ସ୍ତ୍ରୀ ରତ୍ନଠାରୁ ବଳି ରତ୍ନ ନାହିଁ ।

(ଜ) ପୁତ୍ର ପ୍ରାପ୍ତି ନିମିତ୍ତ ସ୍ତ୍ରୀ ଗ୍ରହଣ କରାଯାଇଥାଏ ।

(୪୭୦) ମିଳୁଥିବା ସୁଖକୁ ପରିତ୍ୟାଗ କରିବା ଠିକ୍ ନୁହେଁ ।

(୪୭୧) ଦାନବୀର ସବୁଠାରୁ ବଳି ବଡ ବୀର ।

(୪୭୨) ଅନ୍ନଦାନ ଦ୍ୱାରା ଭୃଣ ହତ୍ୟା ପାପ ପ୍ରକ୍ଷାଳିତ ହୋଇଥାଏ ।

(୪୭୩) ପ୍ରିୟ କଥା କହୁଥିବା ବ୍ୟକ୍ତିର ଶତ୍ରୁ ନ ଥାନ୍ତି ।

(୪୭୪) ନିଜ କର୍ମ ଅନୁସାରେ ବ୍ୟକ୍ତି ଦୁଃଖଲାଭ କରିଥାଏ ।

(୪୭୫) ଯେପରି ପାଠ ସେପରି ବୁଦ୍ଧି ।

(୪୭୬) କୁଳ ଯେପରି, ବ୍ୟକ୍ତିର ଆଚାର ସେହିପରି ହୋଇଥାଏ ।

(୪୭୭) ମଞ୍ଜି ଯେପରି, ଫଳର ଉତ୍ପତ୍ତି ମଧ ସେହିପରି ହୋଇଥାଏ

(୪୭୮) ପିତା, ମାତା, ସନ୍ତାନ ତଥା ପିଲାର ମଞ୍ଜି

(୪୭୯) ପୁତ୍ରଲାଭ ହେଉଛି ସବୁଠାରୁ ବଡ଼ ଲାଭ ।

(୪୮୦) ଦୁର୍ଗତି ସମୟରେ ପିତାଙ୍କୁ ଯେଉଁ ପୁତ୍ର ରକ୍ଷା କରିଥାଏ ସେ ହେଉଛି ସୁପୁତ୍ର ଅର୍ଥାତ୍ ପ୍ରକୃତ ପୁତ୍ର ।

(୪୮୧) ଋଣ, ଶତ୍ରୁ ଓ ବ୍ୟାଧିକୁ ସମ୍ପୂର୍ଣ୍ଣ ଶେଷ କରିଦେବା ଉଚିତ ।

(୪୮୨) ସ୍ନେହୀ ବ୍ୟକ୍ତିଙ୍କ କୋପ କ୍ଷଣସ୍ଥାୟୀ ।

(୪୮୩) ସ୍ୱଭାବ ପରିବର୍ତ୍ତନ ବଡ କଷ୍ଟକର ।

(୪୮୪) ଆୟୁ, ବିତ୍ତ, ଗୃହଚ୍ଛିଦ୍ର, ମନ୍ତ୍ର, ମୈଥୁନ, ଔଷଧ, ଅପମାନ, ତପ, ଦାନ, ଆପଣାର ଏହି ନଅଟି ବିଷୟ ବାହାରେ ପ୍ରକାଶ କରିବ ନାହିଁ ।

(୪୮୫) ଲିଭିଲା ଦୀପରେ ତେଲ ଦେବା, ଚୋର ଚୋରିକରି ପଳାଇଯିବା ପରେ ସାବଧାନ ହେବା, ବୃଦ୍ଧ ବୟସରେ ସ୍ତ୍ରୀ ସଙ୍ଗମ କରିବା, ପାଣି ବୋହିଯିବା ପରେ ବନ୍ଧ ପକାଇବା--ଏ ଗୁଡିକ ବୃଥା ପରିଶ୍ରମ ।

(୪୮୬) ଗୁଣୀ ଲୋକ ଗର୍ବିତ ହୁଏ ନାହିଁ, କିନ୍ତୁ ନିର୍ଗୁଣ ଲୋକ ଆପଣାର ସାମାନ୍ୟ ଗୁଣରେ ଗର୍ବିତ ହୁଏ ।

(୪୮୭) ମହତ୍ ଲୋକ ନୀଚ ସ୍ଥାନରେ ଥିଲେ ମଧ ତା ମହତ୍ତ୍ୱ ବଜାୟ ରହେ, ନୀଚ ଲୋକ ଉଚ୍ଚ ସ୍ଥାନରେ ଥିଲେ ହେଁ ତାହାର ନୀଚତା ଲୋପ ହୁଏ ନାହିଁ । (ଯେପରି କାଚ ମୁଣ୍ଡରେ ପିନ୍ଧାଗଲେ ମଧ ମୂଲ୍ୟହୀନ, ମଣି ଗୋଡରେ ପିନ୍ଧିଲେ ସୁଦ୍ଧା ମୂଲ୍ୟବାନ୍)

(୪୮୮) ବିଦ୍ୱାନ୍ ଲୋକ ସବୁଠାରେ ପୂଜା ପାଏ, ରାଜା କେବଳ ନିଜ ଦେଶରେ ପୂଜାପାଏ ।

(୪୮୯) ଆପଣାକୁ ସର୍ବଦା ରକ୍ଷା କରିବ, ଆପଦ ପାଇ ଧନ ସଂଚୟକରି ରଖିବ ।

(୪୯୦) ପଣ୍ଡିତମାନେ ଗୁଣର ଆଦର କରିଥାନ୍ତି, ମାତ୍ର ମୂର୍ଖମାନେ କେବଳ ଦୋଷ ଦୁର୍ଗୁଣ ଦେଖନ୍ତି ।

(୪୯୧) ସର୍ପ ଭୟଙ୍କର ମାତ୍ର ଖଳ ପ୍ରକୃତିର ଲୋକ ସର୍ପଠାରୁ ଅଧିକ ଭୟଙ୍କର; କାରଣ ସର୍ପକୁ ମନ୍ତ୍ର ଓ ଔଷଧ ଦ୍ୱାରା ବଶୀଭୂତ କରାଯାଇପାରେ ମାତ୍ର ଖଳ ପ୍ରକୃତିର ଲୋକକୁ ବଶ କରିବା ସମ୍ଭବ ନୁହେଁ ।

(୪୯୨) ବହିରେ ଥିବା ବିଦ୍ୟା, ପର ହାତରେ ଥିବା ଧନ ହାସଲ ନ କରିବା ପର୍ଯ୍ୟନ୍ତ କାମରେ ଆସେ ନାହିଁ ।

(୪୯୩) ଉତ୍ତମ ମନ୍ତ୍ରୀଙ୍କ ଗୁଣାବଳୀ :

| | | | |
|---|---|---|---|
| (୧) | ସ୍ୱଦେଶୀ | (୨) | କୁଳୀନ ବଂଶଜାତ |
| (୩) | ପ୍ରଭାବ ଶାଳୀ | (୪) | ସମସ୍ତ କଳା ବିଦ୍ୟାରେ ପ୍ରବୀଣ |
| (୫) | ଦୂରଦର୍ଶୀତା | (୬) | ଅସାଧାରଣ ବୁଦ୍ଧିସମ୍ପନ୍ନ ପଣ୍ଡିତ |
| (୭) | ପ୍ରଚଣ୍ଡ ସ୍ମୃତିଶକ୍ତିବାନ | (୮) | ଦକ୍ଷ |
| (୯) | ବାଗ୍ମୀ (ବାକ୍‌ପଟୁ) | (୧୦) | ଦକ୍ଷତାସମ୍ପନ୍ନ |
| (୧୧) | ବୃଦ୍ଧିମାନ | (୧୨) | ଉତ୍ସାହୀ |
| (୧୩) | ମର୍ଯ୍ୟାଦା ସମ୍ପନ୍ନ | (୧୪) | କଷ୍ଟସହିଷ୍ଣୁ |
| (୧୫) | ଶୁଦ୍ଧ ଚରିତ୍ରବାନ | (୧୬) | ଅମାୟିକ ପ୍ରକୃତି |
| (୧୭) | ଦୃଢ଼ ଭକ୍ତିମାନ୍ | (୧୮) | ସଦ୍‌ସ୍ୱଭାବ |
| (୧୯) | ବଳଶାଳୀ | (୨୦) | ସ୍ୱାସ୍ଥ୍ୟବାନ୍ |
| (୨୧) | ସାହସ ତଥା ବୀରତ୍ୱ | (୨୨) | ଦୀର୍ଘସୂତ୍ରିତା ବିବର୍ଜିତ |
| (୨୩) | ଚଞ୍ଚଳତା ବର୍ଜିତ ସ୍ଥିରସ୍ୱଭାବ | (୨୪) | ସ୍ନେହଶୀଳ |

(୨୫) ଶତ୍ରୁତା ଓ ବିଦ୍ୱେଶ ଭାବ ବିବର୍ଜିତ

(ଏହି ଗୁଣାବଳୀର ଚତୁର୍ଥାଂଶ ଗୁଣହୀନ ମନ୍ତ୍ରୀକୁ 'ମଧ୍ୟମମନ୍ତ୍ରୀ' କୁହାଯାଏ । ପୁଣି ଏହି ଗୁଣାବଳୀର ଅର୍ଦ୍ଧାଂଶ ଗୁଣହୀନ ମନ୍ତ୍ରୀକୁ 'ଅଧମମନ୍ତ୍ରୀ' କୁହାଯାଏ)

## ଚାଣକ୍ୟ ନୀତିରେ କିଏ କାହାଠାରୁ ଶ୍ରେୟସ୍କର

(୧) ମିତ୍ରଲାଭ ଅପେକ୍ଷା ଅର୍ଥ ଲାଭ ଶ୍ରେୟସ୍କର ।

(୨) ଅର୍ଥଲାଭ ଅପେକ୍ଷା ଭୂମିଲାଭ ଶ୍ରେୟସ୍କର ।
(କାରଣ ଭୂମିଲାଭରୁ ମିତ୍ରଲାଭ ଓ ଅର୍ଥଲାଭ ଆପେ ଆପେ ହୋଇଥାଏ) ।

(୩) ମହା ଧନବାନ ଅଥଚ ଅନିତ୍ୟ ମିତ୍ରଠାରୁ ସ୍ୱଳ୍ପଧନ ଯୁକ୍ତ ଅଥଚ ନିତ୍ୟ ମିତ୍ର ଅଧିକତର ଶ୍ରେୟସ୍କର ଅଟେ ।
(କାରଣ ମହାଧନବାନ ଅନିତ୍ୟ ମିତ୍ର ଅତ୍ୟଧିକ ଧନୀ ହୋଇଥିବାରୁ ମିତ୍ରଙ୍କର ଉପକାର ସାଧନ କଲେ ନିଜର ଧନ ହାନୀ ଘଟିବା ଭୟରେ ମିତ୍ରତା ତ୍ୟାଗ କରନ୍ତି, ଅଥବା ଉପକାର କରି ତତ୍‌ପରିବର୍ତ୍ତେ ନିଜେ ଅଧିକ ଧନ ପାଇବାକୁ ଚେଷ୍ଟାକରନ୍ତି । କିନ୍ତୁ ସ୍ୱଳ୍ପ ଧନଶାଳୀ ନିତ୍ୟ ମିତ୍ର ସର୍ବଦା ଅଳ୍ପ ଅଳ୍ପ ଉପକାର କରି ଅନେକ କାଳ ପର୍ଯ୍ୟନ୍ତ ଉପକାର ସାଧନ କରିଥାନ୍ତି) ।

(୪) ଭୂମିଦ୍ୱାରା ଉପକାରୀ ମିତ୍ର, ଅର୍ଥ ବା ସୁନା ଦ୍ୱାରା ଉପକାରକ ମିତ୍ର ଠାରୁ ଶ୍ରେୟସ୍କର । (କାରଣ ଭୂମି ଲାଭ କରିପାରିଲେ ମିତ୍ର ଓ ଅର୍ଥ ଓ ସୁନା ଲାଭ ସୁଗମ ହୋଇଥାଏ)।

(୫) ଅର୍ଥ ବଳ ଦ୍ୱାରା ଉପକାର ସାଧନକାରୀ ମିତ୍ର, ଲୋକବଳ ଦ୍ୱାରା ଉପକାର ସାଧନକାରୀ ମିତ୍ର ଠାରୁ ଶ୍ରେୟସ୍କର ।
(କାରଣ- ଅର୍ଥ, ସର୍ବତ୍ର ନେବା ଆଣିବା କରିହୁଏ ବୋଲି ଏହା ହାତରେ ଥିଲେ ସର୍ବଦା ଉପଯୋଗକ୍ଷମ ହୁଏ । ମାତ୍ର ଲୋକବଳ କେବେ କେବେ ଆବଶ୍ୟକ ମତେ ଉପଯୋଗରେ ଆସିଥାଏ । ଅର୍ଥ ଦ୍ୱାରା କାର୍ଯ୍ୟକାରୀ ବିଷୟ ଏପରିକି ଲୋକ ବଳ ମଧ୍ୟ ସଂଗୃହୀତ ହୋଇଥାଏ, କିନ୍ତୁ କେବଳ ଲୋକବଳ ଦ୍ୱାରା ଅର୍ଥ ଓ ଅନ୍ୟାନ୍ୟ ବିଷୟ ଆହରଣ କରିବା ଦୁଷ୍କର ହୋଇଥାଏ ।)

(୬) ଦୁଇ ଜଣ ମିତ୍ର ସମାନ ଭାବେ ଆର୍ଥିକ ସାହାଯ୍ୟ ଦେବାକୁ ଚାହିଁଲେ, ସେ ଦୁହିଁଙ୍କ ମଧ୍ୟରୁ ଯାହାଙ୍କଠାରୁ ପ୍ରଚୁର ଅର୍ଥ ମିଳିବାର ସମ୍ଭାବନା, ଅଳ୍ପ ପ୍ରୟାସରେ କାର୍ଯ୍ୟ ସାଧନର କୁଶଳତା ଓ ସତତ ଉପକାର କରିବା ଲକ୍ଷଣ ଥିବ ସେହି ମିତ୍ର ଅନ୍ୟ ମିତ୍ରଠାରୁ ଶ୍ରେୟସ୍କର ।

(୭) ଦୁଇଜଣ ମିତ୍ର ସମଭାବରେ ଲୋକ ବଳଦ୍ୱାରା ସାହାଯ୍ୟ କରିବାକୁ ଚାହିଁଲେ, ସେ ଦୁହିଁଙ୍କ ମଧ୍ୟରୁ ଯାହାଙ୍କର ବିକ୍ରମ (ଶୌର୍ଯ୍ୟ), କ୍ଲେଶ-ସହନଶୀଳତା, ଅନୁରାଗ ଓ ଅନୁଚର ବର୍ଗଙ୍କ ସହଯୋଗ ପ୍ରଭୃତି ସମସ୍ତ ବଳ ଦେଇ ସାହାଯ୍ୟ କରିବାର ସମର୍ଥ ଅଛି, ସେ ଲୋକବଳ ସାହାଯ୍ୟକାରୀ ମିତ୍ରବର୍ଗଠାରୁ ଶ୍ରେୟସ୍କର ।

(୮) ମିତ୍ରର ବିପଦ ସମୟରେ 'ଅବଶ୍ୟ ମିତ୍ର' ଠାରୁ 'ବଶ୍ୟ ମିତ୍ର' ଅଧିକ ଶ୍ରେୟସ୍କର । (କାରଣ, ମିତ୍ରର ସ୍ୱଭାବ ହେଲା ଉପକାର କରିବା । ତେଣୁ ଉପକାର ସମୟରେ ହିଁ ମିତ୍ରର ଆବଶ୍ୟକତା ଥାଏ, ଅନ୍ୟ ସମୟରେ ନୁହେଁ । ଏହି ପରିପ୍ରେକ୍ଷୀରେ 'ବଶ୍ୟ ମିତ୍ର' ଅନିତ୍ୟ ହେଲେ ମଧ ଯେତେ ସମୟ ଉପକାର କରନ୍ତି, ସେତେ ସମୟ ପର୍ଯ୍ୟନ୍ତ ମିତ୍ର ଭାବରେ ହିଁ ରହିଥାନ୍ତି) ।

(୯) ବହୁ ପ୍ରଯତ୍ନରେ ଉତ୍‌ଥାନଶୀଳ ପ୍ରବଳମିତ୍ରଠାରୁ ଅଳ୍ପ ପ୍ରଯତ୍ନରେ ଅର୍ଥାତ୍ ଶୀଘ୍ର ଉତ୍‌ଥାନଶୀଳ ଦୁର୍ବଳ ମିତ୍ର ଅଧିକ ଶ୍ରେୟସ୍କର ।
(କାରଣ- ଅଳ୍ପ ଶକ୍ତି ସମ୍ପନ୍ନ ମିତ୍ର, କାର୍ଯ୍ୟକାଳ ଉପସ୍ଥିତ ହେବା ମାତ୍ରେ କାର୍ଯ୍ୟ ସାଧନ ପାଇଁ ତତ୍‌ପର ହୁଅନ୍ତି । ପୁଣି ସେ ଦୁର୍ବଳଥିବା ଯୋଗୁଁ ତାଙ୍କୁ (ମିତ୍ରଙ୍କୁ) ଯେପରି ଇଚ୍ଛା ସେପରି କାର୍ଯ୍ୟରେ ବ୍ୟବହାର କରାଯାଇ ପାରେ । ମାତ୍ର ପ୍ରବଳ ମିତ୍ର ତାଙ୍କର ପ୍ରକୃଷ୍ଟ ଭୌମତ୍ୱ ପାଇଁ, ସେପରି ମନଂମୁତାବକ ଉପକାରରେ ଆସନ୍ତି ନାହିଁ) ।

(୧୦) (କ) ବିଦେଶୀ ଶାସକର ଶାସନ, ଦୁଇଜଣ ଶାସକ ରାଜା ଥିବା ରାଜ୍ୟ ଶାସନଠାରୁ ଅଧିକତର କଷ୍ଟ ଦାୟକ ।
(କାରଣ- ଦୁଇଜଣ ରାଜା ଥିବା ରାଜ୍ୟ, ପିତା, ପୁତ୍ର, ବା ଭାଇ ଭାଇ ମଧ୍ୟରେ କଳହ ଯୋଗୁଁ ସୃଷ୍ଟି ହୋଇଥାଏ । ଉଭୟ ରାଜା ଯୋଗ୍ୟତା ସମ୍ପନ୍ନ ହୋଇଥିବାରୁ ସେମାନଙ୍କର ଅଧିନସ୍ଥ, ମନ୍ତ୍ରୀ ତଥା ଅନ୍ୟାନ୍ୟ ରାଜ କର୍ମଚାରୀଗଣ ଅଧିନତା ସ୍ୱୀକାର କରି ପ୍ରଜା କଲ୍ୟାଣ ଦାୟକ ହୁଅନ୍ତି । କିନ୍ତୁ

ବିଦେଶୀ ଶାସକ, ରାଜ୍ୟ ଜୟ କରି ନିଜରବୋଲି ଭାବିପାରେ ନାହିଁ । ଫଳରେ ଜୋରିମାନା ଓ ଅତିରିକ୍ତ ରାଜସ୍ୱ ଆଦାୟ କରି ପ୍ରଜାମାନଙ୍କୁ ଶୋଷଣ କରିଥାଏ, ଏଥିରେ ପ୍ରଜାମାନେ ବିରକ୍ତି ପ୍ରକାଶ କଲେ, ରାଜ୍ୟର ସର୍ବସ୍ୱ ଅପହରଣ କରି ରାଜ୍ୟ ପରିତ୍ୟାଗ କରି ପଳାୟନ କରେ) ।

(ଖ) ଶାସ୍ତ୍ରଜ୍ଞାନ ବିହୀନ ରାଜାଙ୍କଠାରୁ ଯେଉଁ ରାଜା 'ଚଳିତ ଶାସ୍ତ୍ର' ଜାଣି ମଧ୍ୟ ତଦନୁସାରେ ଆଚରଣ କରନ୍ତି ନାହଁ, ସେପରି ରାଜା ଅଧିକତର କ୍ଷତିକାରକ ହୋଇଥାନ୍ତି ।

(କାରଣ- ଶାସ୍ତ୍ର ଜ୍ଞାନ ବିହୀନ ରାଜା, ମନ୍ତ୍ରୀ ଓ ପଦସ୍ଥ କର୍ମଚାରୀମାନଙ୍କ ସହାୟତାରେ ହିତକର ବିଷୟରେ ପରିଚାଳିତ ହୋଇଥାନ୍ତି କିନ୍ତୁ ଯେଉଁ ରାଜା 'ଚଳିତ ଶାସ୍ତ୍ର' ଜାଣିମଧ୍ୟ ତଦନୁସାରେ କାର୍ଯ୍ୟ ନ କରିବା ଦୋଷରୁ ଅନ୍ୟାୟ କରନ୍ତି, ସେ ଉଭୟ ନିଜ ରାଜ୍ୟକୁ ଓ ନିଜକୁ ନଷ୍ଟ କରିଥାନ୍ତି ।)

(ଗ) ବ୍ୟାଧିଗ୍ରସ୍ତ ରାଜା ଅପେକ୍ଷା ନୂତନ ରାଜା ଅଧିକତର ହାନିକାରକ ।

(କାରଣ- ବ୍ୟାଧିଗ୍ରସ୍ତ ରାଜା ପୂର୍ବ ପ୍ରଚଳିତ ନିୟମରେ ରାଜ୍ୟ ପରିଚାଳନା କରିଥାନ୍ତି କିନ୍ତୁ ନୂତନ ରାଜା ନିଜ ବଳରେ ରାଜ୍ୟକୁ ଅର୍ଜନ କରିଛନ୍ତି ବୋଲି ମନରେ ଗର୍ବ ପୋଷଣକରି ନିରଙ୍କୁଶ ଭାବରେ କାହାର ନିବାରଣ ନମାନି ସ୍ୱଇଚ୍ଛାରେ ରାଜ୍ୟ ପରିଚାଳନା କରନ୍ତି । ପୁଣି ନିଜର ପ୍ରକୃତି ଓ ପ୍ରଜାମାନଙ୍କ ପ୍ରତି ଅଜାତ ସ୍ନେହର ପରବଶ ହୋଇ, ସେ ସହଜରେ ଅନ୍ୟର ଉଚ୍ଛେଦ ସାଧକ ହୁଅନ୍ତି । ଅଥବା ସମବାୟବଦ୍ଧ ରାଜାମାନଙ୍କ ଦ୍ୱାରା ଚାଳିତ ହୋଇ ରାଜ୍ୟର କୌଣସି ପ୍ରତିକାର କରି ନପାରି ସବୁ ସହ୍ୟ କରିଯାନ୍ତି ।)

(୧୧) ଅଳ୍ପ ସମୟ ମଧ୍ୟରେ ଉତ୍ପନ୍ନ ଅଳ୍ପଲାଭଠାରୁ ବହୁ ସମୟ ପରେ ଉତ୍ପନ୍ନ ଅଧିକତର ଲାଭ ଶ୍ରେୟସ୍କର ।

(କାରଣ, ବହୁ ସମୟ ପରେ ଉତ୍ପନ୍ନ ଲାଭ ଯଦି ଧାନର ବିହନ ପରି ହୋଇଥାଏ, ଏବଂ ବିନା ପ୍ରତିବନ୍ଧକରେ ଏହି ଲାଭ ସୁସିଦ୍ଧ ହେବାର ଯୋଗ୍ୟ ହୁଏ, ତାହେଲେ ସେହି ପ୍ରକାର ଲାଭ ହିଁ ଅଧିକ ଶ୍ରେୟସ୍କର ଅଟେ । କିନ୍ତୁ ଏପରି ଲାଭରେ ବହୁତ ବିଘ୍ନ ଘଟିବାର ସମ୍ଭାବନା ଥିଲେ ଅଳ୍ପ ସମୟ ମଧ୍ୟରେ ଉତ୍ପନ୍ନ ଅଳ୍ପ ଲାଭ ହିଁ ଶ୍ରେୟସ୍କର ହୋଇଥାଏ ।

ପୁଣି ଅଳ୍ପ ସମୟ ମଧ୍ୟରେ ଲାଭ ସହସା କାର୍ଯ୍ୟରେ ଲାଗିଯାଇ ପାରେ ବୋଲି ଏହା ଅଧିକତର ଶ୍ରେୟଃ ସାଧକ ହୋଇଥାଏ) ।

(୧୨) (କ) ମନୁଷ୍ୟର 'କୋପ' ଓ 'କାମ' ଉଭୟେ 'ଦୋଷ' ଅଟନ୍ତି । ଗୁଣ ନୁହଁନ୍ତି । କାରଣ, 'କୋପ' ଯୁକ୍ତ ମନୁଷ୍ୟକୁ କେହିହେଲେ ଅନୁରାଗ ଚକ୍ଷୁରେ ଦେଖନ୍ତି ନାହିଁ ।

'କାମ' ଯୁକ୍ତ ମନୁଷ୍ୟକୁ ନିନ୍ଦା ପ୍ରାପ୍ତି, ଦ୍ରବ୍ୟନାଶ, ହୋଇଥାଏ ଏବଂ ତାକୁ ଅନର୍ଥକାରୀ (ଯଥା- ଚୋର, ଜୁଆଡି, ଶିକାରୀ, ପ୍ରଭୃତି)ମାନଙ୍କ ସହିତ ସଂସର୍ଗ କରିବାକୁ ହୁଏ ।

(ଖ) କୋପ ଜନିତ ଦୋଷ ଓ କାମ ଜନିତ ଦୋଷ ମଧ୍ୟରୁ କୋପ ଜନିତ ଦୋଷ ଗୁରୁତର ।

(ଅର୍ଥାତ୍ 'କାମ' ଅପେକ୍ଷା 'କୋପ' ଗୁରୁତର ବୋଲି ବିବେଚିତ ହୁଏ)

(କାରଣ- କୋପ ସବୁ ବିଷୟରେ ଉତ୍ପନ୍ନ ହୋଇପାରେ । ଏହା ସାର୍ବତ୍ରିକ ଦୋଷ । ରାଜା-ମାନେ କୋପର ବଶବର୍ତ୍ତୀ ହେଲେ ମନ୍ତ୍ରୀ ଓ ପ୍ରଜାବର୍ଗଙ୍କ କୋପ ଦ୍ୱାରା ବିନାଶ ପ୍ରାପ୍ତ ହୋଇଥାନ୍ତି । କିନ୍ତୁ ରାଜାମାନେ କାମର ବଶବର୍ତ୍ତୀ ହୋଇ ଅର୍ଥ ହାନି ଓ ଶାରୀରିକ ବଳ ହାନି ଘଟିଲେ କେବଳ ଶତ୍ରୁ ଓ ବ୍ୟାଧିଦ୍ୱାରା ନଷ୍ଟ ହୋଇଥାନ୍ତି)।

(ଗ) କାମ ଜନିତ ଦ୍ରବ୍ୟ ନାଶ ଅପେକ୍ଷା କୋପ ଜନିତ ଶତ୍ରୁଲାଭ ଅଧିକତର ହାନିକାରକ ।

(କାରଣ- ଦ୍ରବ୍ୟନାଶ କେବଳ ଅର୍ଥର ହାନିକାରକ ହୋଇଥାଏ; କିନ୍ତୁ ଶତ୍ରୁଲାଭ ଅର୍ଥର ହାନିକାରକ ହେବା ସଂଗେ ସଂଗେ ପ୍ରାଣର ମଧ ହାନି ଘଟାଇ ଥାଏ) ।

(ଘ) କାମ ଜନିତ ଅନର୍ଥକାରୀଙ୍କ ସଂଯୋଗ ଅପେକ୍ଷା କୋପ ଜନିତ ଦୁଃଖର ସଂଯୋଗ ଅଧିକତର ହାନିକାରକ ।

(କାରଣ- ଅନର୍ଥକାରୀ ବସ୍ତୁ ବା କାର୍ଯ୍ୟ କିମ୍ବା ଅନର୍ଥକାରୀମାନଙ୍କ ସହିତ ସଂଯୋଗ ମୁହୂର୍ତ୍ତିକ ପାଇଁ ହେଲେ ମଧ ପ୍ରୀତି ସଞ୍ଚାର କରିଥାଏ; କିନ୍ତୁ ଦୁଃଖର ସଂଯୋଗ ଦୀର୍ଘକାଳ ଯାଏ କେବଳ କ୍ଳେଶ ହିଁ ଦେଇଥାଏ) ।

(ଙ) 'କୋପ' ରୁ ଉତ୍ପନ୍ନ; 'କଥାରେ ନିଷ୍ଠୁରତା ପ୍ରଦର୍ଶନ' ଓ 'ଅର୍ଥର କ୍ଷତିକରଣ' ମଧ୍ୟରୁ ଅର୍ଥର କ୍ଷତି କରଣ ଅଧିକତର କ୍ଳେଶ ଦାୟକ ।

(କାରଣ- ଅର୍ଥ ଦ୍ୱାରା କରାଯିବା ସତ୍କାର ଦୁର୍ବଚନ ରୂପକ କଷ୍ଟ କୁ ଅପହରଣ କରେ । ମାତ୍ର ବାଚନିକ ଶ୍ରଦ୍ଧା ଓ ସତ୍କାର ଦ୍ୱାରା ଅର୍ଥର କ୍ଷତିକରଣ ମୋଚନ ହୋଇପାରେ ନାହିଁ) ।

(ଚ) କୋପରୁ ଉତ୍ପନ୍ନ- 'ଅର୍ଥର କ୍ଷତିକରଣ' ଓ (ଶାସ୍ତିଦ୍ୱାରା) 'କାୟକ୍ଳେଶ ପ୍ରୟୋଗ' ମଧ୍ୟରୁ କାୟକ୍ଳେଶ ପ୍ରୟୋଗ ଅଧିକତର କଷ୍ଟ ଦାୟକ ।

(କାରଣ- ବିପୁଳ ଧନ ପ୍ରାପ୍ତ ହେଲେ ମଧ କୌଣସି ବ୍ୟକ୍ତି ନିଜର ଶରୀରର ବିନାଶ ଇଚ୍ଛା କରେ ନାହିଁ । ଏପରିକି ଅନ୍ୟଠାରୁ ଶାସ୍ତି ଦ୍ୱାରା-କାୟକ୍ଳେଶ ପ୍ରୟୋଗ ସମ୍ଭାବନା ଭୟରୁ ନିଜକୁ ଆତ୍ମରକ୍ଷା କରିବା ପାଇଁ ଯେତିକି ଅର୍ଥନାଶ କରିବା ଦରକାର, ସେତିକି ମାତ୍ର ଅର୍ଥନାଶ ସେ ସ୍ୱୀକାର କରିବେ) ।

(୧୩) 'କାମ'ରୁ ଉତ୍ପନ୍ନ- 'ଦ୍ୟୁତ' (ଯୁଆଖେଳ) ଓ 'ମୃଗୟା'ରୁ ଉତ୍ପନ୍ନ ଦ୍ୟୁତ (ଯୁଆଖେଳ) ଅଧିକତର ଦୋଷାବହ ।

(କାରଣ- (କ) ଯୁଆଖେଳରେ ନଳ ଓ ଯୁଧିଷ୍ଠିରମାନଙ୍କ ପରି ଧର୍ମବୀରମାନେ ଗୋଟିଏ ପକ୍ଷରେ ଥିଲେ ମଧ ପରାଜୟ ଘଟିଥାଏ ।

(ଖ) ଯୁଆ ଖେଳରେ ଜିତିବା ଧନ ଆମିଷ ତୁଲ୍ୟ ଏବଂ ଏଥିଦ୍ୱାରା ଜିଣିଥିବା ବ୍ୟକ୍ତିପ୍ରତି ହାରିଥିବା ବ୍ୟକ୍ତିର ବିଦ୍ୱେଷ ବଢ଼େ ।

(ଗ) ଯୁଆଖେଳରେ ଧର୍ମ କାର୍ଯ୍ୟକରି ଉପାର୍ଜିତ ପୂର୍ବ ସଂଗୃହୀତ ଧନର ଅସ୍ଥାନରେ ବିନିଯୋଗ ଘଟେ ଏବଂ ଅସତ୍ ଉପାୟରେ ନୂତନ ଧନ ସଂଗୃହିତ ହୁଏ । ପୁଣି ସେହି ସଂଗୃହିତ ଅସତ୍ ଧନ ବିନା ଭୋଗରେ ପୁଣି ସେଇ ଜୁଆଖେଳ ପ୍ରଭୃତି ଅସତ୍ ମାର୍ଗରେ ହିଁ ନାଶ ପ୍ରାପ୍ତ ହୋଇଥାଏ ।

(ଘ) ସବୁବେଳେ ବସିରହି ଖେଳିବା ଯୋଗୁ ମଳମୂତ୍ରର ବେଗଧାରଣ ବଶତଃ ଓ କ୍ଷୁଧା ପିପାସର ରୋଧ ହେତୁ ନାନା ପ୍ରକାରର ବ୍ୟାଧିଗ୍ରସ୍ତ ହେବାର ସମ୍ଭାବନା ଥାଏ ।

କିନ୍ତୁ ମୃଗୟାରେ- (କ) ବ୍ୟାୟାମ ତଥା ଶାରୀରିକ ପରିଶ୍ରମ ଦ୍ୱାରା, କଫ ପିତ୍ତର ନାଶ ମେଦ ଓ ମାଂସର ଅନୁପଚୟ ଓ ସ୍ୱେଦ ନାଶ ହୋଇଥାଏ ।

(ଖ) ମୃଗାଦି ପ୍ରାଣୀମାନଙ୍କର ଚଞ୍ଚଳ ଓ ସ୍ଥିର ଗତି ବେଳେ ସେମାନଙ୍କ ଶରୀରକୁ ଲକ୍ଷ୍ୟକରି ଶର ମାରିବା ହେତୁ ଲାଖ ବିନ୍ଧା ଶିକ୍ଷା ପ୍ରାପ୍ତ ହୋଇଥାଏ ।

(ଗ) କୋପ ଓ ଭୟ ଯୋଗୁ ଏହି ପ୍ରାଣୀମାନଙ୍କର ମାନସିକ ଅବସ୍ଥାର ପରିଚୟ ସମ୍ପର୍କରେ ଜ୍ଞାନ ପ୍ରାପ୍ତ ହୋଇଥାଏ ।

(ଘ) ମୃଗୟା ସକାଶେ ଯାତ୍ରା କରିବାକୁ ହେଲେ ଭଲ ଋତୁ ଓ ମନ୍ଦଋତୁ ବିଷୟ ବିଚାର କରାଯାଇଥାଏ । ବର୍ଷାଋତୁରେ ଯାତ୍ରା ସୁଖକର ହୋଇ ନଥିବା ଯୋଗୁ, ମୃଗୟା ଏହି ଋତୁରେ କେବେ କେବେ ଶୃଙ୍ଖଳା ପାଗରେ ଅନୁଷ୍ଠିତ ହୋଇଥାଏ ।

କିନ୍ତୁ ଯୁଆଖେଳ ନିତ୍ୟ ଅନୁଷ୍ଠାନ କରାଯାଇ ପାରିବା ହେତୁରୁ ମୃଗୟା ଅପେକ୍ଷା ଯୁଆଖେଳ ଅଧିକତର କଷ୍ଟ ବିଧାୟକ) ।

(୧୪) କାମରୁ ଉତ୍ପନ୍ନ- 'ଦ୍ୟୂତ' (ଯୁଆଖେଳ) ଓ ସ୍ତ୍ରୀ ଆସକ୍ତ ଦୋଷ ମଧ୍ୟରୁ ଯୁଆଖେଳ ଗୁରୁତର ଅଟେ ।

(କାରଣ- ଯୁଆଡି ରାତିରେ ମଧ, ଦୀପ ଆଲୁଅରେ ଏପରିକି ତା'ର ମା' ମରିଗଲେ ମଧ ଶୁଦ୍ଧକ୍ରିୟା ନ କରି ଖେଳରେ ମାତିଥାଏ । ପୁଣି ଯୁଆଡ଼ିର କୌଣସି ସଂକଟ ଉପସ୍ଥିତ ହେଲେ ମଧ ତା'ର ନିବାରଣ ପାଇଁ କେହି କିଛି ପଚାରିଲେ, ସେ ତା' ଉପରେ କୁପିତ ହୁଏ ।

କିନ୍ତୁ ସ୍ତ୍ରୀ ଆସକ୍ତି ଜନିତ ଦୋଷ ଥିଲେ ମଧ ତାକୁ ଗାଧୁଆ ସ୍ଥାନରେ (ତୁଠରେ), ଲୁଗା ପିନ୍ଧିବା ସ୍ଥାନରେ, ଖାଇ ବସିବା ସ୍ଥାନରେ, ଧର୍ମ ଓ ଅର୍ଥ ସମ୍ବନ୍ଧୀୟ ପ୍ରଶ୍ନ ପଚାରି ତାରି ମାଧମରେ ସ୍ତ୍ରୀ ଆସକ୍ତି ଜନିତ ଦୋଷ ବିଷୟ ଜ୍ଞାତ କରାଯାଇପାରେ ଏବଂ ନିକଟ ସମ୍ପର୍କୀୟମାନଙ୍କ ଦ୍ୱାରା ସ୍ତ୍ରୀ ଆସକ୍ତ ବ୍ୟକ୍ତିଙ୍କର ସେହି ସ୍ତ୍ରୀକୁ ତାଙ୍କର ହିତ କାର୍ଯ୍ୟରେ ମଧ ନିୟୋଜିତ କରାଯାଇପାରେ । ସେପରି କରାଯାଇ ନ ପାରିଲେ ଗୁପ୍ତ ଦଣ୍ଡ ଦ୍ୱାରା ଉକ୍ତ ସ୍ତ୍ରୀକୁ ନାଶ କରାଯାଇପାରେ । ପୁଣି ଉକ୍ତ ସ୍ତ୍ରୀକୁ ବିଷ ପ୍ରୟୋଗ ଦ୍ୱାରା ବ୍ୟାଧି ଉତ୍ପାଦନ କରି ଅନ୍ୟତ୍ର ପଠାଇ ଦେବା ମଧ ସମ୍ଭବପର ହୋଇପାରେ ।

ଅନ୍ୟ ଏକ ମର୍ମରେ ଯୁଆଖେଳଠାରୁ ସ୍ତ୍ରୀ ଆସକ୍ତ ଦୋଷ ଅଧିକ କ୍ଷତିକାରକ ଅଟେ ।

କାରଣ- (କ) ଯୁଆଖେଳରେ ଯେଉଁ ଦ୍ରବ୍ୟ ହରାଇବାକୁ ପଡ଼ିଥାଏ; ପୁଣି ସମୟ କ୍ରମେ ତାକୁ କିଣି ଆଣିବାର ମଧ ସମ୍ଭାବନା ଥାଏ । କିନ୍ତୁ ସ୍ତ୍ରୀ ଆସକ୍ତ ଦୋଷରେ କୌଣସି ଦ୍ରବ୍ୟ ନଷ୍ଟ ହେଲେ, ତାହା ଆଉ ଫେରି ଆସେ ନାହିଁ । (ସ୍ତ୍ରୀକୁ ଦିଆଯିବା ଅଳଙ୍କାର, ଧନ ଓ ବସ୍ତ୍ରାଦି ଦ୍ରବ୍ୟ ଆଉ ଫେରି ପାଇବାର ସମ୍ଭାବନା ନଥାଏ) ।

(ଖ) ସ୍ତ୍ରୀ ଆସକ୍ତ ବ୍ୟକ୍ତିଙ୍କୁ ଦର୍ଶନ ତାଙ୍କ ଅଧସ୍ତନ କର୍ମଚାରୀମାଙ୍କୁ ନ ମିଳିବା ଯୋଗୁଁ ସେମାନଙ୍କର କାର୍ଯ୍ୟାନୁଷ୍ଠାନରେ ଉତ୍ସାହ ଜାତ ହୁଏ ନାହିଁ । ତେଣୁ ଯେଉଁ ସମୟରେ ଯେଉଁ କାର୍ଯ୍ୟ ହେବା ବିଧିସଙ୍ଗତ, ସେହି ସମୟ ଅତିକ୍ରାନ୍ତ ହୋଇଗଲେ ଅନର୍ଥ ଘଟେ ଓ ଧର୍ମ ହାନି ହୁଏ । ସମସ୍ତ କାର୍ଯ୍ୟ ଶିଥିଳ ହୋଇପଡେ !

(ଗ) ସ୍ତ୍ରୀ ଆସକ୍ତ ବ୍ୟକ୍ତି ସର୍ବଦା ମଦ୍ୟପାନରେ ରତ ଓ ଆବଦ୍ଧ ହେବାର ଦେଖାଯାଏ) ।

(୧୫) କାମରୁ ଉତ୍ପନ୍ନ- ସ୍ତ୍ରୀ ଆସକ୍ତ ଦୋଷ ଓ ସୁରା ତଥା ମଦ୍ୟପାନ ମଧ୍ୟରୁ ସୁରା ତଥା ମଦ୍ୟପାନ ଅଧିକତର କ୍ଷତିକାରକ ।

କାରଣ- (କ) ସ୍ତ୍ରୀ ଆସକ୍ତ ବ୍ୟକ୍ତି ନିଜର ବିବାହିତା ସ୍ତ୍ରୀ ସହିତ ଆସକ୍ତ ହେଲେ ଅପତ୍ୟୋତ୍ପତ୍ତି ଓ ଆତ୍ମରକ୍ଷା ସମ୍ଭବ ହୋଇଥାଏ ।

(ଖ) ମାତ୍ର ବେଶ୍ୟା, ଗଣିକା ପ୍ରଭୃତି ବାହାର ସ୍ତ୍ରୀମାନଙ୍କ ସହିତ ଆସକ୍ତ ହେଲେ ଏହାର ବିପରୀତ ଫଳ ଘଟିଥାଏ ।

(ଗ) ଅଯୋଗ୍ୟା କୁଳ ସ୍ତ୍ରୀ ସହିତ ଆସକ୍ତ ଥିବା ବ୍ୟକ୍ତିର ସର୍ବନାଶ ଘଟେ ।

ଉପରଲିଖିତ (ଖ) ଓ (ଗ) ଦୋଷ ମଦ୍ୟପାନରେ ମଧ ଘଟିପାରେ । ଏହା ଛଡା ମଦ୍ୟପାନରେ ବହୁ ପ୍ରକାର ଦୋଷ ବିଦ୍ୟମାନ ଥିବାର ପରିଲକ୍ଷିତ ହୁଏ, ଯଥା:- ବୁଦ୍ଧିଲୋପ, ଉନ୍ମତ୍ତ ନ ହୋଇ ମଧ ଉନ୍ମତ୍ତ ପରି ବ୍ୟବହାର କରିବା, ବିନା ମୃତ୍ୟୁରେ ଶବ ସଦୃଶ ନିଶ୍ଚେତତା, ଗୋପନୀୟ ବିଷୟର ଅଗୋପନ, ଶାସ୍ତ୍ରଜ୍ଞାନ ଓ ତଜ୍ଜନିତ ପ୍ରଜ୍ଞା, ପ୍ରାଣବଳି, ଚିତ୍ତ ଓ ମିତ୍ର ହାନି, ସତ୍ ସଂସର୍ଗ ଅଭାବ, ଗାୟକ ବାଦକ ପ୍ରଭୃତି ଅସତ୍ ବ୍ୟକ୍ତିମାନଙ୍କ ସହିତ ସଂସର୍ଗ, ଧନନାଶକ, ବୀଣା ପ୍ରଭୃତି ବିଭିନ୍ନ ବାଦ୍ୟ ଯନ୍ତ୍ରଯୁକ୍ତ ଆଡ଼ମ୍ବର ପୂର୍ଣ୍ଣ ସଙ୍ଗୀତ ଆସର ପ୍ରଭୃତି ଖର୍ଚ୍ଚାନ୍ତ ବିଷୟରେ ଅତ୍ୟଧିକ ଆସକ୍ତି ଇତ୍ୟାଦି । ପୁଣି ମଦ୍ୟପାନରେ ଅସତ୍ ବ୍ୟକ୍ତିମାନଙ୍କର ବିଶେଷ ପୂଜା ହେଉଥିବା ଯୋଗୁ ଏହା ସମସ୍ତ ପ୍ରକାର ଦୋଷ ମଧରେ ପାପିଷ୍ଠତମ । ମଦ୍ୟପାନ ଯୋଗୁ ସୁଚିନ୍ତାର ଅପଚୟ ଘଟେ) ।

(୧୬) କାମର ଉତ୍ପନ୍ନ; ଦ୍ୟୁତ ତଥା ଯୁଆଖେଳ ଓ ସୁରା ତଥା ମଦ୍ୟପାନ ମଧ୍ୟରୁ ଯୁଆଖେଳ ହିଁ ଗୁରୁତର ।

(କାରଣ- ଯୁଆ ଖେଳରେ, ମନୁଷ୍ୟ, ହସ୍ତୀ, ଅଶ୍ୱ, ପ୍ରଭୃତି ମୂଲ୍ୟବାନ ପ୍ରାଣୀ ଏବଂ ଗୋରୁ, ମେଣ୍ଢା ପ୍ରଭୃତି ସ୍ୱଳ୍ପ ମୂଲ୍ୟର ପ୍ରାଣୀ ଧନ, ରତ୍ନ, ଭୂମି, ରାଜ୍ୟ, ପ୍ରାସାଦ, ଅଟ୍ଟାଳିକା ପ୍ରଭୃତି ପଦାର୍ଥକୁ ପଣ ବା ବାଜି ରଖାଯାଏ । ଏହି ବାଜି ରଖାଯାଇଥିବା ଧନ ନିମିତ୍ତକ ଅଟେ । ଏକ ପକ୍ଷରେ ଜୟ ଓ ଅପର ପକ୍ଷର ପରାଜୟ ହେତୁ, ଉଭୟ ପକ୍ଷ ମଧ୍ୟରେ 'କୋପ' ଜାତ ହୁଏ । ଏହି 'କୋପ'ରୁ ଭେଦଭାବ ସୃଷ୍ଟି ହୋଇ ଉଭୟ ପକ୍ଷଙ୍କର ବିନାଶ ଉପସ୍ଥିତ ହୋଇଥାଏ ।

'କାମ' ଓ 'କ୍ରୋଧ' କେବଳ ଅସତ୍ ବ୍ୟକ୍ତିମାନଙ୍କର ପୂଜ୍ୟ, ଏବଂ ସାଧୁ-ସନ୍ଥ-ସନ୍ୟାସୀ ଓ ସତ୍‌ବ୍ୟକ୍ତିମାନଙ୍କର ନିଗ୍ରହର କାରଣ ଅଟେ । ଦୋଷ ବହୁଳତା ହେତୁରୁ, ଏ ଦୁଇଟିକୁ ସର୍ବଦା 'ବଡ଼ଦୋଷ' ବୋଲାଯାଏ ।

ତେଣୁ ଜିତେନ୍ଦ୍ରିୟ ମନସ୍ୱୀ ବ୍ୟକ୍ତି ସର୍ବପ୍ରକାର ଦୋଷ ଜନିତ ଦୁଃଖୋତ୍ପାଦକ, ସର୍ବନାଶକର 'କୋପ' ଓ 'କାମ' ପରିତ୍ୟାଗ କରିବେ) ।

(୧୭) ନିଜ ଜମିର ନିକଟବର୍ତ୍ତୀ ଅଳ୍ପ ପରିମାଣର ଭୂମିଲାଭ, ଦୂରବର୍ତ୍ତୀ ବେଶି ପରିମାଣର ଭୂମି ଲାଭଠାରୁ ଶ୍ରେୟସ୍କର । ଅର୍ଥାତ୍ ପାଖରେ ଥିବା ଭୂମି ଅଳ୍ପ ହେଲେ ମଧ୍ୟ ଶ୍ରେୟସ୍କର ।

(କାରଣ- ଏହା ସହଜରେ ପ୍ରାପ୍ତ ହୁଏ ଏବଂ ସହଜରେ ରକ୍ଷା କରାଯାଇପାରେ । କିନ୍ତୁ ଦୂରବର୍ତ୍ତୀ ଭୂମି ଏହାର ବିପରୀତ ଅଟେ ।)

(୧୮) ଲାଭ ହେଉଥିବା ଦୂରବର୍ତ୍ତୀ ଭୂମି ଓ ନିକଟବର୍ତ୍ତୀ ଭୂମି ମଧ୍ୟରୁ ଯେଉଁ ଭୂମି ନିଜର ଲୋକଦ୍ୱାରା ରକ୍ଷିତ ତାହା ଯେଉଁ ଭୂମି ଅନ୍ୟ ଲୋକ ଦ୍ୱାରା ରକ୍ଷିତଠାରୁ ଅଧିକ ଶ୍ରେୟସ୍କର ।

(କାରଣ- ନିଜ ଦ୍ୱାରା ରକ୍ଷିତ ଭୂମି ନିଜର ଅର୍ଥ ଓ ବଳ ଦ୍ୱାରା ରକ୍ଷିତ ହୋଇଥାଏ ବୋଲି ଉତ୍କୃଷ୍ଟତର । ଅନ୍ୟ ଦ୍ୱାରା ରକ୍ଷିତ ଭୂମି ଏହାର ବିପରୀତ ଅଟେ; ଏହା କେବଳ ନିଜର ରକ୍ଷକ ହିସାବରେ ଲାଗିଥାଏ ।)

(୧୯) ମୂର୍ଖ ଶତ୍ରୁଠାରୁ ଭୂମିଲାଭ, ପଣ୍ଡିତ ଶତ୍ରୁଠାରୁ ଭୂମି ଲାଭଠାରୁ ପ୍ରଶସ୍ତତର ।

(କାରଣ- ମୂର୍ଖଠାରୁ ଭୂମି ସହଜରେ ପ୍ରାପ୍ତ ହୁଏ । ସହଜରେ ରକ୍ଷଣାବେକ୍ଷଣ କରାଯାଇ

ଥାଏ ଏବଂ ପୁଣି ଫେରାଇ ଦେବାକୁ ଆଶଂକା ନଥାଏ । କିନ୍ତୁ ପଣ୍ଡିତ ଶତ୍ରୁଠାରୁ ଭୂମିଲାଭ ଏହାର ବିପରୀତ ହୋଇଥାଏ । କାରଣ ପଣ୍ଡିତ ଶତ୍ରୁ ଏହା ପୁଣି ଛଡ଼ାଇ ନେଇଯିବାର ଆଶଙ୍କା ବରାବର ଥାଏ ।)

(୨୦) ଉଚ୍ଛେଦନୀୟ ଶତ୍ରୁଠାରୁ ଭୂମି ଲାଭ, ପୀଡ଼ନୀୟ ଶତ୍ରୁଠାରୁ ଭୂମିଲାଭଠାରୁ ଅଧିକ ଶ୍ରେୟସ୍କର ।

(କାରଣ- ଉଚ୍ଛେଦନୀୟ ଶତ୍ରୁ ଆଶ୍ରୟ ହୀନ ହୋଇ ନିଜର ଧନ ଦୌଲତ ନେଇ ନିଜ ସ୍ଥାନରୁ ପଳାଇ ଯିବାକୁ ଇଚ୍ଛୁକ ହୁଅନ୍ତି ଏବଂ ସେଥିପାଇଁ ତାକୁ ସମସ୍ତେ ଛାଡ଼ି ଦିଅନ୍ତି । କିନ୍ତୁ ପୀଡ଼ନୀୟ ଶତ୍ରୁ ମିତ୍ର ମାନଙ୍କର ସହାୟତା ପ୍ରାପ୍ତ ହୁଏ ବୋଲି ସେପରି ଅବସ୍ଥାପନ୍ନ ହୁଏ ନାହିଁ ।

(୨୧) ଯେଉଁ ଭୂମି ଶସ୍ୟାଦି ଉତ୍ପାଦନ ପାଇଁ କେବଳ ବୃଷ୍ଟି ଜଳ ଉପରେ ନିର୍ଭରଶୀଳ ସେପରି ଅଧିକ ପରିମାଣର ଭୂମିଠାରୁ, ଅଳ୍ପ ପରିମାଣର ଭୂମି ଯାହାକି ଜଳପୂର୍ଣ୍ଣ ନଦୀ, ନାଳ ଏବଂ ପୋଖରୀ ଓ ବନ୍ଧର ଜଳଦ୍ୱାରା ଶସ୍ୟାଦିର ଉତ୍ପନ୍ନ ସମ୍ଭବପର ହୁଏ ସେହି ଭୂମି ଅଧିକତର ଶ୍ରେୟସ୍କର ।

(କାରଣ- ଜଳପୂର୍ଣ୍ଣ ନଦୀ ପ୍ରଭୃତି ଜଳଦ୍ୱାରା ଭୂମିରୁ ସର୍ବଦା ଶସ୍ୟାଦି ଉତ୍ପାଦନ ହୁଏ । ପୁଣି, ଏଥିରେ ଫଳ ମୂଳ ମଧ ନିଶ୍ଚିତ ଭାବରେ ହୋଇପାରେ ଯାହାକି ବୃଷ୍ଟି ଜଳ ଉପରେ ନିର୍ଭର ଶୀଳ ଭୂମିରେ ସମ୍ଭବ ହୁଏନାହିଁ ।)

(୨୨) ଯେଉଁ ଭୂମି ଶସ୍ୟାଦି ଉତ୍ପନ୍ନ ପାଇଁ ବୃଷ୍ଟିଜଳ ଉପରେ ନିର୍ଭରଶୀଳ, ସେପରି ଭୂମି ମଧ୍ୟରୁ ଯେଉଁ ଭୂମିରେ କାର୍ତ୍ତିକ ଓ ବୈଶାଖ ଫସଲ (ବର୍ଷାତି ଫସଲ ଓ ରବି ଫସଲ) ଏପରି ଦୁଇ ପ୍ରକାର ଫସଲ ଉତ୍ପନ୍ନ ହୁଏ ଏବଂ ଯେଉଁ ଭୂମିରେ ଅଳ୍ପ ବର୍ଷାରେ ମଧ ଶସ୍ୟାଦି ଫଳ ପାଚିପାରେ ଏବଂ ଯେଉଁ ଭୂମି ପଥୁରିଆ ନଥିବାରୁ ଚାଷ କାର୍ଯ୍ୟ ବିନା ପରିଶ୍ରମରେ ସମ୍ପାଦିତ ହୋଇପାରେ ସେହି ଭୂମିଟି ଶ୍ରେୟସ୍କର ।

(୨୩) ଜଳପୂର୍ଣ୍ଣ ନଦୀ ପ୍ରଭୃତିରୁ ପାଣି ମାଡୁଥିବା ଭୂମି ମଧ୍ୟରୁ ଯେଉଁ ଭୂମିରେ ଧାନ୍ୟାଦି ଖାଦ୍ୟ ଶସ୍ୟ ଉଠିଆ କରାଯାଇ ପାରେ ନାହିଁ, ସେହି ଭୂମି ଅପେକ୍ଷା ଯେଉଁ ଭୂମିରେ ଧାନ୍ୟାଦି ଖାଦ୍ୟ ଶସ୍ୟ ଉଠିଆ କରାଯାଇ ପାରେ ସେହି ଭୂମି ଶ୍ରେୟସ୍କର ।

(୨୪) ଅଳ୍ପପରିମାଣର ଭୂମି ଧାନ୍ୟାଦି ଉତ୍ପତ୍ତି ଯୋଗୁ କମନୀୟ ହେଲେ ମଧ ତାହାଠାରୁ ଅଧିକ ପରିମାଣର ଭୂମି ଅଧାନ୍ୟ ଯୁକ୍ତ କିନ୍ତୁ କମନୀୟ ହେଲେ ଶ୍ରେୟସ୍କର ।

(କାରଣ- ଭୂମିର ପରିମାଣ ବେଶି ହେଲେ, ସେଥିରେ ସ୍ଥଳଜ ଓ ଜଳଜ ଔଷଧିର ଉତ୍ପତ୍ତି ହୁଏ । ସେପରି ଭୂମି ଉପରେ ଗୃହ ନିର୍ମାଣ କାର୍ଯ୍ୟ ମଧ୍ୟ ଅଧିକ ସଂଖ୍ୟାରେ କରାଯାଇପାରେ । ପୁଣି ଭୂମିର ଗୁଣ କ୍ରିୟାସାଧ ତେଣୁ ଅଧାନ୍ୟକାନ୍ତ ଭୂମି ବଡ ହେଲେ ତାହାକୁ ମନମୁତାବକ ଧାନ୍ୟକାନ୍ତ ମଧ କରାଯାଇପାରେ ।

(୨୫) ଯେଉଁ ଭୂମିରେ ବହୁତ ଖଣି ଅଛି ସେହି ଭୂମିଠାରୁ ଯେଉଁ ଭୂମିରେ ବହୁତ ଧାନ୍ୟାଦି ଖାଦ୍ୟଶସ୍ୟ ଜାତ ହୁଏ ସେହି ଭୂମି ଶ୍ରେୟସ୍କର ।

(କାରଣ- ଖଣିଥିବା ଭୂମି କେବଳ ଅର୍ଥ ବୃଦ୍ଧି କାରକ, କିନ୍ତୁ ଧାନ୍ୟାଦି ଖାଦ୍ୟଶସ୍ୟ ଜାତ ହେଉଥିବା ଭୂମି ଉଭୟ ଅର୍ଥ ସହିତ ଖାଦ୍ୟଦ୍ରବ୍ୟ ବୃଦ୍ଧିକାରକ ।
ପୁଣି ଯଦି ଖଣିଜ ପଦାର୍ଥମାନଙ୍କର କାରବାର ବହୁ ପରିମାଣରେ ହେଉଥାଏ ତାହାହେଲେ ଖଣି ଥିବା ଭୂମିର ଯୋଗ୍ୟତା ପରିଲକ୍ଷିତ ହୁଏ)।

(୨୬) ଚନ୍ଦନ, ଔଷଧାଦି ବନ ଦ୍ରବ୍ୟ ଯୁକ୍ତ ଭୂମିଠାରୁ ହସ୍ତି ବନଯୁକ୍ତ ଭୂମି ଅଧିକତର ଉପଯୋଗୀ ।

(କାରଣ- ଅନେକ ପ୍ରକାର ବନ ଦ୍ରବ୍ୟ ବିଭିନ୍ନ ପ୍ରକାର ଭୂମିରେ ଉତ୍ପାଦନ କରାଯାଇ ପାରେ କିନ୍ତୁ ହସ୍ତୀବନ କେତେକ ବିଶିଷ୍ଟ ସ୍ଥାନ ବ୍ୟତୀତ ଇଚ୍ଛାନୁଯାୟୀ ଅନ୍ୟ ସ୍ଥାନରେ କରାଯାଇ ପାରେ ନାହିଁ । ପୁଣି ହସ୍ତୀ ଏକ ପ୍ରଧାନ ଉପକରଣ ବୋଲି ବିବେଚିତ ହୋଇଥାଏ) ।

(୨୭) ଯେଉଁ ଭୂମିରେ ମନୁଷ୍ୟମାନେ ମିଳିମିଶି ଶ୍ରେଣୀବଦ୍ଧ ଭାବରେ ଥାଆନ୍ତି ତାହାଠାରୁ ଯେଉଁ ଭୂମିରେ ମନୁଷ୍ୟମାନେ ଏକାଠି ନ ରହି ଭିନ୍ନ ଭିନ୍ନ ସ୍ଥାନରେ ରହିଥାନ୍ତି ସେହି ଭୂମି ଅଧିକତର ଶ୍ରେୟସାଧକ ।

(କାରଣ- ଶ୍ରେଣୀବଦ୍ଧ ମନୁଷ୍ୟମାନେ ବଶୀଭୂତ ହୁଅନ୍ତି ନାହିଁ । ଅନ୍ୟର କୁପରାମର୍ଶ ତଥା ଷଡ଼ଯନ୍ତ୍ର ଦ୍ୱାରା ଆୟତ୍ତ ହୋଇ ପାରନ୍ତି ଏବଂ ଆପଦ ମଧ ସହ୍ୟ କରି ପାରନ୍ତି । ଏହି ଭୂମିର ମନୁଷ୍ୟମାନେ କୁପିତ ହୋଇ ଉଠିଲେ ରାଜାଙ୍କର ମଧ ଉଚ୍ଛେଦ ସାଧନ କରି ପାରନ୍ତି । କିନ୍ତୁ ମନୁଷ୍ୟମାନେ ଏକାଠି ନରହି ଭିନ୍ନ ଭିନ୍ନ ସ୍ଥାନରେ ରହିଲେ, ଅନ୍ୟର କୁପରାମର୍ଶ ତଥା ଷଡ଼ଯନ୍ତ୍ରଦ୍ୱାରା ଆୟତ୍ତ ହୋଇ ପାରନ୍ତି ନାହିଁ । ବିପଦ ସମୟ ଆସିଲେ ବିପଦ ମଧ ସହ୍ୟ କରି ପାରନ୍ତି ନାହିଁ । ଏପରି ଭୂମି ରାଜକର୍ମଚାରୀମାନଙ୍କ ଦ୍ୱାରା ସହଜରେ କବଳିତ ହୋଇଥାଏ) ।

(୨୮)  ଦୁର୍ଗର ଆଶ୍ରୟ ଦାୟିକା ଭୂମିଠାରୁ ଯେଉଁ ଭୂମିରେ ପୁରୁଷ ଆଶ୍ରୟ ପାଇବା ସହଜ ସେହି ଭୂମି ହିଁ ପ୍ରଶସ୍ତତର ।

(କାରଣ- ଉପଯୁକ୍ତ ଭୂମିର ସମସ୍ତ ଗୁଣ ମଧ୍ୟରେ ପୁରୁଷମାନଙ୍କୁ ଆଶ୍ରୟ ଦାନ ଦ୍ୱାରା ରକ୍ଷା ହିଁ ପ୍ରଶସ୍ତତର ଗୁଣ ଅଟେ । ରାଜ୍ୟ ପୁରୁଷମାନଙ୍କ ଯୋଗୁ ହିଁ ସମ୍ଭବପର ହୁଏ, ପୁରୁଷ ଶୂନ୍ୟ ଭୂମି କୌଣସି ଉପଯୋଗରେ ଆସେ ନାହଁ; ଯେପରି ବାଞ୍ଝ ଗାଈ ଦୋହଳ ହୋଇ ପାରେ ନାହିଁ) ।

(୨୯)  ହୀରା, ମଣି ପ୍ରଭୃତି ମୂଲ୍ୟବାନ ଦ୍ରବ୍ୟଠାରୁ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଉତ୍ପାଦନକ୍ଷମ ଖଣି ବା ଭୂମି ଅଧିକ ଶ୍ରେୟସ୍କର ।

(କାରଣ- ହୀରା, ମଣିପ୍ରଭୃତି ମୂଲ୍ୟବାନ ଦ୍ରବ୍ୟର କ୍ରେତା ଅଳ୍ପ ସଂଖ୍ୟକ, ପୁଣି ଏହାର ବିକ୍ରିପାଇଁ ଅନେକ ସମୟ ସାପେକ୍ଷ, ତେଣୁ ଏପରି ମୂଲ୍ୟବାନ ଦ୍ରବ୍ୟ ଭଣ୍ଡାରରେ ପଡିରହେ, କିନ୍ତୁ ନିତ୍ୟ ବ୍ୟବହାର୍ଯ୍ୟ ତଥା ପ୍ରୟୋଜନୀୟ ଦ୍ରବ୍ୟ ସ୍ୱଳ୍ପ ମୂଲ୍ୟ ହେତୁ ଏହାର କ୍ରେତା ସଂଖ୍ୟା ଅଧିକ ଏଣୁ ଏ ଦ୍ରବ୍ୟର କାରବାର ତଥା ବିକ୍ରୟ ସର୍ବଦା ଚାଲିଥାଏ) ।

(୩୦)  ଜଳପଥଠାରୁ ସ୍ଥଳପଥ ଅଧିକ ପ୍ରସସ୍ତତର ।

(କାରଣ- ଜଳପଥ ବିପଦ ସମୟରେ ଗତି ନିରୋଧ କରିପାରେ । ଏଥିରେ ବର୍ଷା, ଝଡ, ତୋଫାନ ଇତ୍ୟାଦି ସମୟରେ ଯାତାୟତ ଅତ୍ୟନ୍ତ କଷ୍ଟକର । ଜଳପଥରେ ଯାତାୟତ ଭୟଜନକ ଏବଂ ବିପଦ ଉପସ୍ଥିତ ହେଲେ ଏଥିରୁ ଉଦ୍ଧାର ପାଇବାର ବାଟ ମିଳେ ନାହିଁ । କିନ୍ତୁ ସ୍ଥଳ ପଥ ଏହାର ସମ୍ପୂର୍ଣ୍ଣ ବିପରୀତ) ।

(୩୧)  କେବଳ ଚଲାପଥ (ପାଦରେ ଚାଲିବା ପଥ)ଠାରୁ ଗାଡି ଚାଲିବା ପଥ ଅଧିକ ପ୍ରଶସ୍ତତର ।

(କାରଣ- ଗାଡି ଚାଲିବା ପଥରେ ପରିବହନର ସୁବିଧା ପାଇଁ ବହୁ ପରିମାଣର ବ୍ୟବସାୟ (କ୍ରୟ ବିକ୍ରୟ) ହୋଇପାରେ । ଯାହାକି ଚଲାପଥରେ (ମନୁଷ୍ୟ କାନ୍ଧରେ ଭାର ବହନ କରି, ଘୋଡା, ବଳଦ ପ୍ରଭୃତି ପରିବହନ କରି) ବ୍ୟବସାୟ କରିବା ସୁବିଧା ଜନକ ନୁହେଁ । ମାତ୍ର କେତେକ କ୍ଷେତ୍ରରେ ଦେଶ କାଳ ଅନୁସାରେ ଗଧ ଚାଲିବା ପଥ ଓ ଓଟ ଚାଲିବା ପଥ (ମରୁଭୂମିରେ) ପ୍ରଶସ୍ତତର ହୋଇପାରେ) ।

(୩୨)  ଆର୍ଥିକ ଓ ଶାସନ ଶକ୍ତି ସମ୍ପନ୍ନ ରାଜା, ଶୌର୍ଯ୍ୟ ସମ୍ପନ୍ନ ଶାରୀରିକ ବଳ ସମ୍ପନ୍ନ, ଆରୋଗ୍ୟବାନ, ଅସ୍ତ୍ରବିଦ୍ୟାବିତ୍ ରାଜାଙ୍କଠାରୁ ଅତ୍ୟନ୍ତ ପ୍ରଭାବଶାଳୀ ହୁଅନ୍ତି ।

(କାରଣ- ଆର୍ଥିକ ଓ ଶାସନ ଶକ୍ତି ସମ୍ପନ୍ନ ରାଜା, ନିଜର ଆର୍ଥିକ ବଳରେ ଅନ୍ୟରାଜାଙ୍କୁ ସାହାଯ୍ୟଦେଇ ସେମାନଙ୍କୁ ବରଣକରି, ବୀର ପୁରୁଷମାନଙ୍କୁ ଏକାନ୍ତ ଅନୁରକ୍ତି ପାଇଁ ବେତନ ଦେଇ ବଶବର୍ତ୍ତୀ କରିବା, କିମ୍ବା ପ୍ରଚୁର ଧନଦ୍ୱାରା ସେମାନଙ୍କୁ କ୍ରୟକରି, ଶୌର୍ଯ୍ୟ ସମ୍ପନ୍ନ ରାଜାଙ୍କୁ ପରାଜିତ କରିପାରନ୍ତି । ଇତିହାସ ମଧ୍ୟ ଏହିକଥା କହେ । ସ୍ତ୍ରୀ, ବାଳକ, ପଙ୍ଗୁ, ଅନ୍ଧ, ରାଜାଗଣ ପ୍ରଭାବଶାଳୀ ହୋଇ ଶୌର୍ଯ୍ୟ ଶକ୍ତି ସମ୍ପନ୍ନ ରାଜାମାନଙ୍କୁ ପରାଜିତ କରି କିମ୍ବା ସେମାନଙ୍କୁ ଆର୍ଥିକ ଦାନ ଦ୍ୱାରା କ୍ରୟ କରି ପୃଥିବୀ ଜୟ କରିବାକୁ ସମର୍ଥ ହୋଇଛନ୍ତି) ।

(୩୩) ପ୍ରଜ୍ଞା ଓ ଶାସ୍ତ୍ରଜ୍ଞାନୀ ରାଜା, ଆର୍ଥିକ ଓ ଶାସନ ଶକ୍ତି ସମ୍ପନ୍ନ ରାଜାଙ୍କଠାରୁ ପ୍ରଶସ୍ତତର ହୁଅନ୍ତି ।
(କାରଣ- ପ୍ରଜ୍ଞା ଓ ଶାସ୍ତ୍ର ଜ୍ଞାନ ରୂପକ ଚକ୍ଷୁବିଶିଷ୍ଟ ରାଜା ଅଳ୍ପ ମାତ୍ର ପ୍ରଯତ୍ନରେ ଶାସନ ଶକ୍ତି ସମ୍ପନ୍ନ ରାଜାଙ୍କୁ ବଶବର୍ତ୍ତୀ କରିପାରନ୍ତି । ତେଣୁକରି ଶାସ୍ତ୍ର ଜ୍ଞାନୀ ରାଜା ସବୁପ୍ରକାର ରାଜାଙ୍କଠାରୁ ଶ୍ରେଷ୍ଠତର ।)

(୩୪) ଅର୍ଥ, ଧର୍ମ ଓ କାମ ଏ ତିନୋଟିକୁ 'ଅର୍ଥତ୍ରିବର୍ଗ' କୁହାଯାଏ । ଏଥିମଧ୍ୟରୁ 'କାମ' ଅପେକ୍ଷା 'ଧର୍ମ' ଶ୍ରେୟସ୍କର । ପୁଣି 'ଧର୍ମ' ଅପେକ୍ଷା 'ଅର୍ଥ ପ୍ରାପ୍ତି' ଶ୍ରେୟସ୍କର ।

(୩୫) 'ଅନର୍ଥ', 'ଅଧର୍ମ' ଓ ଶୋକ ଏ ତିନୋଟିକୁ 'ଅନର୍ଥ ତ୍ରିବର୍ଗ' କୁହାଯାଏ । ଏଥିମଧ୍ୟରୁ 'ଶୋକ' ଅପେକ୍ଷା 'ଅଧର୍ମ'ର ପ୍ରତିକାର ପ୍ରଶସ୍ତତର । 'ଅଧର୍ମ' ଅପେକ୍ଷା 'ଅନର୍ଥ'ର ପ୍ରତିକାର ପ୍ରଶସ୍ତତର ।

(୩୬) 'ଅର୍ଥ ଓ ଅନର୍ଥ', 'ଧର୍ମ ଓ ଅଧର୍ମ' ଓ 'କାମ ଓ ଶୋକ' ଏହି ତିନିଗୋଟି ଯୋଡ଼ିକୁ 'ସଂଶୟ ତ୍ରିବର୍ଗ' କୁହାଯାଏ । ଏଥିମଧ୍ୟରୁ 'ଅନର୍ଥ', 'ଅଧର୍ମ' ଓ 'ଶୋକ'ର ପ୍ରତିକାର କରାଗଲେ 'ଅର୍ଥ', 'ଧର୍ମ' ଓ 'କାମ'କୁ ଆୟତ୍ତ କରାଯାଇ ପାରିବ ।



# ଦନାଇ ବଚନ

(୧) ପାଟିସୁଆଦିଆ

(୧) ଅଁଳା ଖାଇଲେ (୪) ଫୁଟି କାକୁଡ଼ି ପାଚି ଫାଟିଗଲେ

(୨) ମହୁକୁ ଚାଟି ଖାଇଲେ (୫) ଦନାଇ ଦାସକୁ ରାମ ନାମ

(୩) ଗର୍ଭବତୀ ସ୍ତ୍ରୀକୁ ମାଟି (୬) ବାଡ଼ି ବାଇଗଣକୁ ବେଶର ପାଣି

(୭) ବଥୁଆ ଶାଗ, ଡାଲିରେ ପଡ଼ିଲେ

(୮) ଚୁଡ଼ାକୁ ସୁନ୍ଦର ଗୁଡ଼ ଦହି, ଦୁଧକୁ ସୁନ୍ଦର ନବାତ (କନ୍ଦ) ଖଇ

(୨) ପାଟି ସୁଆଦିଆ ଶାଗ

**ଲେଉଟିଆ** ଶାଗ ଥାଇ ବୋଇଲା,
ମୁଁ ଶାଗର ରାଣୀ ।
ଖରାଦିନରେ ଦୋଓଡା ଖିଆକୁ,
ମତେ ଖରଡ଼ିବ ଆଣି ।।
**କୋଶଳା** ଶାଗ ଥାଇ ବୋଇଲା,
ମୁଁ ଶାଗର ରଜା ।
ବଡ଼ି ବିଗଣ୍ଡା ପକାଇଥିଲେ,
ବୁଝିବ ମୋହର ମଜା ।।
**ଖଡା** ଶାଗ ଥାଇ ବୋଇଲା,
ମୁଁ ସିନା ଖଡା ।
ପହିଲି ଆଷାଢେ ତିଅଣ କଷ୍ଟ,
ମତେ କରିବ ଲୋଡା ।।
**ସଜନା** ଶାଗ ଥାଇ ବୋଇଲା,
ମତେ କିଏ ସେ ଲାଗେ ?
ଖରଡ଼ି ଖାଇଲେ ଆଖି ଦୋଷ ଯାଏ,
ମତେ ଖାଇବ ଆଗେ ।।
**କଣ୍ଟାମାରିଷ** ଥାଇ ବୋଇଲା
ମତେ ସରିହେବ କିଏ ?

ପତ୍ର ପୋଡା କରି ଖାଇଲେ,
ଦେହରୁ ପରାସ ଯାଏ ॥
**ନିମ୍ବ ଗଛ** ଥାଇ ବୋଇଲା,
କଅଁଳ ପତ୍ରକୁ ମୋର ।
ଚଇତ ମାସରେ ଭାଜି ଖାଇଲେ,
ଦଗଧକୁ ନାହିଁ ଡର ॥
(ପୁଣି) ପଣା ସଂକ୍ରାନ୍ତିରେ ମସୁର ସଙ୍ଗେ,
ସନ୍ତୋଳି ଖାଇଲେ ଆଣି ।
ବିଷଧର ସାପ ଚୋଟ ମାଇଲେ,
ହୋଇଯିବ ପରା ପାଣି ॥
**ପୁରୁଣୀ** ଶାଗ ଥାଇ ବୋଇଲା,
ଚାଉଳ ଚୂନା ସଙ୍ଗେ ।
ଖରଡି ଖାଇଲେ ବାତପିତ୍ତର,
ଗରବ କ୍ଷଣକେ ଭାଙ୍ଗେ ॥
**ବଥୁଆ** ଶାଗ ଥାଇ ବୋଇଲା,
ମୁଁ ସବୁଦିନେ ଥାଏ ।
କଳା ମୁଗରେ ପକାଇ ଖାଇଲେ,
ଅଣ୍ଡା ଧରା ଯାଏ ॥
**ଶୁଖୁ ମଦରଙ୍ଗା** ଥାଇ ବୋଇଲା,
କୋରା ନଡ଼ିଆ ଦେଇ ।
ରାଇ କରି ଖାଇଲେ,
ଆଖିର ଦୋଷ ରହେ ନାହିଁ ॥
**ପୋଇ** ଶାଗ ଥାଇ ବୋଇଲା,
ମୁଁ ରସୁଆଳ ।
ଚୁଙ୍ଗୁଡ଼ି ଶୁଖୁଆ ସାଙ୍ଗେ ଖରଡ଼ିଲେ,
ଦେହରେ ଆଣଇ ବଳ ॥
**ପସାରୁଣୀ** ଥାଇ ବୋଇଲା,
ମୁଁ ସିନା ଗନ୍ଧ ।
ସବୁ ରୋଗକୁ ହଟାଇ ଦିଏ,
ଘିଅରେ ଖରଡ଼ି ରାନ୍ଧ ॥

ହିଡିମିଞ୍ଚା ଥାଇ ବୋଇଲା,
ମୁଇଁ ସିନା ପିତା ।
ପେଟରୋଗକୁ ହଟାଇବାରେ,
ମୁଇଁ ଜଗତ୍‌ଜିତା ॥
ମୁଠି ଶାଗ ଥାଇ ବୋଇଲା,
ମୋ କଥାଟିକେ ଶୁଣ ।
ଦୁଧ ପକାଇ ଖରଡ଼ି ଖାଇଲେ,
ଜାଣିବ ମୋହର ଗୁଣ ॥
ଆମ୍ବିଳିତି ଥାଇ ବୋଇଲା,
ଛାଇରେ ଥାଏ ମାଡ଼ି ।
ପତ୍ର ପୋଡ଼ା ପାଟିରେ ବାଜିଲେ,
ଅରୁଚି ଯାଏ ଛାଡ଼ି ॥
କଇଁଚି କାକୁଡ଼ି ଥାଇ ବୋଇଲା,
ମୋ ଶାଗ କଅଁଳ ।
ରକ୍ତ ଦୋଷକୁ ନିର୍ମଳ କରେ,
ଛାତିରେ ଆଣଇ ବଳ ॥
କଳମ ଶାଗ ଥାଇ ବୋଇଲା,
ପାଣିରେ ମୋହର ଘର ।
ବିଷ ଦୋଷକୁ ନାଶ କରିବାକୁ,
ମୁଇଁ ଧୁରନ୍ଧର ॥
ଝୁମୁଡ଼ି ଶାଗ ଥାଇ ବୋଇଲା,
ନାରୀ ଗର୍ଭବତୀ ହେଲେ ।
ମତେ ଲୋଡ଼ିକରି ଖାଇଲେ,
ସ୍ୱାଦ ମେଣ୍ଟାଇ ଭଲେ ॥
କାନ୍ଦୁରୀ ଶାଗ ଥାଇ ବୋଇଲା,
ମୁଁ ପାଣିରେ ଥାଏ ।
ମତେ ଖୋଜି ଲୋଡ଼ି କରି,
ଲକ୍ଷ୍ମୀବନ୍ତ ଖାଏ ॥

ପିତା ଶାଗ ଥାଇ ବୋଇଲା,
ମତେ କେଭେ ନ ଛାଡ଼ ।
ପଥିକୁ ମୁଇଁ ଯୋଗ୍ୟ ଅଟଇ,
ମୋର ଗୁଣ ବଡ଼ ॥
ମେଥି ଶାଗ ଥାଇ ବୋଇଲା,
ସଭା ଜନେ ଶୁଣ ।
ନାରୀମାନଙ୍କ ରକ୍ତ ଦୋଷକୁ,
ମତେ ଲୋଡ଼ି ଆଣ ॥
ବ୍ରାହ୍ମୀ ଶାଗ ଥାଇ ବୋଇଲା,
ମୁଇଁ ସାମାନ୍ୟ ପିତା ।
ଘିଅରେ ଖରଡ଼ି ଖାଇଲେ ହେବ,
ପଣ୍ଡିତ ଜଗତଜିତା ॥
କଖାରୁ ଶାଗ ଥାଇ ବୋଇଲା,
କ୍ଷୁଅଁଳ ପତ୍ରକୁ ମୋର ।
ଖରଡ଼ି ଖାଇଲେ ପିତା ପାଣି,
ବଥୁଆକୁ ନାହିଁ ଡର ॥
ଲାଉ ଶାଗ ଥାଇ ବୋଇଲା,
ସାନ ଚିଙ୍ଗୁଡ଼ି ମାଛ ।
ପକାଇ କରି ଖରଡ଼ି ଥିଲେ,
ସବୁ ଶାଗ ପଛ ॥
କଇଁରା ଶାଗ ଥାଇ ବୋଇଲା,
ମୋ ଗୁଣାବଳୀ ଶୁଣ ।
ରମ୍ଭା କୁଣ୍ଡିଆକୁ ନିର୍ମୂଳ କରେ,
ମୋର ଅପାର ଗୁଣ ॥
ଚଣା ବରଗୁଡ଼ି ଥାଇ ବୋଇଲା,
ଆମେ ସୁଆଦ ବଡ଼ ।
ଥରେ ଖାଇଲେ ଖାଇବାକୁ,
ପାଟି ଲଢ଼ ବଡ଼ ॥
ସୁନୁସୁନିଆ ଥାଇ ବୋଇଲା,
ମୁଇଁ କନକ ଗୋରୀ ।

ନିଦ ନ ହେଲେ ଖରଡ଼ି ଖାଇଲେ,
ତଳେ ପଡ଼ିବ ଶୋଇ ॥

**କନିଶିରି** ଥାଇ ବୋଇଲା,
ମୁଁ ଏଣେ ତେଣେ ଥାଏ ।

ବାତ ରୋଗକୁ ଶାନ୍ତି କରିବାକୁ,
ମୋତେ ପାରିବ କିଏ ?

**ନିମକଢ** ଥାଇ ବୋଇଲା,
ମୋତେ ନ ବୁଝ ପିତା ।

ମୋତେ ଯେବେ ଭାଜି ଖାଇବ,
ସମସ୍ତଙ୍କୁ କାଟେ ଚିତା ॥

**ସୋରିଷ ଫୁଲ** ଥାଇ ବୋଇଲା,
ଅଳ୍ପ ପିଠୋଉ ଦେବ ।

କଡ଼ା କରି ଭାଜି ଖାଇଲେ,
ଝୁରି ହେଉଥିବ ॥

**ପୋଟଳ ପତ୍ର** ଥାଇ ବୋଇଲା,
ଧୂଆ ମୁଗ ସଙ୍ଗେ ।

ବାଟି କରି ବଡ଼ା କଲେ,
ପିଉର ଗରବ ଭାଙ୍ଗେ ॥

**ଅଗସ୍ତି** ଶାଗ ଥାଇ ବୋଇଲା,
ମୁଇଁ ଦଗଧ ମାରୀ ।

କାର୍ତ୍ତିକ ମାସରେ ଲୋଡ଼ନ୍ତି ମୋତେ,
ଯେତେ ବିଧବା ନାରୀ ॥

**ଇତାବେଏଁ କୋଳି** ଥାଇ ବୋଇଲା,
ମୁଇଁ କାଶ ବଇରୀ ।

କଅଁଳ ପତ୍ରକୁ ପିଠୋଉ ଦେଇ,
ଭାଜିବ ଯତନ କରି ॥

**ଶୋଲା** ଶାଗ ଥାଇ ବୋଇଲା,
ମୋ ଗୁଣ କହିବି କେତେ ?

ଅରଣ(ଅର୍ଶ)ରୋଗରେ ଘିଅରେ ଖରଡ଼ି,
ଖାଇବ ସିନା ମୋତେ ॥
**ବଣକଞ୍ଚନ** ଥାଇ ବୋଇଲା,
ମୋର କଅଁଳ ଶାଗ ।
ଦୁଧ ନଡ଼ିଆ ଦେଇ ଖରଡ଼ିଲେ,
ଝାଡ଼ା ସଫା ଆଗ ॥
**ପିତାନଳିତା** ଥାଇ ବୋଇଲା,
ମତେ ନ କରିବ ଭିନେ ।
ମାଇପେ ଯଦି ପୋଖତୀ(ଗର୍ଭଣୀ)ହେବେ,
ମତେ ଲୋଡ଼ିବେ ଦିନେ ॥
**ବିଲଲହଙ୍ଗା** ଥାଇ ବୋଇଲା,
ମୁଇଁ ବିଲରେ ଥାଏ ।
ଗୋଡ ଯାହାର ଘୋଳା ବିନ୍ଧା ହୁଏ,
ମତେ ଲୋଡ଼ି ଖାଏ ॥
**ଚାକୁଣ୍ଡା** ଶାଗ ଥାଇ ବୋଇଲା,
ମୋ କଥା କି ଭାଳ ?
ଲୋକ ମତେ ଆଦର କରନ୍ତି,
ପଡ଼ଇ ଯେବେ କାଳ ॥
**ସଲରା** ଶାଗ ଥାଇ ବୋଇଲା,
କଅଁଳ ପତ୍ରକୁ ମୋର ।
ପହିଲି ଜ୍ୟେଷ୍ଠରେ ଲୋଡ଼ି ଖାଇଲେ,
ଘିମିରିକୁ ନାହିଁ ଡର ॥
**ବାଲୁ ବାଲୁଆ** ଥାଇ ବୋଇଲା,
ମେଥି-ଚୂନା ଦେଇ ।
ଖରଡ଼ି ଖାଇଲେ ଗଣ୍ଠି ଧରା,
କେଭେଁ ରହିବ ନାହିଁ ॥
**ସବୁ ଶାଗ** ଯାକ ଥାଇ ବୋଇଲେ,
ମଗୁଶିର ପୂନିଅଁରେ ।
ଏକାଠେଇଁ ଖରଡି ଖାଇଲେ,
ସର୍ବ ବ୍ୟାଧି ହରେ ॥

(୩) ସ୍ୱାଦୁଯୁକ୍ତ ଖାଦ୍ୟ

(୧) ଅଳ୍ପ ବୟସର ଛେଳି ମାଂସ
(ଛେଳି ମାଉଁସ ବାତକୁ ଭଲ ଭାତକୁ ଭଲ)

(୨) ବୁଢ଼ା ମେଣ୍ଢା ମାଂସ (୩) କାଞ୍ଜି ପାଣିରେ ତୋଡି ମାଛ

(୪) ଦୁଧ ସର (୫) ମାଗୁର ମାଛରେ ସଜ ବସା ଦହି

(୬) ବଡ଼ ମାଛ (୭) ତଳତଳିଆ ଦହି

(୮) ପ୍ରଥମ ଥର କଟା ହେବା ପରେ କଅଁଳିଆ ଶାଗ

(୯) ଚିଙ୍ଗୁଡି ମାଛକୁ ଠାକେରା ଆମ୍ବୁଲ ।

(୪) ଭଲ ନୁହେଁ

(୧) ଅକୁଳୀନ ରଜା ହେଲେ

(୨) କୁଳୀନ କରଜି ହେଲେ

(୩) ଭାରୁଆର କାନ୍ଧ ଦରଜ କଲେ

(୪) ଭେଣ୍ଡା ପୁଅ ଅରୋଜଗାରିଆ ହେଲେ

(୫) ପ୍ରଜାମାନେ ଦେଶରେ ମେଳି କଲେ

(୬) ତଣ୍ଡକାର ଗର୍ଜନ କରି ଗାଳିଦେଲେ

(୫) ଯେତେ ପାଇଲେ ମଧ୍ୟ ଯେଉଁମାନେ ସନ୍ତୁଷ୍ଟ ହୁଅନ୍ତିନାହିଁ

(୧) ଅଗ୍ନି (୨) ରାଜା (୩) ରୋଗୀ

(୪) ଦୁହିତା (୫) ଚୋର (୬) ଗୋରୁ ଓ ମଇଁଷି

(୭) ଅତି ଲୋଭୀ ନର (୮) ବେଶ୍ୟା

(୯) ହସ୍ତିନୀ ନାରୀ (୧୦) ମଦୁଆ

(୧୧) ମାହାନ୍ତି ଜାତି ଲୋକ

(୬) ଯେଉଁମାନେ ଅଣବାହୁଡା

(୧) ରୁକୁଣା ରଥ (୨) କାଣ୍ଡର ଶର

(୩) ତୁଣ୍ଡର କଥା (୪) ଝରଣାର ପାଣି

(୭) **ଯାହା ସହି ହୁଏ ନାହିଁ**

(୧) ଅଣ ବାବୁଆର ଚାତର
(୨) ଟୋକା ଚାକରର ଉତ୍ତର
(୩) ପାଣି ସାରିବା ପାତ୍ର କଣା ହେଲେ
(୪) ବାଞ୍ଝ ଗାଈ ଋତୁମତୀ ହେଲେ
(୫) ଆମ୍ବ ବାତରେ ଘୋଳାବିନ୍ଧା କଲେ ।

(୮) **ଯେଉଁଠାରେ ଶାନ୍ତି ନାହିଁ**

(୧) ଘର ଚାକର ଅବିଶ୍ୱାସୀ ହେଲେ (୨) କଳି କରୁଥିବା ଭାଇ
(୩) କାମୁଡା କୁକୁର (୪) ରୋଗିଣୀ ନାରୀ
(୫) ବିଧବା ଝିଅ (୬) ଧନ ନିଅଣ୍ଟ ହେଲେ
(୭) ଅମାନିଆ ପୁଅ (୮) ଧଡିଆ ଗାଈ ଗୋରୁ ଘରେ ଥିଲେ ।

(୯) **କେଉଁ ସବୁ ବୃଥା ଆଶା**

(୧) ଅତି କୃପଣଠାରୁ ଧନ ଆଶା କରିବା
(୨) ଚୋରଠାରୁ ସତ କଥା ଆଶା କରିବା
(୩) ରାଜାଙ୍କଠାରୁ ବିଶ୍ୱାସ ଆଶା କରିବା
(୪) ଅସତୀଠାରୁ ପତିଭକ୍ତି ଆଶା କରିବା
(୫) ବାଞ୍ଝ ଗାଈଠାରୁ ଦୁଧ ଆଶା କରିବା
(୬) ମରହଟ୍ଟା ସୈନ୍ୟ (ବର୍ଗୀ) ଠାରୁ ଦୟା ଆଶା କରିବା
(୭) ବେଶ୍ୟାଠାରୁ ସ୍ନେହ ଆଶା କରିବା

(୧୦) **ଯାହା ଅନର୍ଥ**

(୧) ଲୋକ ଅର୍ଥହୀନ ହେଲେ
(୨) ଅର୍ଥ ଥାଇ ଯାହାର ଗାରିମା ନାହିଁ
(୩) ଅର୍ଥ ଗ୍ରହଣକାରୀ ଯଦି ସନ୍ନ୍ୟାସୀ ବ୍ରତ ଅବଲମ୍ବନ କରେ
(୪) ଅର୍ଥ ଧର୍ମ ମୋକ୍ଷ ଯେ ଆଶା କରେ ନାହିଁ

(୫) ଅର୍ଥ ଲୋଭ ପାଇଁ ଯେ ନୀଚ କାମ କରେ
(୬) ଅର୍ଥ ଜାଣି ଯିଏ ପାଟି ଫିଟାଏ ନାହିଁ
(୭) ଅର୍ଥ ନ ଜାଣି ଯିଏ କଥା କହେ ।

(୧୧) **ଅଧା ପେଟରେ କ'ଣ କରିବ**
(୧) ବାଟ ଚାଲିବ (୨) ନାଚ କରିବ (୩) ପିଠଉ ବାଟିବ
(୪) ରାତିରେ ଅନିଦ୍ରା ହେବାକୁ ଥିଲେ ।

(୧୨) **କାହାକୁ ବାଟ ଛାଡ଼ିଦେବ**
(୧) ଅନ୍ଧ (୨) ଛୋଟା (୩) ରୋଗୀ
(୪) ସେବକ (୫) ବର (୬) ଯୋଗୀ
(୭) କାମରେ ମତ୍ତ ଷଣ୍ଢ (୮) ବୋଝ ବୋହୁଥିବା ଲୋକ
(୯) ଭାର ବୋହୁଥିବା ଲୋକ (୧୦) ଗର୍ଭିଣୀ (୧୧) ନାରୀ

(୧୩) **ଏଗୁଡ଼ିକ ବିପଦ ସଙ୍କୁଳ**
(୧) ଘର ଅନ୍ଧାରୁଆ ହେଲେ
(୨) ବିବାହ ନ କରି କନ୍ୟା ଘରୁ ଫେରି ଆସିଥିବା ବର
(୩) ପାଦଫୁଲା ସାଙ୍ଗକୁ ଝାଡ଼ା ଓ ଜର ହେଲେ
(୪) ମୈଥୁନ ଦ୍ୱାରା ନିଃଶ୍ୱାସ ଖର ହେଲେ
(୫) ଅଚିହ୍ନା ଲୋକ ବାଟ ଘାଟରେ ଆଦର କଲେ

(୧୪) **ଅତି ହୀନମାନିଆ କଥା**
(୧) ବାହାହେବା ପାଇଁ ଯେ ଋଣ କରେ ।
(୨) ଯାହା ମୁଣ୍ଡରେ ଉକୁଣୀ ସାଲୁ ସାଲୁ ।
(୩) ଖୁଣି (ହତ୍ୟାକାରୀ) କଥା ଯେ ପ୍ରକାଶ ନ କରେ ।
(୪) ପିଲାପିଲି ଥାଇ ଯେ ଗୁଣି ଗାରିଡ଼ି ଶିଖେ ।
(୫) (ଗାଈ) ଚିରକୁ ଝୁଣି କରି ଯେ ଗାଈ ଦୁହେଁ
(୬) ବୈଷ୍ଣବର ଯଦି ଅହଂଗୁଣ (ଆତ୍ମଗର୍ବ) ଜାତ ହୁଏ ।

(୭) ଅସନୀ (ଅପରିଷ୍କାର ସ୍ତ୍ରୀ) ଯଦି ରାନ୍ଧୁଣୀ (ରାନ୍ଧିବା କାମ) ହୁଏ ।

(୮) ଖଣ୍ଡାୟତ ଲୋକ ଯଦି କନ୍ଧୁଣୀ ରକ୍ଷିତା ସ୍ତ୍ରୀ କରେ ।

(୯) ବଡ଼ଘର ସ୍ତ୍ରୀ ଯଦି ରଙ୍କୁଣୀ (ଅତି ଲୋଭୀ) ହୁଏ ।

(୧୦) ଖମାର ଘରେ କେଲୁଣୀ ଯଦି ରହେ ।

(୧୧) ନାଟୁଆ ଗାଈକୁ ଛିଣ୍ଡା ଗାଈଛନ୍ଦ ।

(୧୨) ଶଶ ଜାତୀୟ ପୁରୁଷକୁ ହାତୁଣୀ (ହସ୍ତିନୀ) ନାରୀ ।

(୧୩) ହସ୍ତିନୀ ନାରୀ ହୋଇଲେ ଛଇଳା ।

(୧୪) ଅବିବାହିତା ଝିଅ କୁଟୁଣୀ (ବେଶ୍ୟା) ହେଲେ ।

(୧୫) ରାଣ୍ଡ, ଛୋକାରୁଣୀ ବା ବେଶ୍ୟା ସହିତ ଯେ ପୀରତି କରେ ।

(୧୬) ରାଣ୍ଡ ବା ବିଧବା ଯଦି ଦେହରେ ହଳଦୀ ଲଗାଏ, ମୁଣ୍ଡରେ ସୁନ୍ଥା କରେ ଓ କୁଙ୍କୁମ ଲଗାଏ ।

(୧୭) ସତୀ ନାରୀକୁ ରମଣ ପାଇଁ ଯେ ଆଶା କରେ ।

(୧୮) ମର୍କଟ କୁଚାର (ବୃଦ୍ଧା) ଯଦି ରତିକରେ ।

(୧୯) ରଜବତୀ ସ୍ତ୍ରୀ ଯଦି ଦେଉଳରେ ପଶେ ।

(୨୦) ଦୁଃଖୀ ଲୋକ ଘରେ ଯଦି ପିଲାଝିଲା ହୁଏ ।

(୨୧) ନବଯୁବତୀର କୁଚ (ସ୍ତନ) ପଡ଼ିଗଲେ (ଝୁଲି ପଡ଼ିଲେ) ।

(୨୨) କୋଡ଼ ଯାଦୁ ଦେହସାରା ମାଡ଼ି ଗଲେ ।

(୨୩) ନୁଖୁରା (ଘିଅ ନଥାଇ) ବଳିତାରେ ଆଳତି କରାଗଲେ ।

(୨୪) ମନ ଦୁତୁ ଦୁତୁ କରି ଯେ ଦାନ କରେ ।

(୨୫) ପର ପୁଅଠାରେ ଯେ ମାନ କରେ ।

(୨୬) ଅଦରା ଦଦରା ଯାନରେ ଯେ ଚଢ଼ି ଯାତ୍ରାକରେ ।

(୨୭) ସାନ (ଛୋଟ ବୟସୀ) ଯଦି ଅବୋଲକରା ହୁଏ ।

(୨୮) ମନ୍ତ୍ର ପାଠ ଯାହାରକାନ କେବେହେଲେ ଶୁଣିନାହିଁ ।

(୨୯) ଯେଉଁ ନାରୀର ଧୀର କଥା ନାହିଁ ।

(୩୦) ଗର୍ଭବତୀ ଯେବେ ମାହାରୀ (ବେଶ୍ୟା) ହୁଏ ।

(୩୧) ଗହଳି ଭିତରେ ସ୍ତ୍ରୀମାନଙ୍କୁ ଯେ କହୁଣୀ ମାରେ ।
(୩୨) ବହୁମୂତ୍ର ରୋଗୀ ଯଦି ରମଣ ଇଚ୍ଛା କରେ ।
(୩୩) ଟୋକୀ ବିଧବା ଯଦି ଛୋଟ ଧଡ଼ିଥିବା ଲୁଗା ପିନ୍ଧେ ।
(୩୪) ଅହିଅ ସ୍ତ୍ରୀ ଯଦି ଧଡ଼ି ନଥାଇ ଲୁଗା ପିନ୍ଧେ ।
(୩୫) ଅପାତ୍ରରେ ଦାନ କଲେ ।
(୩୬) ପରଠାରେ ମାନ କଲେ ।
(୩୭) ମଦୁଆ କଥା ଶୁଣିଲେ ।
(୩୮) ନଈ ବାଲିରେ ଗାଡ଼ି ଚଳାଇଲେ ।
(୩୯) ପାନରେ ବହଳିଆ ଚୂନ ଦେଲେ ।
(୪୦) ଅଖାଡୁଆ ଲୋକର ଗାଳି ଗୁଲଜ ।
(୪୧) କାର୍ତ୍ତିକ ମାସରେ ମରୁଡ଼ି ହେଲେ ।
(୪୨) ଯେ ନାରୀ ଛାତିରେ ଲୁଗା ନଥିଲେ ।
(୪୩) କଛା ନମାରି ଯେ ରାତିରେ ଶୁଏ ।
(୪୪) ନଖ ଯେହୁ ଗୁଆକାତିରେ କାଟେ ।
(୪୫) ବିଶ୍ୱାସ କରେ ଅଚିହ୍ନା କତିରେ ।
(୪୬) ବୁଢ଼ୀ ଦିନେ ରସେ ମଞ୍ଜୁଆତିରେ ।

## (୧୫) ଯାହାର କର୍ମ ଫାଟେ

(୧) ଅଫିଟା କଦଳୀ ମଞ୍ଜ ଯିଏ କାଟେ
(୨) ତୁଠ/ଘାଟରେ ଗୋଡ଼ ଲମ୍ବାଇ ଯିଏ ଖଡୁ ମାଜେ
(୩) ଯିଏ ଛାତ୍ରମାନଙ୍କୁ ବ୍ରହ୍ମ ପାହାର ମାରେ
(୪) ଯିଏ ସକାଳୁ ଉଠି ଘର ନ ଓଳାଏ
(୫) ଯିଏ ଗୁରୁଜନମାନଙ୍କୁ କଠୋର କଥା କହେ
(୬) ଯିଏ ମହୁଲ ବିରି ଏକା ସହିତ ବାଟି ପିଠା କରେ
(ଏପରି ପିଠା ଅଜୀର୍ଣ୍ଣ କୌରକ)
(୭) ଯିଏ ପଣ୍ଡିତ ଓ ଗାୟକଙ୍କୁ କଷ୍ଟ ଦିଏ

(୮) ଯିଏ ବଜାରରେ ଚଢ଼ା ଦରରେ ବିକ୍ରି କରେ
(୯) ଯାହା ପିଢ଼ାରେ ପାଣି କଖାରୁ ଫାଟିଯାଏ
(୧୦) ସଦ୍ୟ ବିବାହିତ ଯଦି ରାତିରେ ଘରେ ରହିପାରେ ନାହିଁ

**(୧୬) ହରବର ହେବା ଲକ୍ଷଣ**

(୧) ଯୁବକ ଅବସ୍ଥାରେ ଅଭାବ ଘାରିଲେ
(୨) ଯୁବତୀ ନାରୀର ପତି ପାଖରେ ନଥିଲେ
(୩) ଧୋକାବାଜକୁ ଯେ ବିଶ୍ୱାସ କରେ
(୪) ପୁଷ ମାଘରେ ଯେ ଉପାସ ରୁହେ
(୫) ପାହାଚିଆକୁ ଯାହାର ଦମା କାଶ ଉଠେ
(୬) ମରହଟ୍ଟା ସୈନ୍ୟ (ବର୍ଗୀ) ପାଖରେ ଯେ ଚାକିରୀ କରେ

**(୧୭) ପିତାଲାଗିବା ପଦାର୍ଥ**

(୧) ଅରୁଚି ହେଲେ ଅମୃତ ବି ପିତା ଲାଗେ
(୨) ବୋଇଁ ନ ମିଳିଲେ ଝିଅ ପିତା ଲାଗେ
(୩) ବୁଢ଼ାମାନଙ୍କୁ ତରୁଣୀ ପିତା ଲାଗେ
(୪) ତୁଣ୍ଡ ଘାଆକୁ ରାଇତା ପିତା ଲାଗେ
(୫) କୁଆମଇତା ଙ୍କ ପିତା
(୬) ଧନ ସାଇତି ରଖିଲେ ପିତା ।

**(୧୮) କେଉଁ ପଦାର୍ଥ ଉଧାର ଦେବନାହିଁ**

(୧) ଅଶ୍ୱ/ଘୋଡ଼ା (ବର୍ତ୍ତମାନ ମଟର ଗାଡ଼ି) (୨) ଅସ୍ତ୍ର
(୩) ବସ୍ତ୍ର (୪) ନାରୀ/ସ୍ତ୍ରୀ

**(୧୯) ଯେଉଁମାନେ ଅଲକ୍ଷଣୀ**

(୧) ଯେଉଁ ସ୍ତ୍ରୀ ଅଶୁଖା ଧାନକୁ କୁଟେ
(୨) ଗରା ଭିତର ମୋଟେ ମାଜେ ନାହିଁ
(୩) ଗାଧୁଆ ତୁଠ/ଘାଟରେ ଯେ ପରଛିଦ୍ର ଚର୍ଚ୍ଚା କରେ

(୪) ଖାଇସାରି ହାତକୁ ଯେ ନିଠେଇ ଚାଟୁଥାଏ

(୫) ସକାଳେ ଓ ସଞ୍ଜରେ ଯେ ଘର ଝାଡୁ ନ କରେ

(୬) ଘର କାନ୍ଥ ମାନଙ୍କରେ ଶିଂଘାଣି ଛାଟେ

(୭) ସଙ୍ଗୀତ ଓ ନାଟ୍ୟ ସମାରୋହରେ ପାଟି ତୁଣ୍ଡ କରେ

(୮) ସ୍ୱାମୀ ସହିତ ଯେ ବଜାର ହାଟରେ ବୁଲେ

(୯) ବିଲେଇକୁ ଅକାରଣରେ ଯେ ପିଟେ

(୨୦) ଯେଉଁମାନେ ଅସମ୍ମାନଜନକ

(୧) ସନ୍ନ୍ୟାସୀ/ଦ୍ୱିଜ ଯଦି ଆଚାର ବିହୀନ ହୁଏ

(୨) କୁଳ ସ୍ତ୍ରୀ ଯଦି ଲାଜ ସରମ ନକରେ

(୩) ପଣ୍ଡିତ ଯଦି ବେଶ୍ୟା ଆସକ୍ତ ହୁଅନ୍ତି

(୪) ଜ୍ଞାନୀ ବିଚାରକ ଯଦି ପକ୍ଷପାତ କରନ୍ତି

(୫) ଦରିଦ୍ର ହୋଇ ଯଦି ମାନ କରେ

(୬) ଅତି କୃପଣ ଯଦି ଧନୀ ହୁଏ

(୭) ସନ୍ନ୍ୟାସୀ ଯଦି ଲୋଭୀ ହୁଏ

(୮) ବୁଢ଼ା ଯଦି କଟୁଭାଷୀ ହୁଏ

(୯) ବୁଢ଼ୀ ଦିନେ ଯିଏ ମୁଣ୍ଡରେ ଜୁଡ଼ା ପାରେ

(୧୦) କଥା କଥାରେ ଯେ ବଢ଼ାଇ କାଢ଼େ

(୨୧) ଏଗୁଡିକ ହାନିମାନିଆ

(୧) ଆଦର ଯତ୍ନ ସହିତ ଭୋଜନ ନହେଲେ

(୨) ନିଶ୍ଚିନ୍ତ ନହୋଇ ଶୋଇଲେ

(୩) ଯେଉଁ ଗୃହରେ ଗୃହିଣୀ ନଥାନ୍ତି

(୪) ମନ ସ୍ଥିର ନକରି ଭଜନ କଲେ

(୫) ଗାମୁଛା ଗାଧୋଇଲା ବେଳେ ନଥିଲେ

(୨୨) **ଯେଉଁମାନେ ଫଟା କପାଳିଆ**

(୧) ଆଳୁ ମୂଳରୁ ସାରୁ ବାହାରିଲେ

(୨) ଲୁଗାରୁ ଗୁଗୁଚିଆ ନ ଛାଡ଼ିଲେ

(୩) ଡାଲି ବଘାରିଲା ବେଳେ ହାଣ୍ଡି ଫାଟିଗଲେ

(୪) ରଜ ପର୍ବରେ ସ୍ତ୍ରୀ ଲୋକ ଋତୁମତୀ ହେଲେ

(୫) ଘଇତା (ସ୍ୱାମୀ) ଚବିଶ ଘଣ୍ଟା ଘରେ ରହିଲେ

(୨୩) **ଯେତେ ବଢ଼େଇଲେ ବଢ଼ି ଚାଲେ**

(୧) ଆହାର (୨) ନିଦ୍ରା (୩) ମଦ୍ୟ ପାନ

(୪) ଲୋଭ (୫) ଚୋରା ପ୍ରୀତି (୬) ସଞ୍ଚୟ ପ୍ରକୃତି

(୨୪) **ସୁଆଦିଆ**

(୧) ଉଠିଆ ଭାତ (୨) ପୁଟୁକା ଗାଲ

(୩) ଦରୋଟି ଭାଷା (୪) ମହୁଆ ମାଲ (ମହୁଲ ମଦ)

(୫) ଅଦ୍ଧ ନିଶା (୬) ମାଆ ପରଷା

(୨୫) **ଘରର କେଉଁ ଦିଗରେ କ'ଣ ରଖିବ**

(୧) ଉତ୍ତରକୁ ରୋଷାଇ ଘର (୨) ପୂର୍ବକୁ ନଳା

(୩) ଦକ୍ଷିଣକୁ ଝରକା ବା କବାଟ (୪) ପଶ୍ଚିମକୁ ବାଡି ବା ଖଳା

(୨୬) **ସୁଖକର**

ଉଷୁମ ଚଣା ଆଉ ଥଣ୍ଡା ପାଣି,
ଉଷୁମ ଭଜା ଆଉ ଥଣ୍ଡା ବାଣୀ ।
ଭାଙ୍ଗକୁ ଚୁଡା ଘଷା ମାଉଁସକୁ ମଦ,
ଗଞ୍ଜେଇକି ଘିଅ ଭାତ, ଅଫିମକୁ ଦୁଧ ।
ଗରମ ଭଜା, ଶିତଳ ଆମ୍ବିଳ,
ଗରମ ଭାତ ଆଉ ସଜ ପଖାଳ ।
ତିଳଉ ଚୁଡା ଆଉ ଚିକିଟା ଗୁଡ଼,
ମାରି ଦେଉଥିବୁ ସୁଡ୍‌କୁ ସୁଡ୍ ।

ଗରମ ମୁଢ଼ି ଆଉ ବସା ଦହି,
ଉଷୁମ ଦୁଧ, ଗରମ ଚାହା,
ଥଣ୍ଡା ଚହ୍ଲା, ମୁଣ୍ଡା ଛେନା ।

**ଅସୁଖ କର**

ଗରମ ପଣା, ଶୀତଳ ଚଣା, ଦଦରା ଘଣା, ବାଟୋଇ ବଣା,
ମୁହଁରେ (ଘାଆ ନ ଶୁଖିବା) କଣା, ଶଗଡ଼ ଗୁଳାରେ ଖଣା (ଗାତ).
ଭାତ ତିଅଣ (ତରକାରି) କାଳୁଆ (ଅତି ଥଣ୍ଡା) ହେଲେ ।

(୨୭) **ଚିନ୍ତାର କାରଣ**

(୧) ଓଲୁ/ବୋକା ଲୋକ ଚୋରି କଲେ
(୨) ଗରୀବ ମାଇପ/ସ୍ତ୍ରୀ ସୁନ୍ଦରୀ ହେଲେ
(୩) ବାଡ଼ି ଦୁଆରେ ଗଭୀର ପୋଖରୀ
(୪) ବେପାରୀ ଠକ ଲୋକକୁ ଉଧାର ଦେଲେ
(୫) ଚାକର ଆଜ୍ଞାକାରୀ ନହେଲେ
(୬) ବ୍ରହ୍ମଚାରୀ (ସ୍ତ୍ରୀ ସଙ୍ଗ) ମୈଥୁନ ଇଚ୍ଛା କଲେ
(୭) ଶାର ଚଢ଼େଇ ବାଙ୍ଗର ଗଛରେ ବସା ବାନ୍ଧିଲେ
(୮) ଥୋବରୀ ଦେଖି ତା ସହିତ ସଙ୍ଗାତ ବସିଲେ
(୯) ଖମାରୀ ଧାନ ଆତ୍ମସାତ କଲେ
(୧୦) ଯୁବତୀ (ଅବସ୍ଥାରେ) ଦେହରେ ବଡ଼ ବେମାରୀ ହେଲେ

(୨୮) **ଏସବୁ ନିରାଟ ସତ କଥା**

(୧) ଓସ୍ତ ଗଛକୁ କେବେ କାଟିବ ନାହିଁ
(୨) ଛାତ୍ର ଗୁରୁନିନ୍ଦା କରିବ ନାହିଁ
(୩) ଏକୁଟିଆ ବାଟ ଚାଲିବ ନାହିଁ
(୪) ଗାଧୁଆ ଘାଟରେ ଦାନ୍ତ ଘଷିବ ନାହିଁ
(୫) ପୋଖରୀ କୂଳରେ ଆମ୍ବଗଛ ଉଠିଲେ କାଟିବ

(୨୯) କାହାରିଠାରେ ପ୍ରକାଶ କରିବ ନାହିଁ

(୧) ଔଷଧ ମହୋଷଧିର ଭାଗ ମାପ ସଂପର୍କରେ

(୨) ନିଜ ପାଖରେ ଥିବା ଧନ ସଂପର୍କରେ

(୩) ପର ସ୍ତ୍ରୀ ପାଖରେ ଭାବ ଥିଲେ ସେ ସଂପର୍କରେ

(୪) ନିଜ ସ୍ତ୍ରୀର ଦୋଷ ସଂପର୍କରେ

(୫) ଦାନ ଦେଲେ ବା ଋଣ କଲେ ତା ସଂପର୍କରେ

(୬) ବନ୍ଧୁକୁ ଉଧାର ଦେବା ଟଙ୍କା ସଂପର୍କରେ

(୭) ଆଗତ ଭବିଷ୍ୟତ ଯୋଜନା ସଂପର୍କରେ

(୮) ଅମଳ କରିବା ଜମି ସଂପର୍କରେ

(୩୦) **କଅଁଳ ସମ୍ପର୍କରେ**

(୧) କଅଁଳ ନଡ଼ିଆ ଖାଇବା ସୁଖ

(୨) କଅଁଳ ଗୁଆ ପାଟି ବାନ୍ଧି ପକାଏ

(୩) ଭେଣ୍ଡା ଟୋକାଙ୍କୁ କଅଁଳ ଭାତ ମନ୍ଦ

(୪) ଗାଈ ଦୁଧିଆଳୀ କି ନୁହେଁ, କଅଁଳା ବାଛୁରୀ ଦେହରୁ ଜଣାଯାଏ

(୫) କଅଁଳା ପୁଅ କାଖ ହବାକୁ, ଚାହେଁ

(୬) କଅଁଳା କାଠରେ ଶଗଡ଼ର ଅଖ ହୋଇପାରେ ନାହିଁ

(୭) କଅଁଳିଆ ବଚନକୁ ବିଶ୍ୱାସ ନାହିଁ

(୩୧) କାହା ଦ୍ୱାରା କ'ଣ ଜାଣିହୁଏ

(୧) **ଜଙ୍ଘ ନାଡ଼ରୁ ପାଣିର ଗଭୀରତା ଜାଣିହୁଏ**

(୨) **କଥାବାର୍ତ୍ତାରୁ ପଣ୍ଡିତ କି ମୂର୍ଖ ଜାଣିହୁଏ**

(୩) **ବ୍ୟବହାରରୁ ଉଚ୍ଚ ବଂଶ କି ନୁହେଁ ଜାଣି ହୁଏ**

(୪) **ଜିଆ ଗାଳିବାରୁ ଜମି ଚିହ୍ନା ହୁଏ**

(୫) **ବିପଦ ପଡ଼ିଲେ ବନ୍ଧୁ ଚିହ୍ନା ହୁଏ**

(୩୨) **ଏଗୁଡିକ ଅଚାବୁଆ (ଅନିପୁଣ)**

(୧) କଷା ଗୁଆ (୨) ବୁଢ଼ା ଶୁଆ (୩) ଦହି ମୁହିଁବା କାଠ ଖୁଆ
(୪) ଶାଗୁଣା ଛୁଆ (୫) ଧାନ ଗଛ ବେଉଷଣ ପୂର୍ବରୁ

(୩୩) **ଏସବୁ ବଡ଼ ଦୁର୍ବଳ**

(୧) କାଣ୍ଡ ଷଣ୍ଢିଆ ହଳ କଲେ (ବାଛୁରୀ ଧରାରେ ଖଇଚା ହେଲେ ବଳଦ ଷଣ୍ଢ ପରି ଶର କାଢ଼େ)
(୨) ରାଣ୍ଡ ସିନ୍ଦୁର କଜଳ ନାଇଲେ
(୩) କାର୍ତ୍ତିକ ମାସରେ ବଢ଼ି ହେଲେ
(୪) ଖୋଡ଼ିଆ ଘଣ୍ଟା ମାଦଳ ବଜାଇଲେ
(୫) ଧନ ଲୋଭରେ ଅଥଳକୁ ବାହାହେଲେ
(୬) ଟୋକା ରାଜା ପାଗଳ ହେଲେ
(୭) ଗର୍ଭିଣୀ ଛେଳି କାଟି ଖାଇଲେ
(୮) ଟୋକୀ ଅତି ପାତଳ ଶାଢ଼ି ପିନ୍ଧିଲେ

(୩୪) **ଏମାନଙ୍କୁ ଦେଖି ମୁହଁ ମୋଡ଼ିବ**

(୧) କାଶ ଖଙ୍କାର ଯେ ଢ଼ୋକି ଦିଏ
(୨) ବୁଢ଼ା ଦିନେ ଯେ ଟୋକୀ ବାହା ହୁଏ
(୩) ଓପାସୀ ଭୋକୀଙ୍କୁ ଯେ ଦୁଆରୁ ଫେରାଇଦିଏ
(୪) ଭେଲ ମିଶାଇ ଯେ ଗ୍ରାହକଙ୍କୁ ଠକେ

(୩୫) **କାହାପାଇଁ କେଉଁମାନେ ବଢ଼ନ୍ତି**

(୧) ଉଚ୍ଚ ବଂଶର ଲୋକ ବଢ଼ିଲେ, ପର୍ବ, ବ୍ରତ, ବିବାହ ଉତ୍ସବରେ ଲୋକଙ୍କୁ ଭଲ ଖାଇବାକୁ ଦିଅନ୍ତି ।
(୨) କ୍ଷତ୍ରୀୟ ଲୋକ ବଢ଼ିଲେ ବିଧବା ବଢ଼ନ୍ତି (କାରଣ ଯୁଦ୍ଧରେ ପୁରୁଷମାନେ ମରନ୍ତି)
(୩) ମୂର୍ଖ ଲୋକ ବଢ଼ିଲେ ନିର୍ଲଜ୍ଜଙ୍କ ସଂଖ୍ୟା ବଢ଼େ

(୪) ବଣ୍ୟ ଜାତିର ଲୋକ ବଢ଼ିଲେ, ଲୋଭ ବଢ଼େ

(୫) ଚଷାମାନେ ବଢ଼ିଲେ ଧୋବ ଲୁଗା ପିନ୍ଧନ୍ତି

(୬) ଖଣ୍ଡାୟତମାନେ ବଢ଼ିଲେ ନିଶରେ ତାଉ ଦିଅନ୍ତି

(୭) ବେପାର ବଢ଼ିଲେ ଜମା ଖରଚ ଖାତା ମୋଟା ହୁଏ

(୮) ନ ବାନ୍ଧିଲେ ଘାଇ ବଢ଼ିଯାଏ

(୯) ମଠର ମହନ୍ତମାନେ ବଢ଼ିଲେ ମାତାମାନଙ୍କୁ ରଖନ୍ତି ।

(୧୦) ମହାନ୍ତିମାନେ ବଢ଼ିଲେ କପଟତା ବଢ଼ିଯାଏ ।

(୧୧) ତେଲିମାନେ ବଢ଼ିଲେ ସର୍ବଦା କବାଟ ବନ୍ଦ କରି ଧନ ସଂପଦ ଲୁକ୍କାୟିତ ଅବସ୍ଥାରେ ରଖନ୍ତି ।

(୧୨) ଧୋବାମାନେ ବଢ଼ିଲେ ତାଡ଼ି/ମଦ ଖିଆ ବଢ଼େ ।

(୧୩) ଗଉଡ଼ମାନେ ବଢ଼ିଲେ ମାଡ଼ ଖାଆନ୍ତି ।

(୧୪) କିଆରିକୁ ପାଣି ମଡ଼େଇବା ତେଣ୍ଡା ବଢ଼ିଲେ ଫସଲ ବଢ଼େ ।

(୧୫) ଭଣ୍ଡାରିମାନେ ବଢ଼ିଲେ ସେମାନଙ୍କର ପିଣ୍ଡା ବଢ଼ିଯାଏ ଅର୍ଥାତ ପ୍ରସସ୍ଥ ହୁଏ (କାରଣ ପଇସାବାଲା ହେଲେ ଗାଁରେ ଘର ଘର ବୁଲି ଖିଅର କରେ ନାହିଁ । ଲୋକେ ତା'ଘରକୁ ଆସି ଖିଅର ହୁଅନ୍ତି । ତେଣୁ ପିଣ୍ଡା ବଢ଼ାଏ)

(୧୬) କେଉଟ ବଢ଼ିଲେ ଜାଲର ପରିମାଣ ବଢ଼େ ।

(୧୭) ଧନ ବଢ଼ିଲେ ଗାଲ ବଢ଼େ । (କାରଣ ଭଲ ଖାଇଲେ ପିଇଲେ ଗାଲ ଦିହ ଗୋଲଗାଲ ଦେଖାଯାଏ)

(୧୮) ରୋଗ ବଢ଼ିଲେ ବଇଦ (ଡାକ୍ତର) ବଢ଼ନ୍ତି ।

(୧୦) ଗଛ ବଢ଼ିଲେ ତାର ଛାଇ ବଢ଼େ ।

(୨୦) କଚେରି ବଢ଼ିଲେ (ବେଶି ହେଲେ) କଳି (ମକଦ୍ଦମା) ବଢ଼େ ।

(୨୧) କାଚେରା (ଚୁଡ଼ି କାଚ ବିକାଳି) ବଢ଼ିଲେ ସେମାନଙ୍କ ଭିତରେ କଳି ବଢ଼େ । (କାରଣ କାଚ ବିକାଳିମାନେ ଆପଣା ମଧ୍ୟରେ ଗାଁ ସବୁ ବାଣ୍ଟି ନେଇଥାନ୍ତି । ତେଣୁ ଜଣେ ଅନ୍ୟ ଜଣକ ଗାଁ ଭିତରେ ପଶି କାଚ ବିକ୍ରୟ କଲେ ଉଭୟଙ୍କ ମଧ୍ୟରେ କଳି ହୁଏ) ।

(୨୨) ଉଚ୍ଚ ପଦସ୍ଥ ବ୍ୟକ୍ତି ବୃଦ୍ଧି ପାଇଲେ ଭୋଗ ବିଳାଶ ବଢ଼େ ।
(୨୩) ବିଧର୍ମୀ-ପାପୀ ଲୋକ ବୃଦ୍ଧି ପାଇଲେ ସମାଜ ଦୂଷିତ ହୁଏ ।
(୨୪) ବେଶ୍ୟାମାନେ ବଢ଼ିଲେ ଦେହର ସାଜସଜ୍ଜା ବଢ଼େ ।
(୨୫) ମଳକଣ୍ଟକ ବଢ଼ିଲେ କୁଣ୍ଡେଇବା ବଢ଼େ ।
(୨୬) ନାଟୁଆମାନେ ବଢ଼ିଲେ ସେମାନଙ୍କର ଛଟକ-ରସିକତା ବଢ଼େ ।
(୨୭) ସାଆନ୍ତ ବଢ଼ିଲେ ରାଗ ବଢ଼େ ।
(୨୮) ଅନ୍ଧାର ବଢ଼ିଲେ ଭୟ ବଢ଼େ ।
(୨୯) ନଈ ବଢ଼ିଲେ ବାଲି ବଢ଼େ ।
(୩୦) ଅକର୍ମା ବଢ଼ିଲେ ପଶା ପାଲି ବଢ଼େ ।
(୩୧) ଯୋଗୀମାନେ ବଢ଼ିଲେ ସେମାନଙ୍କର ଲୟ ବଢ଼େ ।
(୩୨) ମୁଣ୍ଡ ବଢ଼ିଲେ ପଗଡି ବଢ଼େ ।
(୩୩) ସହର ବଢ଼ିଲେ ଗଳି ଅର୍ଗଳି ବଢ଼େ ।
(୩୪) ଯାତରା ବଢ଼ିଲେ ଲୋକ ଗହଳି ବଢ଼େ ।
(୩୫) ପୋଇଲୀ (ଦାସି)ମାନେ ବଢ଼ିଲେ ମୁଣ୍ଡରେ ସୁଙ୍କା କଟା ବଢ଼େ ।
(୩୬) ଦନାଇ ଦାସ ବଢ଼ିଲେ ପ୍ରବଚନ ତଥା ପହଲି ବଢ଼େ ।

## (୩୬) ବୃଦ୍ଧି ପାଇବାର ଫଳ

(୧) ନଈ ବଢ଼ିଲେ- କେଉଟ ରଜା ଭାବେ
(୨) ଝିଅ ବଢ଼ିଲେ- ଜୋଇଁ ପିଲା ଖୋଜା ପଡ଼େ
(୩) ମାଣ୍ଡିଆ ବଢ଼ିଲେ- ଅଳ୍ପ ଫଳ ହୁଏ
(୪) ଘାଆ ବଢ଼ିଲେ- ଦେହକୁ କାଳ ହୁଏ
(୫) ଜହ୍ନ ବଢ଼ିଲେ- ରାତି ସୁନ୍ଦର ଓ ସୁଖକର ହୁଏ
(୬) ବଥ ବଢ଼ିଲେ- ଭାରି ଯୋର ଜ୍ୱଳା ବିନ୍ଧା କରେ
(୭) ଗୋଠ ବଢ଼ିଲେ- ସମ୍ଭାଳିବା ପାଇଁ ବହୁତ କଷ୍ଟ ହୁଏ
(୮) ଚିନ୍ତା ବଢ଼ିଲେ- ମନ ବହୁତ ଘାରି ହୁଏ
(୯) ରଣ ବଢ଼ିଲେ- ମନ ବିକଳ ହୁଏ

(୧୦) ଧନ ବଢ଼ିଲେ- ଶତ୍ରୁ ବଢ଼ନ୍ତି

(୧୧) ପାପ ବଢ଼ିଲେ- ଚକ୍ର ବୃଦ୍ଧି ପାଏ

(୧୨) ବାଉଁଶ ବଢ଼ିଲେ- ବଙ୍କା ହୁଏ

(୧୩) ପାଣ ବଢ଼ିଲେ- ନିଶ ରଖନ୍ତି

(୧୪) ଦୁଃଖ ବଢ଼ିଲେ- ବିଷ ଖାଆନ୍ତି

(୧୫) ପିଲା ବଢ଼ିଲେ- ଜଞ୍ଜାଳ ବଢ଼େ

(୧୬) ମାଛ ବଢ଼ିଲେ- ସୁଆଦିଆ ଲାଗେ

(୧୭) ଚଷା ବଢ଼ିଲେ- ପାଠ ବଢ଼େ

(୧୮) ଧାନ ବଢ଼ିଲେ- ଅମାର ବଡ଼ କରିବାକୁ ହୁଏ

(୧୯) ରୁଢ଼ (ଦାଢ଼ି) ବଢ଼ିଲେ-ଭଣ୍ଡାରି ଲୋଡ଼ା ହୁଏ

(୨୦) ମୂଷା ବଢ଼ିଲେ- ଖରାପ ସମୟ ପଡ଼େ

(୨୧) ମଣିଷ ବଢ଼ିଲେ- ବୁଦ୍ଧି ପାକଳ ହୁଏ

(୨୨) ଶାଳୀ ବଢ଼ିଲେ- ଥଟ୍ଟା ଟାପରା ବଢ଼େ

(୨୩) ଦାରୀ (ବେଶ୍ୟା) ବଢ଼ିଲେ- ଛଇ ବଢ଼େ

(୨୪) ଦୋକାନ ବଢ଼ିଲେ- ଧାର ଉଧାର ବଢ଼େ

(୩୭) **ଏହିମାନଙ୍କର ଧନ୍ଦା ବୁଡ଼େ**

(୧) କେଉଟକୁ ଶର୍ଦ୍ଧି ହେଲେ (୨) ଦରଜୀର ଟିପ ଦରଜ କଲେ

(୩) ବଣିଆର ଆଖି ଧରିଲେ (୪) ଗୁଡିଆ ହାତରେ ଛଉ ହେଲେ

(୫) ଧୋବଣୀର ଗୋଡକନ୍ଦା ହେଲେ ।

(୩୮) **କେଉଁମାନେ କର୍ମଛଡା**

(୧) କେମ୍ପା କରଣ (୨) ଛୋଟା ଘୋଡା

(୩) ଖନା ଅବଧାନ (ମାଷ୍ଟର) (୪) ଡେଢ଼ା ଚାକର

(୫) ଅଣ୍ଡା ଧରାରେ ପାଣିକଢ଼ା (୬) ନିତି ମୂଲିଆକୁ ଶ୍ୱାସ ଧରିଲେ

(୭) ଦଣ୍ଡବଇଠକ ବେଳେ ନିଶ୍ୱାସ ଛାଡିଲେ

(୮) କେଳାଙ୍କ କଥାରେ ଯେ ବିଶ୍ୱାସ କରେ ।

(୩୯) **କ'ଣ ହୁଏ**

(୧) ବେଶି 'ଖଟା' ଖାଇଲେ ନାଡ଼ୀ ଗଡ଼ି ପଡ଼େ ।

(୨) ବେଶି 'ମିଠା' ଖାଇଲେ ରୋଗ ବଢ଼େ

(୩) ବେଶି 'ପିତା' ଖାଇଲେ ବୀଜ ଶୁଖିଯାଏ

(୪) ବେଶି 'ରାଗ' ଖାଇଲେ ତେଜ ମଉଳିଯାଏ

(୫) ବେଶି 'ଲୁଣ' ଖାଇଲେ ଶୋଷ ହୁଏ (ଶୋଷା)

(୬) ବେଶି 'କଷା' ଖାଇଲେ ଛାତି ଧରେ ।

(୪୦) **ଏଇ ଲୋକମାନେ ଅଧା ବୟସରେ ମରନ୍ତି**

(୧) ଗର୍ଭପାତ ଯିଏ କରେ ବା କରାଏ ।

(୨) ପରର ପାଚିଲା ଧାନ କ୍ଷେତକୁ ଯିଏ ଚରିବା ପାଇଁ ଗୋରୁ ଗାଈ ଛାଡ଼ିଦିଏ ।

(୩) ଅବିବାହିତା କନ୍ୟା ସହିତ ଯେ ମୈଥୁନ କରେ ।

(୪) ଜବରଦସ୍ତି ଯେ ପର ଯୁବତୀକୁ ହରଣ କରେ ।

(୫) ପୁରୁଷ ବୀର୍ଯ୍ୟକୁ ଯେଉଁ ପାପି ଲୋକ ଖାଇଦିଏ ।

(୬) ପର ସ୍ତ୍ରୀ ପୁରୁଷର ମୈଥୁନ ଯେ ଲୁଚିକରି ଦେଖେ ।

(୭) ବ୍ରାହ୍ମଣ ହୋଇ ଯେବେ ବେଶ୍ୟା ଘରେ ଖାଏ ।

(୮) ପଶୁ ସହିତ ଯେ ମୈଥୁନ କରେ ।

(୯) ଗୁରୁ ପତ୍ନୀଙ୍କୁ ଯେ ଉପଭୋଗ କରେ ।

(୧୦) ଘରେ ଯେ ନିଆଁ ଲଗାଇ ଦିଏ ।

(୧୧) ବିଧବା ବ୍ରାହ୍ମଣୀକୁ ଯେ ସଙ୍ଗମ କରେ ।

(୧୨) ନାରୀ ବଶ କରିବା ମନ୍ତ୍ର ଯେ ଶିକ୍ଷା କରେ ।

(୧୩) ଦେବ ସମ୍ପତ୍ତିକୁ ଯେ ହରଣ କରେ ।

(୧୪) ଗୁପ୍ତରେ ପାପ କରି ଯେ ଶାସ୍ତ୍ର ସଂପର୍କରେ ଭାଷଣ ଦିଏ ।

(୧୫) ଗର୍ଭବତୀ ସ୍ତ୍ରୀ ସହିତ (ପୁତ୍ରଲାଭ ପାଇଁ କରିଥିବା ପୁଂସବନ ବ୍ରତ ପରେ) ଯେ ମୈଥୁନ କରେ ।

(୧୬) ପରର ବହିପତ୍ର ଯେ ଚୋରି କରେ ।

(୧୭) ମରୁଡ଼ି ଦୁର୍ଭିକ୍ଷବେଳେ ଯେ ଓଜନ ମାପକୁ ଛୋଟକରି ଜିନିଷ ମାପେ ।

(୧୮) ନୌକାରେ ବା ନଦୀରେ ଯେ ନାରୀ ହରଣ କରେ ।

(୧୯) ଗୋଚର ପଡ଼ିଆକୁ ଯିଏ ତାଡ଼େ

(୨୦) ଯେଉଁ ବୈଦ୍ୟ (ଡାକ୍ତର) ମୂର୍ଖଙ୍କ ପରି ବିଷାକ୍ତ ଔଷଧ ଦିଏ ।

(୪୧) **ଯେଉଁମାନଙ୍କୁ ଶାସ୍ତ୍ରରେ ଜନନୀ କହନ୍ତି**

(୧) ଗର୍ଭ ଧାରଣୀ (୨) କ୍ଷୀରଦିଆ ମାଆ (୩) ଗୁରୁପତ୍ନୀ

(୪) ସାବତ ମାଆ (୫) ମାଇଁ (୬) ବ୍ରାହ୍ମଣୀ

(୭) ଧାଈମା (୮) ଗାଈ

(୪୨) **କେଉଁ ସମୟରେ ପେଟରେ ଭାତ ଥିଲେ ନର୍କଗାମୀ ହୁଅନ୍ତି**

(୧) ଚନ୍ଦ୍ରଗ୍ରହଣ ସମୟରେ (୨) ସୂର୍ଯ୍ୟପରାଗ ସମୟରେ

(୩) କନ୍ୟାଦାନ ସମୟରେ (୪) ବ୍ରାହ୍ମଣ ଭୋଜନ ସମୟରେ

(୫) ଏକାଦଶୀ ଦିନ (୬) ହୋମ ସମୟରେ

(୭) ଦୀକ୍ଷା ଗ୍ରହଣ ସମୟରେ (୮) ଶିବ ଦର୍ଶନ ସମୟରେ

(୯) ନିର୍ବନ୍ଧ ପ୍ରଭୃତି ସତ୍ୟ କରିବା ସମୟରେ ।

(୪୩) **କେଉଁମାନଙ୍କ ଉପରେ ରାଗିବ ନାହିଁ**

(୧) ଗାଆଁ ପଧାନ (୨) ରୋଗୀ (୩) ବୁଢ଼ୀ ଗାଈ

(୪) ବାଳୁତ ପିଲା (୫) ଦାଈ (ପ୍ରସବ କରାଇବା କାର୍ଯ୍ୟରେ ନିପୁଣା ସ୍ତ୍ରୀ)

(୬) ଭାଇ (୭) ପାଗଳ (୮) ଘର ଧନ୍ଦାରେ ବ୍ୟସ୍ତ ଥିବା ନାରୀ

(୯) ଋଣ ଦାତା (୧୦) ପୁରୋହିତ (୧୧) ଭିକାରୀ

(୧୨) ରାଜା (୧୩) ଗୁରୁଜନ (୧୪) କର୍ମୀ

(୧୫) ବ୍ରାହ୍ମଣ (୧୬) ନିଶାଖିଆ (ମାତାଲ) (୧୭) ପାଣ

(୧୮) ପଠାଣ (ମୁସଲମାନ) (୧୯) ଜମିଭାଗରେ ଧରିଥିବା ବ୍ୟକ୍ତି ।

(୪୪) **ବାରଣ**

(୧) ଗାତରେ ମୂତିବ ନାହିଁ (୨) ଉଇ ହୁଙ୍କାରେ ହଗିବ ନାହିଁ

(୩) ପାଉଁଶରେ କୁଦିବ ନାହିଁ (୪) ଓସ୍ତଗଛକୁ କାଟିବ ନାହିଁ ।

(୪୫) **କାହାରର ପରିଗୁଣ କିପରି କେଉଁଥିରୁ ଜଣାପଡ଼େ**

(୧) ଗ୍ରାମର ପରିଗୁଣ- ଧୋବା ତୁଠରୁ ଜଣାପଡ଼େ ।

(୨) ବନ୍ଧୁର ପରିଗୁଣ - ଦୂରରୁ ଦେଖିଲେ ହସେ ।

(୩) ମିତ (ସଙ୍ଗାତ)ର ପରିଗୁଣ - ବିପତ୍ତି ବେଳରେ ଆସି ଠିଆ ହୁଏ ।

(୪) ଭାର୍ଯ୍ୟା (ସ୍ତ୍ରୀ)ର ପରିଗୁଣ - ପ୍ରତିଦିନ ନିଜ ସ୍ୱାମୀକୁ ଘଷେ ।

(୫) ବୋହୂର ପରିଗୁଣ- ପ୍ରତିଦିନ ନିଜେ ରାନ୍ଧି ଖାଇବାକୁ ଦିଏ ।

(୬) ପୁଅ ପରିଗୁଣ- ମା' ଓ ବାପାଙ୍କର ଭରଣ ପୋଷଣ କରେ ।

(୭) ପ୍ରଭୁ (ମାଲିକ) ପରିଗୁଣ- ଭୃତ୍ୟ (ଅଧିନସ୍ଥ କର୍ମଚାରୀ) ମାନଙ୍କ ସହିତ ମଧୁର ବଚନରେ ବ୍ୟବହାର କରେ ।

(୮) ଜମି (ଖେତ) ପରିଗୁଣ - ଗ୍ରାମର ନିଷ୍କାସିତ ପାଣି ପଶିଲେ ।

(୪୬) **ହରବର ହେବାର ଯୋଗ**

(୧) ଗ୍ରାମ ହୋଇ ଯଦି, ଗୋଚର ଜମି ନଥାଏ ।

(୨) ଗର୍ଭିଣୀ ସ୍ତ୍ରୀର ଯଦି ହଗାଜର (ଜର ସହିତ ଝାଡ଼ା) ହୁଏ ।

(୩) ରୋଗରେ ପଡ଼ିଥିବାବେଳେ ଯଦି ପାଖରେ କେହି ନଥାଏ ।

(୪) ବାହାଘରର ମଙ୍ଗନ ଦିନ ଯଦି ପଇସା ସରି (ଶେଷ) ଯାଏ ।

(୫) ଘରେ ଯଦି ସବୁବେଳେ କଳି ତକରାଳ ଲାଗୁଥାଏ ।

(୬) ପରଷୁଣୀ (ଖାଦ୍ୟ ଦ୍ରବ୍ୟ ବାଢ଼ିବା ଲୋକ) ଯଦି ବାଢ଼ିଲାବେଳେ ପାତର ଅନ୍ତର କରେ ।

(୭) ବିଧମା ନାରୀର ଯଦି ଧର୍ମ ଡର ନଥାଏ ।

(୮) ଭଗନ୍ଦର ରୋଗରେ ପୂଜରକ୍ତ ନ ଶୁଖିଲେ ।

(୯) ଝିଅ ନେବାକୁ ଯଦି ସମୁଦୀ ଜିଗର କରନ୍ତି ।

(୧୦) ଅଠର ବର୍ଷରେ ଯଦି ଜ୍ୱୋଇଁର ଆଦର ନଥାଏ ।

(୧୧) ଶ୍ୱଶୁର ଘରେ ଯଦି କାହାର ମାରକ ଦଶା ପଡ଼େ ।

(୧୨) ପାଦରେ ଯଦି ଖଡ଼ି ଫୋଟକା ଉଠେ ।

(୧୩) ବାଞ୍ଝ ନାରୀ ଯଦି ଗେଲ ବସର ହୁଏ ।

(୧୪) ଘୋର ବରଷାବେଳେ ଯଦି ବର ଓ ବରଯାତ୍ରୀ ଆସନ୍ତି ।

## (୪୭) ଗେହ୍ଲା ହେଲେ କ'ଣ କରନ୍ତି

(୧) ଗେହ୍ଲା ପୁଅ ଯେ ଧୂଳିରେ ଗଡ଼େ ।

(୨) ଗେହ୍ଲା କୁକୁର ଉପରେ ଚଢ଼େ ।

(୩) ଗେହ୍ଲା ମାଇପ (ସ୍ତ୍ରୀ) ରୋଷାଇ ଛାଡ଼େ ।

(୪) ଗେହ୍ଲା ବିରାଡ଼ି ପଶଇ କୋଡ଼େ ।

(୫) ଗେହ୍ଲା ଶୁଆ ଯେ ହାତ କାମୁଡ଼େ ।

## (୪୮) କର୍ମଛଡ଼ା ପ୍ରକୃତି

(୧) ଗୋଡ଼ ନ ଧୋଇ ଦେଉଳ (ମନ୍ଦିର) ଭିତରକୁ ଯିବା ।

(୨) ମୁହଁ ନ ଧୋଇ ଖାଇ ବସିବା ।

(୩) ହାଣ୍ଡି ନ ଧୋଇ ରୋଷାଇ କରିବା ।

(୪) ଚାଉଳ ନ ଧୋଇ ଭାତ ରାନ୍ଧିବା ।

(୫) କ୍ଷିଅର ହୋଇ ମୁଣ୍ଡ ନ ଧୋଇଲେ ।

(୬) କୁଣ୍ଡ ନ ଧୋଇ ପାଣି ଭର୍ତ୍ତି କରିବା ।

(୭) ଅଇଁଠା ହାତ ପାଣିରେ ନ ଧୋଇଲେ ।

(୮) ରାତି ପିନ୍ଧା ଲୁଗା ନ ଧୋଇଲେ ।

(୯) ଗରାକୁ ନ ମାଜି ପାଣି କାଢ଼ିବାପାଇଁ କୂଅରେ ପୁରାଇଲେ ।

(୧୦) ବାସନ ନ ଧୋଇ ସେହିଥିରେ ଖାଦ୍ୟ ପଦାର୍ଥ ବାଢ଼ିଦେଲେ ।

(୧୧) ଅଣ୍ଡାପାଣି ନ କରି ଭାତ ଖାଏ ।

(୧୨) ଗୋଦର ଗୋଡ଼ରେ ପାହୁଡ଼ ପିନ୍ଧିଲେ ।

(୧୩) କେବଳ ଖାରିଆ ଖଡ଼ାର ତରକାରୀ ହେଲେ ।

(୧୪) ଖଇ ଚୁଡ଼ାରେ ଧାନ ଘର ଘର ହେଲେ ।

(୧୫) ଡେଉଁରିଆ ବାନ୍ଧି ମଡ଼ା ଛୁଇଁଲେ ।

(୧୬) ନଡ଼ିଆ ଗଛ ଝଡ଼ା ନ ହେଲେ ।

(୧୭) ଝିଅ ମଙ୍ଗନରେ ଯେଉଁ ପହୁଡ଼ ।

## (୪୯) କର୍ମ ପୋଡ଼ା ଲକ୍ଷଣ

(୧) ଘିଅ ପିଠା ଚେମଡ଼ା ହେଲେ ।

(୨) ପୋଷା କୁକୁର କାମୁଡ଼ା ହେଲେ ।

(୩) ଘୋଡ଼ା ଦେହରୁ ଚମଡ଼ା ଛାଡ଼ିଲେ ।

(୪) ମଡ଼ା ଗ୍ରାମରେ ପଡ଼ି ରହିଲେ ।

(୫) ଯେତେ ରୋଜଗାର କଲେ ଯଦି ଘଡ଼ା ନ ପୂରିଲା ।

## (୫୦) କର୍ମ ଖରାପ ହେଲେ

ଗରୀବ ମାଇପ ହେଲେ ଉଦଣ୍ଡୀ,
ଗେଡ଼ା ପୁଅକୁ ବୋହୂ ହେଲେ ଧଣ୍ଡୀ ।
ଗ୍ରାମରେ ପ୍ରବଳ ହୋଇଗଲେ ରାଣ୍ଡୀ,
ଦେଉଳ ପାଖରେ ରହିଲେ ଶୁଣ୍ଡି ।

## (୫୧) ଯେଉଁମାନେ ଅପମାନ ପାଆନ୍ତି

(୧) ଚଷା ହୋଇ ମହାନ୍ତି ବୋଲାଇଲେ ।

(୨) ନିଜ କନ୍ୟାକୁ ବିକ୍ରିକରି ସେ ଧନ ଯେ ଖାଏ ।

(୩) ମାଛ କେଳେଇ (କାଟିଲା)ବେଳେ ଯଦି ଅନ୍ତ କଢ଼ାନଯାଏ ।

(୪) କଣ୍ଠ ନଥାଇ ଯିଏ ଗୀତ ଗାଏ ।

(୫) ରାତି ବାଟରେ ଅମଡ଼ା ମୁହାନ୍ତି ।

(୬) ପର ମାଡ଼ଗୋଳ ଦେଖି ଦୌଡ଼ି ପଳେଇବା ।

(୭) ପର ସ୍ତ୍ରୀକୁ ଗୁପ୍ତରେ ହରଣ କରିବା ।

(୮) ପରଲୋକଙ୍କର ପଶାଖେଳ ପାଖରେ ବସିବା ।

(୯) ସବୁବେଳେ ତର ତର ହେବା (ତୁରୁତୁରିଆ ପ୍ରକୃତି)

## (୫୨) କିପରି ପରୀକ୍ଷା କରିବ

(୧) ଚାଟ (ଛାତ୍ର) କୁ ପରୀକ୍ଷା କରିବ ତାର-ମତିରେ (ବୁଦ୍ଧିରେ) ।
(୨) ନାଗର (ମରଦ)କୁ ପରୀକ୍ଷା କରିବ ତାର- ରତି (ଯୌନକ୍ରିୟା)ରେ ।
(୩) ନାରୀ (ସ୍ତ୍ରୀ)ଙ୍କୁ ପରୀକ୍ଷା କରିବ ତାର-ସତୀତ୍ୱରେ ।
(୪) ରତ୍ନ (ହୀରା, ଲିଳା, ମୋତୀ, ମାଣୀକ୍ୟ)କୁ ପରୀକ୍ଷା କରିବ-ରାତିରେ ।
(୫) ଲେଖା ଲେଖି ପରୀକ୍ଷା କରିବ- ପାଖରେ ।
(୬) ଘୋଡାକୁ ପରୀକ୍ଷା କରିବ ତାର- ଗତି (ବେଗ)ରେ ।
(୭) ସୁନାକୁ ପରୀକ୍ଷା କରିବ- ନିଆଁରେ ।
(୮) ବେପାରୀକୁ ପରୀକ୍ଷା କରିବ- ପୁଞ୍ଜି (ଧନ)ରେ ।
(୯) ନାଗରୀ ପରଖ- ଦୂତିରେ

## (୫୩) କେଉଁମାନଙ୍କୁ ବିଶ୍ୱାସ କରିବ ନାହିଁ

୧) ଚୋର (୨) ଜୁଆଡ଼ି (୩) ମଦୁଆ (୪) ବେଶ୍ୟା

## (୫୪) ସ୍ତ୍ରୀମାନଙ୍କ ସଂପର୍କରେ

ଛାଟିଆ ମାଇପ ଶୁଅଇ ଏକା, ——————
କେଉଟ ମାଇପ ପକାଏ ଡକା ।
ବଢ଼େଇ ମାଇପ ସହଜେ ଘାଣୀ,
ରଜକ ମାଇପ ଖୋଜଇ ପାଣି ।
ଭଣ୍ଡାରି ମାଇପ ସବୁରି ଆଗ,
ଗଉଡ଼ ମାଇପ ବଡ଼ ସରାଗ ।
ତେଲୀର ମାଇପ ପାଖେ ଗହଳି,
ଦନାଇ ମାଇପ ଜାଣେ ପହଳୀ ।

## (୫୫) କେଉଁମାନେ କାହାକୁ ଡରନ୍ତି

(୧) ଜୀବ ମାତ୍ରକେ- ମରଣକୁ ଡରନ୍ତି ।
(୨) ଗରୀବ ଚାଷୀ- କରଣକୁ ଡରେ ।
(୩) ଅରକ୍ଷିତ ଲୋକ- ଶୀତକୁ ଡରେ ।

(୪) ଧନୀ ଲୋକ- ଚୋର ତସ୍କରଙ୍କୁ ଡରନ୍ତି ।

(୫) ପଣ୍ଡିତ ଲୋକ- ବଦମାସ ଲୋକଙ୍କୁ ଡରନ୍ତି ।

(୬) ଭଗବାନଙ୍କ ଠାରେ ଲୟକୁ- ପାପ ଡରନ୍ତି ।

(୭) ସବୁ ଜନ୍ତୁଙ୍କୁ- ମାଛ ଡରେ ।

(୮) ସାପ- ନେଉଳକୁ ଡରେ ।

(୯) ମଶା- ଧୂଆଁକୁ ଡରେ ।

(୧୦) ଦେହ- ରୋଗକୁ ଡରେ

(୧୧) ଅପାଠୁଆ (ମୂର୍ଖ)- ଗୁରୁଙ୍କୁ ଡରେ ।

(୧୨) ଚୋର- ରାଜାଙ୍କ ଲୋକଙ୍କୁ ଡରେ ।

(୧୩) ଜାର ପୁରୁଷ- ସବୁ ସ୍ଥାନରେ ଡରେ ।

(୧୪) ମାଙ୍କଡ଼- ବାଟୁଳି ଦେଖିଲେ ଡରେ ।

(୧୫) ଖାତକ- ମହାଜନକୁ ଦେଖିଲେ ଡରେ ।

(୧୬) ପେଚା- ସୂର୍ଯ୍ୟଙ୍କୁ ଡରେ ।

(୧୭) ସୂର୍ଯ୍ୟ- ରାହୁଙ୍କୁ ଡରେ ।

(୧୮) ମୂଷା- ବିରାଡିକୁ ଦେଖିଲେ ଡରେ ।

(୧୯) ସମ୍ମାନୀୟ ବ୍ୟକ୍ତି- ଗୃହ ବିବାଦକୁ ଡରନ୍ତି ।

(୨୦) ଜ୍ଞାନୀମାନେ- ଅଜ୍ଞାନୀକୁ ଭୟ କରନ୍ତି ।

**(୫୬) ଏମାନଙ୍କୁ କେହି ପଚାରନ୍ତି ନାହିଁ**

(୧) ଟୋକା ଭିକାରି (୨) ବୃଦ୍ଧ ବେଶ୍ୟା (୩) ଦଳ ପୋଖରୀ

(୪) ହଡା ବେପାରୀ (୫) ଖରାଦିନେ ନାଉରୀ

**(୫୭) ଏଗୁଡ଼ିକ ଭଲ**

(୧) ତନୁ ପାତଳୀ ନାରୀ (୨) ଗୁଣ୍ଠୁଣୀ କାଳିଗାଈ

(୩) ଧାନ ବେଙ୍ଗଳା ସ୍ଥାନରେ ଛାଇ (୪) ଭଜା ହରଡ଼ ଡାଲି

(୫) ଅଭିଜ୍ଞ ବୟଶୀ ଧାଈ (୬) ଅଣ୍ଟାରେ ପଇସା ଥିବା ଆଈ

(୭) ବର୍ଷା ରାତିରେ କୋଳଥ ଡାଲି

(୫୮) କେଉଁ କଥା ଚରମ ସୀମାରେ ନ ପହଞ୍ଚିଲେ ପ୍ରକାଶଯୋଗ୍ୟ ନୁହେଁ

(୧) ଚୋର ପର ଦ୍ରବ୍ୟ ହରଣ କଲେ
(୨) ପୁଅ ବୋହୂଠାରୁ ମା କଷ୍ଟ ପାଇଲେ
(୩) କୁମାରୀ କନ୍ୟା ଗର୍ଭବତୀ ହେଲେ
(୪) ବେପାରୀ ଠକେଇରେ ପଡ଼ିଗଲେ
(୫) ଘର ଚାକରାଣୀ ବାସନ ଭାଙ୍ଗିଲେ
(୬) କୁସଙ୍ଗରେ ପଡ଼ି ଧାତୁ ରୋଗ ହେଲେ

(୫୯) କେଉଁସବୁ ହଡ଼ବଡ଼

(୧) ତେଲ କଡ଼ କଡ଼
(୨) ମାଡ଼ ଭଡ଼ ଭଡ଼
(୩) ଚାଳ ମଡ଼ ମଡ଼
(୪) ହାଣ୍ଡି ଖଡ଼ ଖଡ଼
(୫) ଛାତି ଧଡ଼ ଧଡ଼
(୬) ଦାନ୍ତ ପଡ଼ ପଡ଼
(୭) ଭାଡ଼ି ଖଡ଼ ଖଡ଼
(୮) ଦେହ ରଡ଼ ରଡ଼
(୯) ଝାଡ଼ା ଫଡ଼ ଫଡ଼
(୧୦) ପେଟ ଘଡ଼ ଘଡ଼
(୧୧) ଗୋଡ଼ ନଡ଼ ନଡ଼

(୬୦) ପ୍ରବାହର ଦିଗରୁ ପବନର ଉପକାରିତା

(୧) ଦକ୍ଷିଣା ପବନ - ସମସ୍ତଙ୍କୁ ହିତକର
(୨) ଉତ୍ତରା ପବନ - ଶୀତ ଆଣେ
(୩) ପୂନେଇ ପବନ - ଧାନକୁ ଭଲ
(୪) ପଶ୍ଚିମା ପବନ - ଜରର ମୂଳ କାରଣ
(୫) ଈଶାଣ ପବନ - ମାଛଧରା ପାଇଁ ଭଲ
(୬) ଆଗ୍ନେୟ ପବନ - ଆଖିଧରାର କାରଣ
(୭) ନୈଋତ ପବନ - ରବି ଫସଲକୁ ଭଲ
(୮) ବାୟବ ପବନ - ବରଷା ଆଣେ

## (୬୧) ଅଗ୍ରାଧିକାରରେ କରିବା କାମ

(୧) ଦଶଟା କାମ ଛାଡ଼ି- ଗାଧୋଇ ପଡ଼ିବ

(୨) ଶହେ କାମ ଛାଡ଼ି- ଖାଇ ଦେବ

(୩) ହଜାରେ କାମ ଛାଡ଼ି- ପର ଉପକାରରେ ଲାଗିବ

(୪) ଲକ୍ଷେ କାମ ଛାଡ଼ି- ଭଗବାନଙ୍କର ନାମ ନେବ

## (୬୨) ବୟସକ୍ରମରେ ମନୁଷ୍ୟର ଗତି

(୧) ଦଶବର୍ଷ ପର୍ଯ୍ୟନ୍ତ- ଚିନ୍ତା ନାହିଁ ସର୍ବଦା ହସ

(୨) କୋଡିଏ ବର୍ଷ- ସାଙ୍ଗକୁ ଯୋଡ଼ି (ସ୍ତ୍ରୀ) ଖୋଜିବା

(୩) ତିରିଶ ବର୍ଷ- ଘର କାମ ତଦାରଖ

(୪) ଚାଳିଶି ବର୍ଷ- ସାଇତିବା ପାଇଁ ବ୍ୟସ୍ତ

(୫) ପଚାଶ ବର୍ଷ- ବଳ କମି କମି ଆସେ

(୬) ଷାଠିଏ ବର୍ଷ- ହାତରେ ବାଡ଼ି ଧରେ

(୭) ସତୁରି ବର୍ଷ- ଶରୀର ତେଜ ଉତୁରି ଯାଏ

(୮) ଅଶୀ ବର୍ଷ- ପିଣ୍ଡାରେ ବସି ରୁହେ

(୯) ନବେ ବର୍ଷ- ଆର ପୁର କଥା ଭାବେ

(୧୦) ଶହେ ବର୍ଷ- ଆଖିରୁ ଲୋତକ ବହେ

## (୬୩) କେଉଁ ପାଇଁ କିଏ ଶୋଭାପାଏ

(୧) ଦାନ୍ତ ଯୋଗୁ- ହାତୀ (୨) ଜହ୍ନ ଯୋଗୁ- ରାତି

(୩) ଦୟା ଯୋଗୁ- ଘରଣୀ (୪) ରାଜା ଯୋଗୁ- ଧରଣୀ

(୫) ଝପଟ (କ୍ଷିପ୍ରତା) ଯୋଗୁ- ଘୋଟକ (ଘୋଡ଼ା)

(୬) ଅଟ୍ଟାଳିକା ଯୋଗୁ- ରାଜଧାନୀ

(୭) ଫୁଲ ଯୋଗୁ- ନାରୀର ଗଭା (୮) ପଣ୍ଡିତ ଯୋଗୁ- ସଭା

(୯) ସୁପୁତ୍ର ଯୋଗୁ- ବଂଶ (୧୦) ପୋଖରୀ ଯୋଗୁ- ହଂସ

(୧୧) ବାଛୁରୀ ଯୋଗୁ- ଗାଈ (୧୨) ପାଣି ଯୋଗୁ- ଗଡ଼ଖାଇ

## (୬୪) ଏସବୁ ଛାନିଆ ହେବା କଥା

(୧) ପାନିଆର- ଦାନ୍ତ ଭାଙ୍ଗିଯାଇଥିଲେ
(୨) ବଢ଼ିଲା ଝିଅ-ସାଇ ସାଇ ବୁଲିଲେ
(୩) ରାନ୍ଧୁଣୀ-ଅପରିଷ୍କାର ଅପରିଚ୍ଛନ୍ନ ହେଲେ
(୪) ପୁଅ- ଅମାନିଆ ହେଲେ
(୫) ଧାନ ବେଉଷଣ-ଗହ୍ଲାପୁନେଇକୁ କଲେ
(୬) ଘର ଲିପା ପାତ୍ର- ଫିମ୍ପି ମାରି ଯାଇଥିଲେ
(୭) ଲେଖନ-ମୂନିଆ ନହେଲେ
(୮) ରାଜା-ଅନ୍ୟାୟୀ ହେଲେ

## (୬୫) ମନୁଷ୍ୟର ଅଙ୍ଗପ୍ରତ୍ୟଙ୍ଗ ଅନୁସାରେ ଗୁଣ

(୧) ଦୀର୍ଘ ବାହୁ ଯାହାର- ସେ ସୁଖ ପାଏ
(୨) ଦୀର୍ଘ ଲିଙ୍ଗ ଯାହାର- ସେ ଦୁଃଖ ପାଏ
(୩) ଦୀର୍ଘ କପାଳ ଯାହାର- ସେ ବଡ଼ ପାଠୁଆ
(୪) ଦୀର୍ଘ ପାଦ ଯାହାର- ସେ ବଡ଼ ମଠୁଆ
(୫) ଦୀର୍ଘ ନାକ ଯାହାର- ସେ ବଡ଼ ସୁନ୍ଦର
(୬) ଦୀର୍ଘ ପାଟି ଯାହାର- ସେ ବୁଢ଼ା ବାନ୍ଦର ପରି

## (୬୬) ଦେବା ନଦେବା, ଦେଖିବା ନଦେଖିବାର ଫଳାଫଳ

**ଦେଇ ମଲା ବଳି, ନ ଦେଇ ମଲା ରାବଣ**

ଦେଖି ମଲା କଂସ, ନ ଦେଖି ମଲା ଦଶରଥ

## (୬୭) ଏମାନଙ୍କୁ ଭୂମିରେ ସ୍ଥାପନା କରିବ ନାହିଁ

(୧) ଦେବତା (୨) ବ୍ରାହ୍ମଣ (୩) ଶଙ୍ଖ
(୪) ନିର୍ମାଲ୍ୟ (୫) ବଟୁ (୬) ଶାଳଗ୍ରାମ ଶିଳା

## (୬୮) ଏମାନଙ୍କୁ ଭୂମିରେ ପକାଇବ ନାହିଁ

(୧) ରେତ (୨) ନାରୀ ରକ୍ତ
(୩) ନାରୀ କୁଚମଣ୍ଡଳ (୪) ନାରୀର ଫିଟାବାଳ

## (୬୯) କୁବେର ପରି ଧନୀ ମଧ୍ୟ ଶେଷରେ ଭିକାରୀ ହୋଇଯିବାର ଲକ୍ଷଣ

(୧) ନଖରେ ଯେ ଭୂମି ଉପରେ ଗାର କାଟେ
(୨) ପାଦ ନ ଧୋଇ ଯେ ଭୋଜନ କରେ
(୩) ଗୋରୁ ବଧ ଜନିତ ଦୋଷକୁ ଯେ ଲୁଚାଇ ରଖେ
(୪) ଜବରଦସ୍ତିରେ ପର ନାରୀକୁ ଯେ ହରଣ କରେ
(୫) ଓସ୍ତଗଛର କାଠକୁ ଯେ ଜାଳ କରି ଲୋଭରେ ଜଳାଏ
(୬) ସଞ୍ଜ ଓ ସକାଳରେ ଯେ ଘୋର ନିଦ୍ରା ଯାଏ
(୭) ନିଜ ଦେହରେ କିମ୍ୱା ବସିବା ସ୍ଥାନରେ ହାତ ଥାପୁଡ଼ି ଯେ ତାନ ଲୟ କରେ

## (୭୦) କେଉଁ ଜୀବର କେତେ ପରମାୟୁ

(୧) ନର,କୁଞ୍ଜର-ବିଶା ଶହେବର୍ଷ (୨) ଗୋରୁ- କୋଡ଼ିଏ ବର୍ଷ
(୩) କୁଆ- ଶହେ ବର୍ଷ (୪) ଛେଳି, ମେଣ୍ଢା- ବାର ବର୍ଷ
(୫) ଘୋଡା- ତିନିଶହ ବର୍ଷ (୬) ଶାଗୁଣା- ଦୁଇଶହ ବର୍ଷ
(୭) ବିରାଡି- ନଅ ବର୍ଷ (୮) କୁମ୍ଭୀର- ତିରିଶ ବର୍ଷ
(୯) ବିଲୁଆ- ଚାଳିଶ ବର୍ଷ (୧୦) କୁକୁର- କୋଡିଏ ବର୍ଷ
(୧୧) ମାଙ୍କଡ଼- ପଇଁତିରିଶ ବର୍ଷ

## (୭୧) ନେବାଦେବାରୁ ଲୋକ ପ୍ରକୃତି ଜାଣିବା

(୧) ନିଜ ପାଉଣାରୁ ଅଧିକ ନେଲେ ତାକୁ ଜାଣିବ - ଅଧମ
(୨) ନିଜ ପାଉଣାରୁ ସମାନ ନେଲେ ତାକୁ ଜାଣିବ - ମଧ୍ୟମ
(୩) ନିଜ ପାଉଣାରୁ କମ ନେଲେ ତାକୁ ଜାଣିବ - ଉତ୍ତମ
(୪) ପର ପାଇଁ ନିଜ ଗଣ୍ଠିରୁ ଦେଲେ ତାକୁ ଜାଣିବ - ସୁଧମ

## (୭୨) ଏଗୁଡ଼ିକ କାହାରି ଆଗରେ କରିବ ନାହିଁ

(୧) ନିଜ ମୁଖ ଦର୍ପଣରେ ଦେଖିବା (୨) ତପସ୍ୟା
(୩) ନାରୀ ମାନଙ୍କର କେଳିବେଶ ହେବା (୪) ମୈଥୁନ
(୫) ମଳତ୍ୟାଗ

## (୭୩) ବ୍ୟବହାରରୁ ଲୋକ ଗୁଣ ଜାଣିବା

(୧) ନୀରୋଗ ଲୋକର ନିଦ ଚାଉଁ ଚାଉଁ ତାକୁ ଜାଣିବ- ଚିଡ଼ାଳ

(୨) ମାଇପି ଲୋକ କାମ ଛାଡ଼ି ଦୁଆରେ ବସେ ତାକୁ ଜାଣିବ- ଛିଣ୍ଡାଳ (ଦୋଚାରୁଣୀ)

(୩) ସଉଦା ନକରି ଯେ ହାଟରେ ଖାଲି ବୁଲୁଥାଏ ତାକୁ ଜାଣିବ- ଚିଟାଳ (କଞ୍ଜୁସ/ବ୍ୟୟକୁଣ୍ଠ)

(୪) ମାଇପୀ ଲୋକଙ୍କ ଗାଧୁଆ ତୁଠରେ ଯେ ଲହର ପହର ହୁଏ ତାକୁ ଜାଣିବ- ବିଟାଳ (ଖରାପ ପ୍ରକୃତି)

(୫) ହିତକଥାକୁ ପିତା ଯେ ଭାବେ ତାକୁ ଜାଣିବ-ଧୀଟାଳ (ଧିକ୍ ଜୀବନିଆ)

## (୭୪) ଯେଉଁମାନଙ୍କର ରକ୍ଷା ନାହିଁ

(୧) ନିର୍ଲ୍ଲଜୀ ନାରୀ (୨) ଯାହାର ଋଣ ବହୁତ

(୩) ଜ୍ଞାତି କୁଟୁମ୍ବରେ ଅପଟ ଯାହାର (୪) ମୂର୍ଖ ପୁଅ

(୫) ଅଳସୁଆ ଭାଇ (୬) ଦରିଦ୍ର ଜ୍ୱୋଇଁ

(୭) ରାଜ କର ଯିଏ ଦିଏ ନାହିଁ (୮) ମାଲିକ କୃପଣ ହେଲେ

(୯) ଘର ପାଖରେ ନଦୀର ଘାଇ ରହିଲେ

## (୭୫) ଏମାନେ ଅଣ୍ଟାରୁ ପଇସା, ଓଟାରି ନିଅନ୍ତି

(୧) ଯେଉଁ ଭିକାରୀ ନିର୍ଲ୍ଲଜ୍ଜ ହୁଏ

(୨) ଯେଉଁ ବେଶ୍ୟା ହସକୁଳୀ ହୁଏ

(୩) ଯେଉଁ ବେପାରୀ କଅଁଳ-କୁହା ହୁଏ

(୪) ଯେଉଁ ନୃତ୍ୟକାରୀ ଆଖିଛଟକିଆ ନୃତ୍ୟ କରେ ।

## (୭୬) କାହାକୁ କିପରି ପରୀକ୍ଷା କରି କିଣିବ

(୧) ପଣ୍ଡାକୁ କିଣିବ- ଖରାରେ ବୋଝ ବୁହାଇ ପରୀକ୍ଷା କରିବ

(୨) ବଳଦ କିଣିବ- ମଇରେ ଯୋଚି ପରୀକ୍ଷା କରିବ

(୩) ମାଛ କିଣିବ- ଗାଲିଣି ଦେଖି

(୪) ଗାଇ କିଣିବ- ଶିଙ୍ଗକୁ ପରୀକ୍ଷାକରି

(୫) ଘୋଡ଼ା କିଣିବ- ବାଲିରେ ଦୌଡ଼େଇ ପରୀକ୍ଷାକରି
(୬) ପରିବା କିଣିବ-ପିଣ୍ଡାରେ ବସି ପରୀକ୍ଷାକରି
(୭) ସୁନା କଣିବ- ନିଆଁରେ ପୋଡ଼ି ପରୀକ୍ଷାକରି
(୮) ବାଛୁରୀ କିଣିବ- ଯୋଡ଼ିକି ଯୋଡ଼ି

(୭୭) ଯାହାସବୁ ଦୁର୍ଲ୍ଲଭ

(୧) ପରପାଇଁ ଯେ ଜୀବନ ଦିଏ ।
(୨) ନିଜେ ଭୋଜନ ନ କରିଯେ ଦୁଃଖୀକୁ ଖାଇବାକୁ ଦିଏ,
(୩) ଦକ୍ଷିଣାବର୍ତ୍ତ ଶଙ୍ଖ
(୪) ଯେଉଁ ଭାଇ ବାଧ୍ୟର ହୁଏ
(୫) ଦୁଧିଆଳୀ, କାଳୀ, ଗୁଣ୍ଡୁଣୀ, ଗାଇ
(୬) ବ୍ୟାଧିହୀନ ଦେହ
(୭) ମିଠା ପାଚନ (ଔଷଧ) ଆୟୁର୍ବେଦିକ
(୮) ଧନୀ ଲୋକର ବିନୟ ବଚନ
(୯) ସତୀ, ସୁନ୍ଦରୀ, ସୁଲକ୍ଷଣା ନାରୀ
(୧୦) ମଣିଷ ପରି କଥାକୁହା ଶାରୀ
(୧୧) କଳହ ଯେଉଁ ଘରେ ନଥାଏ
(୧୨) ପଞ୍ଚମୁଖୀ ରୁଦ୍ରାକ୍ଷ
(୧୩) ଯେଉଁ ଅଶ୍ୱ(ଘୋଡା) ପଞ୍ଚୁକଲ୍ୟାଣୀ
(୧୪) ଯେଉଁ ରଜା ପ୍ରଜାଙ୍କପାଇଁ ସହାୟକ ହୁଏ ।
(୧୫) ଯେଉଁ ଗୋରୁର ଲାଞ୍ଜ ଭୂଇଁ ସ୍ପର୍ଶ କରିଥାଏ ।
(୧୬) ଗଲୁ ନକରୁଥିବା ଓଲୁଅ ସାରୁ ।
(୧୭) କପଟ ନଥିବା କରଣ ଲୋକ ।
(୧୮) ଲୋଭ ନଥିବା ବ୍ରାହ୍ମଣ ।
(୧୯) ଜ୍ଞାତି କୁଟୁମ୍ବଙ୍କ ମଧ୍ୟରେ ହିତକାରୀ ।
(୨୦) କୋବିଲା ମଲାଙ୍ଗ ।

(୨୧) ତୁଳସୀ ମୁଠା ।

(୨୨) ଯେ, ପଣ୍ଡିତ ଲୋକଙ୍କ ସଙ୍ଗ ହୁଏ ।

(୨୩) ଯେଉଁ ଜମି ଧୋଇ ମରୁଡ଼ି ଦ୍ୱାରା ଆଘାତ ପ୍ରାପ୍ତ ନୁହେଁ ।

(୨୪) ନିମ୍ନ ଅଙ୍କ ପିତା ହୋଇଥିଲେ ।

(୨୫) ଯେଉଁ ବ୍ୟବସାୟରେ ସବୁବେଳେ ଲାଭ ।

## (୭୮) କାହାକୁ କିପରି ଜାଣିବ

(୧) ପର ପୁଅକୁ ଯେ ଆପଣାର କରେ ତାକୁ ଯେ ଜାଣିବ- ଲୋକ ।

(୨) ହଳଫିଟା ପରେ ତୋରାଣି କଂସା ତାକୁ ଯେ ଜାଣିବ- ଢ଼ୋକ ।

(୩) ଦୋଷ ଦେଖି ଯେ କଅଁଳେଇ କହେ ତାକୁ ଯେ ଜାଣିବ- ଠୋକ । (ଆକଟ କଥା କୁହାଳି)

(୪) ଆବୁରୁ ଜାବୁରୁ ସୁଆଦ ଲାଗେ ତାକୁ ଯେ ଜାଣିବ- ଭୋକ ।

(୫) ମହାତ୍ମାଙ୍କୁ ଯିଏ ହରି ଗାଥା କହେ ତାକୁ ଯେ ଜାଣିବ- ଛୋକ ।

(୬) ପାଚିଲା ବାଳରେ ସିନ୍ଦୂର ଟୋପା ତାକୁ ଜାଣିବ- ଭାଗ୍ୟବତୀ

(୭) ପାଚିଲା ବାଳରେ ମହୁଲୀ ଖୋଷା ତାକୁ ଜାଣିବ- ଅତି ନିର୍ଲ୍ଲଜୀ ।

## (୭୯) ଯାହା କରିବ ନାହିଁ

(୧) ପର ଦାରା (ସ୍ତ୍ରୀ) ସଙ୍ଗେ ବସିବ ନାହିଁ ।

(୨) ପରଦୁଃଖ ଦେଖି ହସିବ ନାହିଁ ।

(୩) ପରବଳ ଚୁଛାଟାରେ କଷିବ ନାହିଁ ।

(୪) ପର ନାରୀ ଗୋଡ଼ ଘଷିବ ନାହିଁ ।

(୫) ପର ପାଟ ଜମି ଚଷିବ ନାହିଁ ।

(୬) ପର ଘରେ ଏକା ପଶିବ ନାହିଁ ।

(୭) ପର ପିନ୍ଧାଲୁଗା (ପାଇଁ) ରସିବ ନାହିଁ ।

(୮) ପର ବିପତ୍ତିବେଳେ ଖସିଯିବ ନାହିଁ ।

(୯) ପର କଳହରେ ପଶିବ ନାହିଁ ।

## (୮୦) ଯେଉଁ ସ୍ତ୍ରୀମାନଙ୍କ କଥା ଶୁଣିବ ନାହିଁ

(୧) ପସରା ମୁଣ୍ଡରେ ଟୋକୀ ତେଲୁଣୀ
(୨) ଛାପ ଚିକ୍‌କଣିଆଁ ଯେଉଁ କେଲୁଣୀ
(୩) ମାଳୀ ଘରର ଯେ ଛଇଲା ନାରୀ
(୪) କଥା ଚିକ୍‌କଣିଆ ଯେଉଁ ଦାରୀ (ବେଶ୍ୟା)
(୫) ଭୂରୁ ଛଟକିନୀ ବାଉଁଶରାଣୀ

## (୮୧) ଏ ସବୁ ଭଲ ନୁହେଁ

(୧) ପାକୁଆ ପାଟିରେ ଚଣା ଖାଇବା
(୨) ଟାକୁଆ ଗାଲରେ ଚୁମ୍ବନ ଦେବା
(୩) ବୁଢ଼ା ବୟସରେ ବାହା ହେବା
(୪) ଯୁବତୀ ନାରୀ ଚିତି ହୋଇ ଶୋଇବା
(୫) ମୁହଁ ସଞ୍ଜ ପରେ ବଂଶୀ ବଜାଇବା

## (୮୨) ଏସବୁ ବାଗର ନୁହେଁ

(୧) ପାଚିଲା ଆମ୍ବରେ ଦାଗ
(୨) ଅଲଣା କାଞ୍ଜିକୁ ଲୁଣିଆ ଶାଗ
(୩) ପୁଷ ମାସରେ ମେଘୁଆ ପାଗ
(୪) ବୁଢ଼ା/ବୁଢ଼ୀ ଛେଳିର ମାଂସ
(୫) ଦାଢ଼ି ବହଳ
(୬) ସ୍ୱାମୀ ଶୋଇବା ଆଗରୁ ସ୍ତ୍ରୀ ଶୋଇବା
(୭) ଯାଗଯଜ୍ଞରେ କିଛି ନଥାଇ ଖାଲି ସ୍ୱାହା ସ୍ୱାହା କରିବା
(୮) ଲାଉ ଦଅଣାରେ ରାଗ (ଲଙ୍କା ମରିଚ) ପକାଇବା

## (୮୩) କେଉଁଟା କାହିଁକି ମିଠା

(୧) ପାଠ ମିଠା- ଯେବେ ମନରେ ରହେ ।
(୨) ଶାଠ ମିଠା- ଯେବେ କାମକୁ ପାଏ ।

(୩) ଗୋବର ମିଠା- ଯେ ଧାନ ବିଲକୁ ।

(୪) କାହାଣୀ ମିଠା- ଯେ ପିଲାମାନଙ୍କୁ ।

(୫) ମାଆ ଦୁଧ ମିଠା- ଯେ ଉଠିଆଣି (ଦୁଗ୍ଧପୋଷ୍ୟ)ଙ୍କୁ ।

(୬) ମଇଁଷିର ମିଠା- ଯେବେ ଗଲେ ପାଣିକି ।

(୭) ପୁଅ ମିଠା- ଯେବେ ସଭାରେ ବସେ ।

(୮) ବୋହୂ ମିଠା- ଯେବେ ନିତି ରାନ୍ଧି ପରଷେ ।

(୯) ବଚନ ମିଠା- ଟୋକୀ ଶାଳୀର ।

(୧୦) ବେଶ ଭୂଷା ମିଠା- ନବବାଳୀର ।

(୧୧) ରାଜା ମିଠା- ଯେବେ କର କୋହଳ ।

(୧୨) ମେଳା ମିଠା- ଥିଲେ ଗୋଳ ଚହଳ ।

(୧୩) ଶୁଆ ମିଠା- ଯେବେ ପଢ଼ଇ ନାମ ।

(୧୪) ମୂଲିଆ ମିଠା- ଯେବେ କରେ କାମ ।

(୧୫) ବରଷା ମିଠା- ଯେବେ ବରଷେ କାଳରେ (ଠିକ୍ ସମୟରେ)

(୧୬) ମିତଣୀ ମିଠା- ଯେବେ ହସି ପରସେ ।

(୧୭) ଘରଣୀ ମିଠା- ପେଟ ଚିହ୍ନିଲେ ।

(୧୮) କୁଟୁମ୍ବ ମିଠା- କଳି ନଥିଲେ ।

(୧୯) ମାଇପ ମିଠା- ପୁଅ ଜନ୍ମକଲେ

(୨୦) ସହର ମିଠା- ପାଖେ ଧନ ଥିଲେ ।

(୨୧) ବଣିଜ ମିଠା- ହେଉଥିଲେ ଲାଭ

(୨୨) ନ୍ୟାୟ ମିଠା- ତା ସଙ୍ଗେ ଯେବେ ଦୟା ଥିବ ।

(୨୩) ପ୍ରମାଣ ମିଠା- ଯଦି ଥାଏ ଭକ୍ତି ।

(୨୪) ରମଣ ମିଠା- ଯଦି ଥାଏ ଶକ୍ତି ।

(୨୫) ସାହୁକାର (ମହାଜନ) ମିଠା- ସୁଧ ଛାଡ଼ିଲେ ।

(୨୬) କାଞ୍ଜି ମିଠା- ତହିଁରେ ମୂଳା ପଡ଼ିଲେ ।

(୨୭) ଆହାର ମିଠା- ପେଟରେ ଭୋକ ଥିଲେ ।

(୨୮) ନାଟ ମିଠା- ଯହିଁ ବୋଲନ୍ତି ଶ୍ଳୋକ ।
(୨୯) ସନ୍ୟାସୀର ମିଠା- ହରି ଭଜନ ।
(୩୦) ପୁରୁଷକୁ ମିଠା- ଧନ ଅର୍ଜନ ।
(୩୧) ନାଗରର ମିଠା- ଗଜରା ନିଶ
(୩୨) ନାଗରୀର ମିଠା- ମୁରୁକି ହସ ।
(୩୩) ଭାଉଜ ମିଠା- ଯାଆ ନଥିଲେ ।
(୩୪) ସାନଭାଇ ମିଠା- ବୋଲ ମାନିଲେ ।
(୩୫) ବଡଭାଇ ମିଠା- ଡାକେ ବାବୁରେ ।
(୩୬) ଘୋଟକ (ଘୋଡ଼ା) ମିଠା- ଯେ ରହେ କାବୁରେ (ଆୟତରେ) ।
(୩୭) ମାଟି କାନ୍ଥ ମିଠା- ଗୋବର ଲିପା ।
(୩୮) ବୈଷ୍ଣବକୁ ମିଠା- ଦ୍ୱାରକା ଛପା ।
(୩୯) ଘଇତା ମିଠା- ଯେ କରେ ସୁଆଗ ।
(୪୦) ମାଇପ ମିଠା- ଯେ କରାଏ ଭୋଗ ।
(୪୧) ମାଇପ ମିଠା- ଯେ ନିତି ଘଷେ ଘଇତା ।
(୪୨) ଘଇତା ମିଠା- ଯେ ନିତି ରସେ ।
(୪୩) ଦନାଇକୁ ମିଠା- ଢଗ ଢମାଳି ।

(୮୪) **କୁଳ ବାଲୁଙ୍ଗାର ଲକ୍ଷଣ**

(୧) ପୁଅ ହୋଇ ବାପ ପାଖ ନ ମାଡ଼େ ।
(୨) ପାଠ ଛାଡ଼ି ଗୁଣି-ଗରେଡ଼ି ପଢ଼େ ।
(୩) ଗୁରୁଜନମାନଙ୍କୁ ଠେଙ୍ଗା ଦେଖାଏ ।

(୮୫) **ଏମାନେ ଭଲ/ଉତ୍ତମ**

(୧) ପୁରୁଣା ବଇଦ (ଡାକ୍ତର) (୨) ପୁରୁଣା ତେଲ
(୩) ପୁରୁଣା ଚାକର (୪) ପୁରୁଣା ପାନ
(୫) ନୂଆ ଜ୍ୟୋତିଷ (୬) ନୂଆ ଲୁଗା (ପୋଷାକ)
(୭) ନୂଆ ବନ୍ଧୁ (୮) ନୂଆ ଯାନ (ଗାଡ଼ି)
(୯) ପୁରୁଖା ବ୍ରାହ୍ମଣ ହୁଅଇ ଚିଡ଼ା ।(୧୦) ପୁରୁଣା କରଣ ରସନିଗିଡ଼ା ।

(୮୬) **ଏଗୁଡ଼ିକ ଉତ୍ପାତିଆ**

ପୁଷ ପାହାନ୍ତି ଶୀତ,
ଛତରାଙ୍କର ଗୀତ,
ଖଳ (ଦୁଷ୍ଟ) ହାତରେ ବିତ୍ତ,
ପର ନାରୀରେ ଚିତ୍ତ,
ମୁଣ୍ଡରେ ଚଢ଼ିଲେ ପିତ୍ତ ।

(୮୭) **ହତଶିରୀ ସ୍ତ୍ରୀ**

ନଉଲି ବୟସୀ ବିଧବା ନାରୀ,
ମୁହଁ ଯାକ ଭାଙ୍ଗ ଯେଉଁ ମାହାରୀ (ବେଶ୍ୟା) ।
ଗୋରୀ ମୁହଁ ଯାକ ଭରା ଘିମିରି,
ଏମାନେ ସବୁ ହତଶିରୀ ।

(୮୮) **ସ୍ତ୍ରୀଙ୍କର ହଟହଟିଆ କାମ,**

ରଙ୍ଗ ନୟନୀର ପିଆର୍ଜ ବଟା,
ପୋଇଲୀ ନାରୀର ସହସ୍ର ଛଟା ।
ଯୁବ ନାରୀ ବାଳ ହୋଇଲେ ଜଟା,
ଏସବୁ ବଡ଼ ହଟହଟା ।

(୮୯) **ସ୍ତ୍ରୀଙ୍କୁ ବାରଣ**

ପୋଖତୀ (ଗର୍ଭବତୀ) ହେବାର ସାତ ମାସ, ଗର୍ଭପାତର ଦଶମାସ,
ଏ ମଧ୍ୟରେ ନଯିବ ସ୍ୱାମୀର ପାଶ ।
ପୋଖତୀ (ଗର୍ଭବତୀ) ମେଣ୍ଢା ମାଉଁସ ଖାଇବା ନିଷେଧ ।

(୯୦) **କେଉଁମାନଙ୍କୁ ଜୋଇଁ କରିବ ନାହିଁ**

ପ୍ରସା (ପରିସ୍ରା) କଲେ ଶବ୍ଦ ଶୁଭଇ ନାହିଁ,
ଅତି ପିତା ରାଗ ଖିଆକୁ ବାଇ ।
ରମଣୀ ଗହଳିରେ ଯେହୁ ବସେ,
ମାଇପୀ କଥା କହିବାକୁ ରସେ ।
ମୁଖେ ଦାଢ଼ି ନିଶ ଉଠଇ ନାହିଁ,
ଏମାନଙ୍କୁ ଜୋଇଁ କରିବ ନାହିଁ ।

(୯୧) ଫୁଲ ବାସନା ଦିନେ ଓଳିଏ
ଆମ୍ବ ପଣସ ବାସନା ସଢ଼ିବା ଯାଏ
ମଣିଷ ବାସନା ମଲେ ଯାଏ ।

(୯୨) **ପାଖକୁ ଗଲେ ଲୋଭ ହୁଏ**

(୧) ଫୁଟିଲା ଫୁଲ
(୨) ଗଜରା ଛାତି
(୩) ଝଡ଼ିଲା ଆମ୍ବ
(୪) ବାଟଣ ପଡି (ଭାଙ୍ଗ ବଟା)

(୯୩) **କେଉଁ ସ୍ଥାନମାନଙ୍କରେ ଶୋଇବ ନାହିଁ**

(୧) ବଣ ଭୂଇଁରେ
(୨) ଦେଉଳରେ
(୩) ଶ୍ମଶାନରେ
(୪) ଫୁଲ ବଗିଚାରେ
(୫) ନିଛାଟିଆ ସ୍ଥାନରେ
(୬) ପୁରୁଷ ନଥିବା ଯୁବତୀ ଘରେ
(୭) ପରନାରୀର ବିଛଣାରେ
(୮) ରୋଗୀର ବିଛଣାରେ
(୯) ଗୁରୁଜନ ବସିଥିବା ସ୍ଥାନରେ
(୧୦) ହାଟରେ
(୧୧) ବଜାରରେ
(୧୨) ନାରୀମାନଙ୍କ ମେଳରେ
(୧୩) ସନ୍ଧ୍ୟା ସମୟରେ
(୧୪) ଶୀତ ଦିନ ଦିପହରରେ
(୧୫) ଗୀତ ନାଟ ହେଉଥିବା ସ୍ଥାନରେ
(୧୬) ବେଲ, ନଡ଼ିଆ, କଇଁଥ ଗଛ ମୂଳରେ
(୧୭) ଗାତ ପାଖରେ
(୧୮) ବଢ଼ିନଇ କୂଳରେ ।

(୯୪) **ଏମାନଙ୍କୁ ସାବଧାନ ହେବ**

(୧) ବଢ଼ିଲା ଝିଅ
(୨) ଅଗଣାଭିତର କୂଅ
(୩) ଘର ଭାଙ୍ଗିଲା ରୁଅ
(୪) ମୂରୁଖ ପୁଅ
(୫) ନଦୀର ସୁଅ

(୯୫) **ଏମାନଙ୍କୁ ଦେଖିଲେ ଛାନିଆ ହେବାକଥା**

(୧) ବଢ଼ିଲା ଝିଅ ଅମାନିଆ ହେଲେ ।
(୨) ଯେ ନିଆଁ ନଦେଖି ପାଉଁଶ ଫିଙ୍ଗେ ।

(୩) ଉକୁଣୀ ମୁଣ୍ଡକୁ ଯଦି ପାନିଆ ନଥାଏ ।

(୪) ସଭାକୁ ଯେ ଏକୁଟିଆ ହୋଇ ଯାଏ ।

(୫) ଯାହାର ଗେରସ୍ତ (ସ୍ୱାମୀ) ଘର ଖବର ନବୁଝି ମଉଜ କରିବୁଲୁଥାଏ ।

(୬) ବୁଢ଼ା ବୟସରେ ଯାହାର ପୁଅ ଜନ୍ମ ହୁଏ ।

(୭) ଟୋକୀ (ଅଳ୍ପବୟସୀ) ବିଧବା ଯିଏ ଧଡ଼ିଥାଇ ଲୁଗା ପିନ୍ଧେ ।

(୮) ନଳିତା ଗଛରୁ କେନା ବା ଡାଳ ବାହାରିଲେ (ଭଲ ଖୋଟ ହୁଏ ନାହିଁ) ।

(୯) ବେଉଷଣ ଯଦି ଗହ୍ଲାପୂନିଅରେ ହୁଏ ।

(୧୦) ମାରଣା ଷଣ୍ଢର ଶିଙ୍ଘ ମୂନିଆ ଥିଲେ ।

(୧୧) ରବିବାରରେ ସୁନିଆ ପଡ଼ିଲେ (ବଡଖରାପ) ।

(୧୨) ପୁଅ ଜନ୍ମ ହେଲେ ଯଦି ଦୀର୍ଘଲିଙ୍ଗୀ ହୋଇଥାଏ ।
(ଦୀର୍ଘଲିଙ୍ଗୀ ମାନେ ଦୁଃଖ ପାଆନ୍ତି)

(୯୬) ବଲୁଆ ବଲୁଆ ଲଢ଼ା ଲଢ଼ି,
କଲୁଆ କଲୁଆ ତରକା ତରକି,
ଚନ୍ଦୁଆ ଚନ୍ଦୁଆ କୋଡ଼ା କୋଡ଼ି (ମରାମରି) ।

(୯୭) ଏସବୁ ଅକାରଣ

(୧) ବାଞ୍ଝ ସ୍ତ୍ରୀକୁ ରମଣ କରିବା (୨) ପୋତିଲା ଧନ ।
(୩) ଖାରିଆ ପାଣିର କୂଅ (୪) ବାସି ତରକାରି
(୫) ତିନ୍ତିଯାଇଥିବା ଲୁଣ । (୬) ପୁଅ, ଚଡୁ ଓଉ, ଛଣ, ଛତରା ।

(୯୮) ବ୍ରାହ୍ମଣ ରଜା, ଖଣ୍ଡ ପରଜା,
ଡହ ଡହ ଆମ୍ବିଳ, ଶୀତଳ ଭଜା,
ଯୁବ ନାରୀ ହେଲେ କାନ୍ଥ ଆଉଜା,
ଏଥିରେ ନଥାଏ ମଜା ।

(୯୯) ବାୟସ, ବିଲୁଆ, ଶ୍ୱାନ,
ବୁଦ୍ଧି ସରସ, ଆଚାର ହୀନ ।

## (୧୦୦) ଏମାନେ ଘଟାଳିଆ ନୁହଁନ୍ତି

(୧) ବିଟାଳିଆ ବ୍ରାହ୍ମଣ
(୨) କଟାଳିଆ ପାଇକ
(୩) ସିଠାଳିଆ ପଣସ
(୪) ଚୋଠାଳିଆ ଧନିକ
(୫) ଅଠାଳିଆ ଗୁଡ
(୬) ପଟାଳିଆ ଶୃଗାଳ
(୭) ହେଟା ଗାଣ୍ଡିଆ ବଳଦ
(୮) ମଟାଳିଆ ମୃତ୍ତିକା
(୯) ଖଟାଳିଆ ପଖାଳ
(୧୦) ଶୁଣ୍ଡାଳିଆ ତବତ
(୧୧) ହଟାଳିଅ ଯେ ହଡା
(୧୨) ରୁଣ୍ଡାଳିଆ ବାଳକ
(୧୩) ଜଟାଳିଆ ଖଡା
(୧୪) କଣ୍ଡାଳିଆ ଧାନ
(୧୫) ପେଟାଳିଆ ମରଦ
(୧୬) ଫଟାଳିଆ ମାଦଳ
(୧୭) ଭେଟାଳିଆ ମାଲୁଣୀ
(୧୮) ଥଟାଳିଆ ଧୋବଣୀ
(୧୯) ଛଟାଳିଆ ତେଲୁଣୀ
(୨୦) ବଳାଳିଆ ନଉକା (ତଳପଟା ମରାମତି ହୋଇଥିବା)

## (୧୦୧) ବଢ଼ିଲେ ବା ଛିଡ଼ିଲେ କିଛି ଲାଭ ନାହିଁ

(୧) ବିଧବାର କୁଚ (ସ୍ତନ)
(୨) କୃପଣର ଧନ
(୩) ଗରୀବର କ୍ରୋଧ
(୪) ଛେଳିର ଗଳାର ସ୍ତନ
(୫) ଖୋଡ଼ିଆ ସାହସ
(୬) ମୂର୍ଖର ବୟସ
(୭) ବଣ ସାରୁ ଗଛ
(୮) ସ୍ୱପ୍ନରେ ରସ
(୯) ଅନ୍ଧୁଣୀର ରୂପ
(୧୦) ଭିକାରିର ବଳ
(୧୧) ଚଇତମାସ କୁହୁଡ଼ି
(୧୨) ସମୁଦ୍ର ଜଳ ।

## (୧୦୨) ଏମାନଙ୍କୁ ତେତେ ସମ୍ମାନ ନାହିଁ

(୧) ବୁଢ଼ା ଶ୍ୱଶୁର
(୨) କଣା ଦେଢ଼ଶୁର
(୩) ଟୋକା ମଳାଶୁର
(୪) ଗାଆଁର ଜ୍ୱାଇଁ ।

## (୧୦୩) କିଏ କାହାର ଅଧୀନ

(୧) ଭକ୍ତିର ଅଧୀନ ଦେବତା
(୨) ବିତ୍ତର ଅଧୀନ ଦାରୀ
(୩) ସ୍ନେହର ଅଧୀନ ମାଇପ
(୪) ଶକ୍ତିର ଅଧୀନ ହାରି

(୫) ଚିତ୍ତର ଅଧୀନ ତପସ୍ୟା (୬) ପାଣିର ଅଧୀନ ଧାନ
(୭) ପିତା (ସ୍ୱାମୀ)ର ଅଧୀନ ଘର (୮) ବାହକ ଅଧୀନ ଯାନ
(୯) କଣ୍ଠର ଅଧୀନ ଗୀତ

(୧୦୪) ଭଣ୍ଡାରି, ବ୍ରାହ୍ମଣ, ନାହାକ, କାଉ,
ଆଖି ଫିଟିଲେ ନ ମରନ୍ତି ଆଉ ।

**(୧୦୫) କେଉଁମାନଙ୍କୁ ଭୟ**

(୧) ଭଙ୍ଗାକୂଅ (୨) ମୂରୁଖ ପୁଅ (୩) ବିଧବା ଝିଅ
(୪) ଗୁଞ୍ଜା ରୁଅ (୫) ନଦୀର ସୁଅ ।

**(୧୦୬) ଅତି ଭଲ ନୁହେଁ**

(୧) ସହିବା । (୨) ଖାଇବା ।
(୩) ଚାହିଟାପରା କରିବା । (୪) ଶୋଇବା ।

**(୧୦୭) କେତେବେଳେ କି ପଦାର୍ଥ ଖାଇବ ନାହିଁ**

(୧) ଭାଦ୍ରବ ମାସରେ 'ଲାଉ' (୨) ଆଶ୍ୱିନ ମାସରେ 'ପୋଇ'
(୩) ପୁଷ ମାସରେ 'ବରକୋଳି' (୪) ମାଘ ମାସରେ 'ମୂଳା'
(୫) ସଂକ୍ରାନ୍ତିରେ 'ପିତା' (୬) ରାତିରେ 'ଦହି'
(୭) ଦୁଇ ପ୍ରହର ଦିନବେଳେ 'ଖଇ'

**(୧୦୮) କିଏ କେତେବେଳେ ଚିହ୍ନାପଡେ**

(୧) ଧନ ସରିଲେ- ଭାର୍ଯ୍ୟା (ସ୍ତ୍ରୀ) (୨) ବିପଦ ବେଳେ-ବନ୍ଧୁ
(୩) ବୋହୂ ଆସିଲେ - ପୁଅ (୪) ବର୍ଷକ ପରେ-ମହୁ
(୫) ଝାଡା ସଫାହେଲେ- ଖାଇବା (୬) ଲାଭ ଥିଲେ-ବଣିଜ
(୭) କାବ୍ୟ ଶାସ୍ତ୍ରର ଜ୍ଞାନରୁ-ପଣ୍ଡିତ (୮) ପର ଉପକାରରୁ- ଧାର୍ମିକ
(୯) ଦୁଇଥର ଗର୍ଭଧାରଣ ପରେ- ଗାଇ
(୧୦) ମୁହାଁ (ଗୋରୁଙ୍କ ଖାଦ୍ୟ) ନେବାରୁ- ବଳଦ

**(୧୦୯) ଯାହାଙ୍କୁ ବିଶ୍ୱାସ ନାହିଁ**

(୧) ଭିକାରୀ ବ୍ରାହ୍ମଣ (୨) ବିଟପୀ ନାରୀ
(୩) ଭିନେହେଲା ଭାଇ (୪) ଲୋଭୀ ବେପାରୀ
(୫) ଧନହୀନ ଖଣ୍ଡାୟତ (୬) ଗାଆଁ ଛାଟିଆ
(୭) ଭଣ୍ଡାରି (୮) ବାଳକ
(୯) ନାଟୁଆ (୧୦) ଭାଟ

## (୧୧୦) ମନ୍ଦ କର୍ମଫଳ

(୧) ଭେଣ୍ଡିଆ ପୁଅ ଠାପୁଆ ହେଲେ ।

(୨) ଭେଣ୍ଡିଆ ଘଇତା ଗଞ୍ଜୋଡ ହେଲେ ।

(୩) ଭେଣ୍ଡିଆ ମୁଖ୍ୟକର୍ମଚାରୀ କୋଠିଆ (ମୂଲିଆ) ହେଲେ ।

(୪) ଭେଣ୍ଡିଆ ରାଜା ଅବିବାହିତ ହେଲେ ।

## (୧୧୧) ମଟାଳିବାର ଫଳ

(୧) ଭୋକ ମଟାଳିଲେ ପିତ୍ତ ବଢେ ।

(୨) ଝାଡା ମଟାଳିଲେ ବାୟୁ ବଢେ ।

(୩) ସ୍ୱପ୍ନ ମଟାଳିଲେ କଫ ବଢେ ।

(୪) ପରିସ୍ରା ମଟାଳିଲେ ଦଗ୍ଧ ବଢେ ।

(୫) କାମ ମଟାଳିଲେ ଲକ୍ଷ୍ମୀ ଛାଡେ ।

(୬) ପ୍ରଭୁଙ୍କ ନାମ ମଟାଳିଲେ ଧର୍ମ ଛାଡେ ।

## (୧୧୨) ଦେହର ଜ୍ୟୋତି ଚାଲିଯାଏ

(୧) ଭୋକ ମଟାଳିଲେ (୨) ନିଆଁ ପୋହିଁଲେ

(୩) ଚିନ୍ତା ଘାରିଲେ (୪) ଛାନିଆ ହେଲେ

(୫) ଖରା ଓ ବର୍ଷାରେ ବୁଲିଲେ (୬) ଅତିମୈଥୁନରେ ମଜ୍ଜି ରହିଲେ

(୭) ରାତି ଉଜାଗର ରହିଲେ (୮) ସର୍ବଦା ମଦ୍ୟପାନ କଲେ

(୯) ଅଖାଦ୍ୟ ଭକ୍ଷଣ କଲେ (୧୦) ସ୍ତ୍ରୀ ବର୍ଷ ବିଆଣିଆ ହେଲେ

(୧୧) ଅତିମାତ୍ରାରେ ରାଗ ଖାଇଲେ

(୧୨) ପରଶିରୀ ଦେଖି (ମନ) ଘାରିହେଲେ

(୧୩) ନିଜଠାରୁ ବୟସ୍କ ନାରୀ ସହିତ ରତି କଲେ

(୧୪) ବନ୍ଧୁର ଧନ ଆଣି ନ ଦେଇ ହରବର ହେଲେ

## (୧୧୩) ଭୋକ ହେଲେ

ଭୋକେ ପଶ୍ଚିମା ନିଦ ଯାଏ, ଭୋକେ ବଙ୍ଗାଳୀ ଗୀତ ଗାଏ ।
ଭୋକେ ଓଡ଼ିଆ ପାନ ଖାଏ, ଭୋକେ ଧାର୍ମିକ ନାମ ଗାଏ ।

## (୧୧୪) ନିକୁଛା ନାରୀର ଲକ୍ଷଣ

(୧) ଇଚ୍ଛା ନ ଥାଇ ଯେ ଭୋଜନ କରେ ।

(୨) ତୁଠରେ କଚ୍ଛା ନ ମାରି ଗୋଡ଼ ଘଷେ ।

(୩) ପୋଇଲୀ ପିଚ୍ଛା ସର୍ବଦା ଲାଗେ ।

(୪) ବେକର ସୁନା ହାର ଦେଖାଇ ହୁଏ ।

(୫) ସର୍ବଦା ସ୍ୱାମୀର କୁହାରଟନା କରେ ।

(୬) ସବୁବେଳେ ରମଣ ହେବାର ଇଚ୍ଛା କରେ ।

## (୧୧୫) ପୁରୁଷ ଠାରୁ ନାରୀ କେତେ ଗୁଣର ଅଧିକାରୀ

(୧) ଭୋଜନ-ଦି ଗୁଣ

(୨) ମୈଥୁନ- ଚାରିଗୁଣ

(୩) କୋପ- ଆଠଗୁଣ

(୪) ଅଭିମାନ- ଷୋଳଗୁଣ

(୫) କ୍ଷମା- ବତିଶ ଗୁଣ

## (୧୧୬) ଛଅଟି କଥା କରିବ ନାହିଁ

(୧) ଘରେ ଧନ ଥାଇ ପରର ଚାକିରୀ କରିବ ନାହିଁ ।

(୨) ଆଖୁ କିଆରୀରେ ଜଗୁଆଳୀ ହେବନାହିଁ ।

(୩) ମାଗି ଆଣିବା ପଦାର୍ଥକୁ ମାଗିବ ନାହିଁ ।

(୪) ପରିସ୍ତ୍ରୀ ଓ ଝାଡାକୁ ଘାଣ୍ଟିବ ନାହିଁ ।

(୫) ଷଣ୍ଢ ବେକରେ ପଘା ଦେବ ନାହିଁ ।

(୬) ରାଣ୍ଡର ଜ୍ୱୋଇଁ ହେବ ନାହିଁ

(୧୧୭) ମଠ ଚାକିରିଆ ହୋଇବ,

ଭୋକ ଆତୁରିଆ ନୋହିବ ।

ଖଟଟି ଉପରେ ମାଠ (ଚାଦର) ଘୋଡ଼ିହୋଇ,

କାଠଟି ପରାଏ ଶୋଇବ ।

ଶୋଇଥିବ କାନ ଡେରି ଯେବେ ବାଜିବ ଘଣ୍ଟା ମହୁରୀ,

ଉଠିବ ପତର ଧରି ।

(୧୧୮) ମଣିଷ ଭିତରେ ଲଣ୍ଡା ପଶୁ ଭିତରେ ଗଣ୍ଡା

ପିଠା ଭିତରେ ମଣ୍ଡା ପରିବା ଭିତରେ ଶଣ୍ଢା (ପିଆଜ ଶଣ୍ଢା)।

## (୧୧୯) ଅଜୀର୍ଣ୍ଣ ହେଲେ କ'ଣ ଖାଇବ

(୧) ମଣ୍ଡାପିଠା ଖାଇ ଅଜୀର୍ଣ୍ଣ ହେଲେ-ଶାଗ ଖାଇବ ।

(୨) ଗହମ(ଅଟା) ପିଠା ଖାଇ ଅଜୀର୍ଣ୍ଣ ହେଲେ -କାକୁଡ଼ି ଲୁଣ ଖାଇବ ।

(୩) ଆମ୍ବଖାଇ ଅଜୀର୍ଣ୍ଣ ହେଲେ -ଦୁଧ ଖାଇବ ।

(୪) ଦୁଧ ଖାଇ ଅଜୀର୍ଣ୍ଣ ହେଲେ-ଦହି ଖାଇବ ।

(୫) ଠେକୁଆ ମାଉଁସ ଖାଇ ଅଜୀର୍ଣ୍ଣ ହେଲେ-ଢଡାତେଲ ଖାଇବ ।

## (୧୨୦) କାମାତୁରା ନାରୀର ଲକ୍ଷଣ

(୧) ମନକୁ ମନ ହସିବା (୨) ଡୋଳା ଲେଉଟାଇ ଚାହିଁବା

(୩) ଶୂନ୍ୟକୁ ଅନାଇ ବସିବା (୪) କିଛି କାରଣ ନଥାଇ ରଷିବା

(୫) ନାକ ଫୁଲାଇବା । (୬) ଅଙ୍ଗ କାଣିବା ।

(୪) ଗୋଡ ନଖ ଦ୍ୱାରା ଭୂଇଁରେ ଗାର କାଟିବା ।

## (୧୨୧) ବିଭିନ୍ନ ଚୋରର ପ୍ରତିକାର

ମନ ଚୋରକୁ ପଲଙ୍କ ସୁପାତି,
ଧନ ଚୋରକୁ ଧକା ।
ଚମ ଚୋର (ଲମ୍ପଟ)କୁ ଦି ଗାଲରେ କଳା,
ଅଜଣା ଚୋରକୁ ବକା (ଗାଳି) ।

## (୧୨୨) ମନ ନଥିଲେ କ'ଣ ହୁଏନାହିଁ

(୧) ପୀରତି (୨) ଦାନ (୩) ଧର୍ମ (୪) କୀର୍ତ୍ତନ

## (୧୨୩) ଏଗୁଡ଼ିକ ବୃଥା

ମରମ ନ ବୁଝି ଶାସ୍ତ୍ର ପଢ଼ିବା,
ଧରମ ନ ଜାଣି ଚିତା କାଟିବା,
ଗରମ ନ ଜାଣି ପଙ୍ଖା ଲୋଡ଼ିବା,
ମରମ ନ ଥାଇ କଥା ଗପିବା,
ଲକ୍ଷ ନ ଥାଇ ଶିକାର ଖେଳିବା ।

(୧୨୪) **ଯାହାକୁ ଦେଖିଲେ ଡ଼ର ମାଡ଼େ**

ମଶାଣିବର (ମରିବା ଅବସ୍ଥାରେ), ଅପୂଜା ହର,
ଡେଇଁଲା ଜର, ଭାଙ୍ଗିଲା ଘର,
ବଳଦ ଖର, ମାଈ କାକର,
ଏମାନଙ୍କୁ ଦେଖି ମାଡ଼ଇ ଡର ।

(୧୨୫) **ବସନ୍ତ ରୋଗୀର ପ୍ରତିକାର**

(୧) ସମଗ୍ର ଚକ୍ଷୁରେ ଡୋଳାକୁ ଛାଡ଼ି ମହୁ ବୋଳିବ ।
(୨) ମହୁ ପାଣି ଘଡ଼ିକି ଘଡ଼ି ପିଇବ ।
(୩) ନିମ୍ବ ପତ୍ରକୁ ପାରି ଶୋଇବ ।
(୪) ନିମ୍ବ ଡାଳରେ ବିଞ୍ଚି ହେବ ।
(୫) ମା' ଶୀତଳା ଠାକୁରାଣୀ ନାମ ଜପ କରିବ ।

(୧୨୬) **ଯେମିତି ହେଲେ ଜଣାଯାଏ**

(୧) ଘର ଭିତରେ ଶୁଖୁଆ ରନ୍ଧାହେଲେ ।
(୨) କେତକୀ ଫୁଲ ବାଡ଼ିରେ ଫୁଟିଲେ ।
(୩) ସାତ ପ୍ରସ୍ତ ଶାଢ଼ୀ ଘୋଡ଼ି ହେଲେ ଉଚ୍ଚ କୁଚ (ସ୍ତନ) ।
(୪) ସୁନ୍ଦରୀ ଛଟକି ନାରୀ ।
(୫) ବେଶ୍ୟା ଗୀତ (୬) ଗୋରୁବଧ ଜନିତ ପାପ ।
(୭) ସୁପଣ୍ଡିତ (୮) ବକ୍ତା ।

(୧୨୭) **କାହାର ରାଗ କେତେ ସମୟ**

(୧) ମା', ବାପା ଓ ଗୁରୁଜନଙ୍କର ରାଗ ମୁହୂର୍ତ୍ତକ ପାଇଁ ।
(୨) ମାଇପ (ସ୍ତ୍ରୀ)ର ରାଗ ଦିନକ ପାଇଁ ।
(୩) ମୂର୍ଖ ଓ କୁକୁରର ରାଗ ଜୀବ ଥିବା ଯାଏଁ ।

(୧୨୮) **କିଏ ଖୋଇଲେ କ'ଣ ହୁଏ**

ମାଆ ଖୋଇଲେ ରୋଗ ବଢ଼େ ।
ବାପା ଖୋଇଲେ ଅଧା ପତରିଆ ।
ବଇଦ ଖୋଇଲେ ରୋଗ ଛାଡ଼େ ।

## (୧୨୯) କିଏ କ'ଣ ଚାହେଁ

ମାଆ ଚାହେଁ ପେଟକୁ,
ମାଇପ ଚାହେଁ ଅଣ୍ଟାକୁ (ପଇସା),
ବେପାରୀ ଚାହେଁ କଣ୍ଟାକୁ (ଦଣ୍ଡିକୁ),
ମାଛୁଆ ଚାହେଁ ତେଣ୍ଟାକୁ,
ଭିକାରୀ ଚାହେଁ ବଣ୍ଟାକୁ ।

## (୧୩୦) ପାଞ୍ଚଟି କଥାର ପ୍ରତିକାର ନାହିଁ

ମାଆ ହୋଇ ଯେବେ ବିଷ ଦିଅଇ,
ବାପା ହୋଇ ଯେବେ ବିକ୍ରି କରଇ,
ମାଇପ (ସ୍ତ୍ରୀ) ଯେବେ କପଟ କରଇ,
ଗୁରୁ ହୋଇ ଚାଟ ନ ତିଆରଇ,
ରାଜା ବଳାତ୍କାରେ ହରି ନିଅଇ ।

## (୧୩୧) ଶଳା ଓ ଦେଢ଼ଶ୍ୱଶୁରର ଆସ୍ଥାନ

ମାଇପର ଭାଇ ଚୁଲୀ ମୁଣ୍ଡରେ,
ଘଇତାର ଭାଇ ଦାଣ୍ଡ ପିଣ୍ଡାରେ ।

## (୧୩୨) ସ୍ତ୍ରୀ ସମ୍ପର୍କରେ

ମାଇପର କଥା ପାଣ ବାରତା,
କେଭେ ନ ଶୁଣିବ କାନେ ।
ହଁ କରୁଥିବ ହାଁ କରୁଥିବ,
ମନ ଦେଇଥିବ ଆନେ ॥

## (୧୩୩) ପରିତ୍ରାଣ ନାହିଁ

(୧) ମଳ ମାସରେ ମୃତ୍ୟୁ ହେଲେ ।
(୨) କରଣ ଯଦି ଚାଷୁଣୀ ବିବାହ କରେ ।
(୩) ଗ୍ରହଣ ନ ଛାଡୁଣୁ ଚନ୍ଦ୍ରମା ଅସ୍ତଗଲେ । (ତହିଁ ଆର ଦିନ ସନ୍ଧ୍ୟାକୁ ଚନ୍ଦ୍ରକୁ ଦର୍ଶନ ନ କରିବା ପର୍ଯ୍ୟନ୍ତ ପାକ ତ୍ୟାଗ)

(୪) ତର୍ଜନୀ ଆଙ୍ଗୁଠି ସହିତ ମଧମା ଆଙ୍ଗୁଠି ସମାନ ହେଲେ ।
(ଅତି ପାପି ଓ ନାସ୍ତିକ ହୁଅନ୍ତି)
(୫) ଗର୍ଭବତୀ ନାରୀର ଶୂଳ (ଗର୍ଭ ଯନ୍ତ୍ରଣା) ଚଳନ୍ତା ଗାଡ଼ିରେ ହେଲେ
(୬) ବ୍ରାହ୍ମଣ ପୁତ୍ର ହୋଇ ପାପକର୍ମ କରି କୁଳ ହରାଇଲେ ।

(୧୩୪) **ଗୃହସ୍ୱାମୀଙ୍କ ପାଇଁ ଅଶୁଭ**

ମାଘ ମାସରେ ମଇଁଷି ଜନ୍ମ କଲେ,
ଭାଦ୍ରବ ମାସରେ ଗାଈ ଜନ୍ମ କଲେ,
ଶ୍ରାବଣ ମାସରେ ଘୋଡ଼ି ଜନ୍ମ କଲେ,
ଏମାନେ ଘରର ସ୍ୱମୀଙ୍କୁ ଖାଆନ୍ତି ।

(୧୩୫) **କେଉଁମାନେ ଖୁବ୍ ଚଲାଖ/ସିଆଣ**

(୧) ମାଲୁଣୀ (୨) ଭଣ୍ଡାରୀ
(୩) ଦୂତୀ (୪) ବଣିଆ
(୫) ହଟକାରୀ କେଳା (୬) ଯୁଆଡ଼ି (ଯେ ଯୁଆଖେଳେ)
(୭) କରଣ (୮) କୁଆ
(୯) କୋକି (୧୦) ବିଲୁଆ

(୧୩୬) **ଛିଣ୍ଡାଳି ମାଇକିନିଆର ଲକ୍ଷଣ**

(୧) ମାଲୁଣୀ ସହିତ ସଙ୍ଗାତ ବସେ
(୨) ନିଜର ପ୍ରଶଂସା ଗାଇ ବୁଲେ
(୩) ପାନ ଖାଇ ଓଠ ରଙ୍ଗ କରେ
(୪) ଦାଣ୍ଡ ଦୁଆରେ ଯାଇ ଠିଆ ହୁଏ
(୫) ଦର୍ପଣରେ ମୁହଁକୁ ନିଠେଇ କରି ଦେଖେ
(୬) ପାଞ୍ଚଟାକୁ କରେ ଧରମ ଭାଇ
(୭) ଗହଣା ପିନ୍ଧି ଦେଖେଇ ହୁଏ ।

(୧୩୭) **ତିନି ଘର ବୁଡ଼ା**

(୧) ମାଳି ଘର ଛେଳି (୨) କୁମ୍ଭାର ଘର ଘୋଡ଼ା
(୩) ତନ୍ତୀ ଘର ମାଙ୍କଡ଼ ।

## (୧୩୮) ମନ୍ଦ କପାଳିଆ

ମହାନ୍ତି ଘରେ ବନ୍ଧୁକଲେ ଚଷା,
ବଡଲୋକ ସଙ୍ଗେ ଖେଳିଲେ ପଶା ।
ପୋଚା ମାଛ ନୁହେଁ ନିବାଡ଼ କଷା,
ଶିଉଳି ତୁଠରେ ଯେ ଗୋଡ଼ଘଷା ।
ଘର ବାଡ଼ିରେ ଯେ ବୁଣଇ ଖସା,
ଘୋର ଗିରିଷମେ ବେଢ଼ିଲେ ମଶା ।
ପୁରୁଷ ହେଲେ ଚୁଲୀମୁଣ୍ଡ ପଶା,
ଏ ଗୁଡ଼ିକ ସବୁ କର୍ମ ଦୁର୍ଦ୍ଦଶା ।

## (୧୩୯) କେଉଁମାନଙ୍କୁ ଧନ ଧାର ଦେବ ନାହିଁ

(୧) ମିତ୍ର (ମିତ)    (୨) ଶାଳୀ    (୩) ଶଳା
(୪) ଶ୍ୱଶୁର    (୫) ଭାଇ

## (୧୪୦) ଏମାନଙ୍କୁ ବଧକଲେ ଜୀବ ହତ୍ୟା ଦୋଷ ଲାଗେ ନାହିଁ

(୧) ବାଘ    (୨) ଆତତାୟୀ ବ୍ୟକ୍ତି
(୩) ବିଷଧର ସର୍ପ    (୪) ଯଜ୍ଞରେ ବଳି ସ୍ୱରୂପ ପଶୁ
(୫) ଯୁଦ୍ଧରେ ଶତ୍ରୁ    (୬) ବଣରେ ମୃଗ (ମିରିଗ)
(୭) ବିଛା    (୮) କ୍ଷେତ ନଷ୍ଟକାରୀ ମୂଷା ଓ ଝିଣ୍ଟିକା ।
(୯) ଦେବୀ ଆଗରେ ବଳି ସ୍ୱରୂପ ଛେଳି, ମେଣ୍ଢା

## (୧୪୧) ତେଲ ବ୍ୟବହାରରେ ଆୟୁଷ ବୃଦ୍ଧି

ମୁଣ୍ଡକୁ ରାଶି (ତେଲ), ପାଦକୁ ଜଡ଼ା (ତେଲ) ।
ଦେହକୁ ସୋରିଷ (ତେଲ), ଆୟୁଷ ବଢ଼ା ॥

## (୧୪୨) ସିଦ୍ଧ ଉକ୍ତି

ମୁରୁଖ କୋଠିଆ କେଭେ ନ ଛାଡ଼,
ମୁରୁଖ ବଇଦ ପାଖ ନ ମାଡ଼ ।
ଘର ଭିତରେ ନ କରିବ ଗାଡ଼,
ନାରୀକୁ କେଭେ ନ ମାରିବ ମାଡ଼ ।

(୧୪୩) **ଘୋର ଯନ୍ତ୍ରଣା ଦାୟକ**

ମୂରୁଖ (ମୂର୍ଖ) ପୁଅ, ବିଧବା ଝିଅ, ହାରିଲା ଯୂଅ (ଯୁଆଖେଳ),
ବିନା ଅଗ୍ନିରେ ପୋଡ଼ନ୍ତି ଦେହ ।

(୧୪୪) **ବିଶ୍ରାମ ନେବାର ସମୟର ପରିମାଣ**

ମୈଥୁନ ପରେ ତିନି ଶହ ଲିତା, (୧୨୦ ମିନିଟ=୨ଘଣ୍ଟା)
ଦିନ ଖିଆ ପରେ ଶହେ ଲିତା, (୪୦ ମିନିଟ= ଅଧଘଣ୍ଟା ଏ଼ଦଶ ମିନିଟ୍)
ରାତି ଖିଆପରେ ନଅଶହ ଲିତା, (୩୬୦ ମିନିଟ=୬ଘଣ୍ଟା)
ବିଶ୍ରାମ କରି ଯେଣେ ଯାଉ ଥା । (ଅଢ଼େଇ ଲିତା= ଏକ ମିନିଟ)

(୧୪୫) **ଯେଉଁ ମାନଙ୍କୁ କ୍ୱଚିତ୍ ଦେଖାଯାଏ**

ମୋଟି ବାଉରାଣୀ, ଗୋରୀ ଧୋବଣୀ,
କାଳୀ ଭୁଷୁଣ୍ଡି ବ୍ରାହ୍ମଣୀ, ଛାପ ଚିକ୍‌ଣିଆ ପାଲୁଣୀ,
ଅପରଛନିଆ ତେଲୁଣୀ, ତୀକ୍ଷ୍ଣ ନାକ ଥିବା କନ୍ଧୁଣୀ,
ଡେଙ୍ଗୀ କୋହ୍ଲଣୀ, କହରୀ ଚାଷୁଣୀ,
ଶହକରେ ଏକ ମିଳନ୍ତି ନାହିଁ ।

(୧୪୬) **କି ପାଇଁ ହଟହଟା, କେଉଁଟା ପିତା**

ଦୀପ୍ତିମାନ ନାରୀ ଅଣ୍ଟାଟା ମୋଟା,
ଶାଳୀ ମେଳରେ ଯେ ଖେଳଇ ଥଟ୍ଟା ।
ଟୋକୀଙ୍କର ପିନ୍ଧା-କାନିଟା ଫଟା,
ଏ ସମସ୍ତ ବଡ଼ ହଟ ହଟା ॥
ଯୁବତୀ ନାରୀ ବାପଘର ପିତା,
ଟୋକୀକୁ ପିତା ଯେ ବୁଢ଼ା ଘଇତା ।
ପୁଅ ଜନମ ପିତା ବେଶ୍ୟାକୁ,
ଝିଅ ଜନମ ପିତା ଭିକାରିକୁ ॥

(୧୪୭) **ଯାହା ଫୁଟି ବାହାରେ**

ଯୁବତୀ କୁଚ (ସ୍ତନ) ଯେ ଅଘୋର ପାପ,
ଅଗ୍ନି କଣିକା ଯେ ସୁନ୍ଦର ରୂପ ।
ଖଳ ପ୍ରକୃତି, ପାରଦ ଦେଲେ,
ଏ ସବୁ ଫୁଟି ବାହାରେ ।

## (୧୪୮) କପାଳ ଫଟା ଲକ୍ଷଣ

ଯୋଡ଼ା ମାଇପରେ ଯେବଣ ଘର,
ବେଦୀରେ ବରକୁ ଧଇଲେ ଜର,
ଅଣ୍ଡିରା ଚଣ୍ଡୀକୁ ନ ମିଳେ ବର,
ଏ ସବୁ ବଡ଼ ହରବର ।

* * *

ରଖେ ଯେ ଟୋକୀ ରୂପବତୀ ନାରୀ,
ବର୍ଷ ବିଆଣିଆ ଯାହାର ନାରୀ ।
ଶଶୁର ସଙ୍ଗରେ ଯେ କଳିକରି,
ନ ଆଣେ ଘରକୁ ଯୁବତୀ ନାରୀ ॥
ବିଧବା ନାରୀଙ୍କୁ ଛଳାଇ କହେ,
ବିଟପୀ ନାରୀକୁ ହେଲେ ଦୂତୀଅ ।
ଅଚିହ୍ନା ନାରୀଙ୍କୁ/ଯେ ଆଖିଠାରେ,
ବଢ଼ିଲା ଝିଅ ମାତା ବେଶରେ ଥାଏ ।
ଏମାନଙ୍କୁ ବିଧି ବାମ ହୁଏ ।

* * *

ଭଣ୍ଡାରୁଣୀ ଯେବେ ହୁଅଇ ବୋକୀ,
ମାଲୁଣୀ ଯେବେ ହୁଅଇ ଚଲାକୀ,
ଲଜ୍ଜାହୀନ ହେଲେ ଯେ ଗଜା ଟୋକୀ,
ଏମାନଙ୍କୁ ସାବଧାନ ଥିବ ଟି ।

## (୧୪୯) ଏଇ ଚାରିଜଣ ମାଡୁଆ

(୧) ବିବାହ କରଇ ଯେବେ ଭଡୁଆ,
(୨) ବିବାହ କରି ଯେ ନାରୀ ଛାଡୁଆ (ଛାଡ଼ିଦେବା),
(୩) ବିବାହ କରି ଯେ ନୁଡୁଗୁଡ଼ିଆ (ପରସ୍ତ୍ରୀ ଗମନକାରୀ),
(୪) ଧନୀ ହୋଇ ଯେ ରହଇ ବାଡୁଆ (ଅବିବାହିତ) ।

(୧୫୦) ରାଗ ଝର ଝର, କାମରେ ଡ଼ର,
ଚାଲି ଖର ଖର, ଠିଆ ଧର ଧର,
ହସ କର କର, ଶୀତେ ଥର ଥର,
ମୂତା ଚର ଚର, ମଳ ଡର ଡର,
ବାଳ ଫର ଫର, ଦହି ଭର ଭର ,
ରେଗୀ ମର ମର, ଲୁଗା ଫର ଫର,
ବୁଲା ଘର ଘର, ତେଲ ସର ସର,
ସଖିଗୋ ବଡ ମନ୍ଦ ।

(୧୫୧) **ଷଡ଼ ରସ ଯଥା:- (ଛଅ ପ୍ରକାରର ରସ)**

(୧) ରାଗ (୨) ପିତା (୩) କଷା
(୪) ଖଟା (୫) ଲୁଣିଆ (୬) ମିଠା

**ରସ ଦଶ ପ୍ରକାର**

(୧) ଶୃଙ୍ଗାର (୨) ବୀର (୩) କରଣ
(୪) ଅଦ୍‌ଭୁତ (୫) ହାସ୍ୟ (୬) ଭୟାନକ
(୭) ରୌଦ୍ର (୮) ବିଭତ୍ସ (୯) ଶାନ୍ତ
(୧୦) ବାତ୍ସଲ୍ୟ

**ଚାରିପ୍ରକାର ଧାତୁକୁ ରସ କୁହାଯାଏ ।**

(୧) ପାରଦ (୨) ଶୁକ୍ର (୩) ରସ କର୍ପୂର (୪) ଦେହ

(୧୫୨) **କେଉଁମାନଙ୍କ ବିପକ୍ଷରେ କଥା କହିବ ନାହିଁ**

(୧) ରାଜା (୨) ତପସ୍ୱୀ (୩) ବୃଦ୍ଧ
(୪) ଗୁରୁ (୫) ଜ୍ଞାନୀ (୬) ଖଣ୍ଡ
(୭) ଧନୀ (୮) ପିତା (୯) ପାରିଲା ଭାଇ
(୧୦) କ୍ରୋଧୀ (୧୧) ଜନନୀ (୧୨) ମେଳି କରୁଥିବା ଜନମାନ

## (୧୫୩) କାହାକୁ ବାଧା ଦେଲେ କ'ଣ ହୁଏ

ଶତ୍ରୁକୁ ରୋକିଲେ ବଢ଼ଇ ମାନ,
ବୀର୍ଯ୍ୟକୁ ରୋକିଲେ ବଢ଼ଇ ଜ୍ଞାନ ।
ହଗା(ଝାଡା) କୁ ରୋକିଲେ ବଢ଼ଇ ବାୟୁ,
ନିଶ୍ୱାସ ରୋକିଲେ ବଢ଼ଇ ଆୟୁ ।
ନିଦକୁ ରୋକିଲେ ବଢ଼ଇ ହାଇ,
ମନକୁ ରୋକିଲେ ହେବୁ ବିଜୟୀ ।

## (୧୫୪) ଏସବୁ ଅପାଠୁଆ

ଶାଠ ନଥାଇ ପାଠ, ମଞ୍ଚ ନଥାଇ କାଠ ।
ନାହା ନ ଥାଇ ଘାଟ, ହେତୁ (ହିତା ହିତଜ୍ଞାନ) ନଥାଇ ଚାଟ ।
ବୀର ନ ଥାଇ ଥାଟ (ଆଡ଼ାଚଉଡା), ଲୋକ ନ ଥାଇ ନାଟ ।

## (୧୫୫) ଗୁଣ ପାଇଁ ଯାହା ଦେବସ୍ଥାନରେ ପଶିଥାଏ

(୧) ଶାମୁକା ହାଡ - (ଶଙ୍ଖ) (୨) ବାଘର ଗୋଡ- (ନଖ)
(୩) ହାତୀର - (ଦାନ୍ତ) (୪) ଗୋରୁ ପିତ୍ତ- (ଗୋଚିନା)
(୫) ମିରିଗ ଅନ୍ତ- (କସ୍ତୁରୀ) (୬) ପୋକର ନାଳ - (ପାଟ)
(୭) ଗାଈର ବାଳ- (ଚଅଁର) (୮) ମାଛି ଅଇଁଠା- (ମହୁ)
(୯) ଗେଣ୍ଡା ଗଇଁଠା - (ମୋତି) (୧୦) ବଣର ଘାସ - (କୁଶ)

## (୧୫୬) ସ୍ୱାସ୍ଥ୍ୟରକ୍ଷା (ଚାଳିଶା ଦୋଷର ପ୍ରତିକାର)

ସଜ କାଠ ଚମ୍ପା ଫୁଲ ଆଣିବ,
ପ୍ରଭାତ କାଳେ ଘଡ଼ିଏ ଶୁଙ୍ଘିବ ।
ମାସେ ଦଶଦିନ ଏପରି କଲେ,
ଚାଳିଶା ଦୋଷ ଛାଡ଼ିଯାଏ ଭଲେ ॥

* * *

ଚାଳିଶ ବର୍ଷର ଯେ ଆଦ୍ୟ ଦିନ,
ଚାଳିଶ ପ୍ରକାର ଫୁଲ ଆଘ୍ରାଣ ।
ଚାଳିଶା ଦୋଷ ଯେ ରହଇ ନାହିଁ,
ଧନ୍ୱନ୍ତରୀ ଏହା ଅଛନ୍ତି କହି ॥

(୧୫୭) **ଅତି ନିକୃଷ୍ଟ**

ସଞ୍ଜେ ଧାନ, ସକାଳେ ପାନ,
ଦ୍ୱିପହରିଆ ଦାରୀ, ଅଢ଼େଇ ପହରିଆ କପା କିଆରୀ,
ପାଖ ନ ମାଡ଼ି ଆ ବାହାରି ।

(୧୫୮) **ଗୁଣରୁ ଚିହ୍ନିବ**

ସବୁ ବେଳେ ଯେ କାନେ ଫୁଲ ଖୋଷେ ତାକୁ ଜାଣିବ-
'ରାଣ୍ଡୁଆ' । (ବିପତ୍ନୀକ)
ପାଦେ ପକାଇ ପଛକୁ ଅନାଏ ତାକୁ ଜାଣିବ-
'ଆଣ୍ଡୁଆ'। (ଅବୁଝା,ଏକଜିଦିଆ)
ପ୍ରସାଦ ଖଳାରେ ନସର ପସର (ଆନନ୍ଦ ବଜାର) ତାକୁ ଜାଣିବ-
'ଖଣ୍ଡିଆ' । (ମହାପ୍ରସାଦ କୋଡୁଆ ଭଙ୍ଗାରେ ଅହାରକାରୀ)
ହାଟଯାକ ଯେ ଏପାଖ ସେପାଖ ତାକୁ ଜାଣିବ-
'ଦଣ୍ଡିଆ' । (ହାଟରେ ଯେ ମହାସୁଲ ଆଦାୟ କରେ)
ଯେତେ ଗାଳି ଦେଲେ ଛନ୍ଦ ନ କରେ ତାକୁ ଜାଣିବ-
'ଗେଣ୍ଡିଆ' । (ନିର୍ଲ୍ଲଜ)
ସିନ୍ଦୂର କଳିକୁ ତମ୍ବା ଉଉଁରିଆ ତାକୁ ଜାଣିବ- ଚଣ୍ଡିଆ । (ଚଣ୍ଡୀସାଧକ)
ଟିକିଏ କଥାରେ ରାଗ ତମ ତମ ତାକୁ ଜାଣିବ- 'କାଣ୍ଡୁଆ' ।
ଫଗୁଣ ମାସରେ ବିଲରେ ପାଣି ତାକୁ ଜାଣିବ-
'ଧଣ୍ଡିଆ'। (ଧଣ୍ଡସାପ ପ୍ରଚୁର ବିଲରେ ଥିବାକୁ)
ଖାଉ ଖାଉ ଯାର ପହରେ ଯାଏ ତାକୁ ଜାଣିବ- 'ଗଣ୍ଡିଆ' (ଅଳସୁଆ)
ଦନାଇ କଥା କେହି ନ ଶୁଣିଲେ, ଦନାଇ ହୁଅଇ 'ଭଣ୍ଡିଆ' ।

(୧୫୯) **ଖାଇବାକୁ ମଜାଲାଗେ**

(୧) ସାନ ଛତୁ (୨) ବଡ଼ ମାଛ (୩) ବୁଢ଼ା କଖାରୁ
(୪) କଅଁଳ ଶାଗ (୫) ପାକଳ ଆମ୍ବ (୬) ପାଟଳ ଚୂଡ଼ା
(୭) ମୋଟା ଆଖୁ (୮) ମଟକା ଭଜା (୯) ନାଳୀ ପଇଡ଼
(୧୦) ତାଳର ଗଜା (୧୧) କଷି ବାଇଗଣ
(୧୨) ପାଗୀ ଉଖୁଡା (ଭଳ ପାଗର)

(୧୬୦) ସ୍ତ୍ରୀ ସହିତ ରତି/ସହବାସ କେବେ କେବେ ନ କରିବ

(୧) ସ୍ତ୍ରୀ ଧର୍ମ (ଋତୁହେବା) ଠାରୁ ଚାରିଦିନ ଛାଡ଼ିବ
(୨) ପୁଣି ଏଗାର ଓ ତେର ଦିନ ଛାଡ଼ିଦେବ
(୩) ପୂର୍ଣ୍ଣିମା, ଅମାବାସ୍ୟା, ସଙ୍କରାନ୍ତି, ଏକାଦଶୀ ଛାଡ଼ିବ
(୪) ଜନ୍ମାଷ୍ଟମୀ, ଗ୍ରହଣ, ଶିବରାତ୍ରୀ, ରାମନବମୀ ଛାଡ଼ିବ
(୫) ବ୍ୟତିପାତ ଯୋଗ ଛାଡ଼ିବ
(୬) ଦିବସରେ, ରାତ୍ରିଭୋଜନ ପରେ ରତି କରିବ ନାହିଁ
(୭) ବାକି ମାସର ନଅଦିନ ରତି କରିବ ।

(୧୬୧) (କ) କେଉଁମାନଙ୍କ ସହିତ ରତି କରିବ ନାହିଁ

(୧) ସନ୍ୟାସିନୀ (୨) ବୃଦ୍ଧା (୩) ବୋବା
(୪) ଗର୍ଭିଣୀ (୫) କୁମାରୀ (୬) ରଜୋବତୀ
(୭) ରୋଗିଣୀ (୮) ସଗୋତ୍ରୀ (୯) ଉପଦଂଶ
(୧୦) ପ୍ରମେହ ବତୀ (୧୧) ପିନସ ଗ୍ରସ୍ତ (୧୨)ଭିକ୍ଷାଶୀ ଯୁବତୀ ।
(୧୩) ମାତୁଳ କୁଳର ଯୁବତୀ (୧୪) ବାଂଝ (ବନ୍ଧ୍ୟା)

(ଖ) କେଉଁଦିନ ରତି କରିବ ନାହିଁ

(୧) ଗ୍ରହଣ (୨) ଅମାବାସ୍ୟା (୩) ପ୍ରତିପଦା
(୪) ଏକାଦଶୀ (୫) ଚନ୍ଦ୍ରକ୍ଷୟ ସଂକ୍ରାନ୍ତି (୬) ଯଜ୍ଞ ତଥା ହୋମ
(୭) ଶ୍ରାଦ୍ଧ ଦିନମାନଙ୍କରେ

(ଗ) କେତେବେଳେ ରତି କରିବ ନାହିଁ

(୧) ଅତି କ୍ଷୁଧା ବେଳେ
(୨) ଉପବାସରେ
(୩) ଗ୍ରୀଷ୍ମଋତୁର ପ୍ରଥମ ପ୍ରହରରେ

(ଘ) କେଉଁ ସ୍ଥାନରେ ରତି କରିବ ନାହିଁ

(୧) ତୀର୍ଥ ସ୍ଥାନରେ
(୨) ବସନ୍ତ ହେଉଥିବା ସ୍ଥାନ
(୩) ମହାମାରୀ ହେଉଥିବା ସ୍ଥାନ ।

## (୧୬୨) ହରି ଭରସା, ମାଇପି ଝିଅର ଏତିକି ଦଶା

(୧) ଶାଶୁଙ୍କର ଗୋଡ଼ ମର୍ଦ୍ଦନ ଘଷା,
(୨) ରାଣ୍ଡ ନଣନ୍ଦର ହାଣୁଆ ଭାଷା,
(୩) ଟିକିଏ କଥାରେ ଦିଅଇ ରୁଷା,
(୪) ଭାତ ନକେଇଲେ (ଢାଉହେଲେ) ଘଇତା ଘୋଷା,
(୫) ଦଶମାସ ଗର୍ଭ ଭାତ ପରଷା,
(୬) ପୋଖତୀ ବେଳର ଯେତେ ଦୁର୍ଦ୍ଦଶା,
(୭) ଭଲ ମନ୍ଦ ଖିଆ ଛାଡ଼ିବ ଆଶା,
(୮) ପୁଅ ଜନ୍ମ କଲେ, ରାତିଯାକ ଆଖି ନୁହଇ କଷା ।

## (୧୬୩) କେଉଁମାନଙ୍କ ପାଖ ମାଡ଼ିବ ନାହିଁ

(୧) ହାତୀ (୨) ବିନ୍ଧଣା ଗାଇ ବା ଗୋରୁ (୩) କଳିଆ ଭାଇ (୪) ସାପ (୫) କମ୍ମାରର ତାଉ (୬) ଛାଡ଼ରୀ ସ୍ତ୍ରୀ (୭) ବେଶ୍ୟା ପଡ଼ା (୮) ବିଟପୀ ନାରୀ (୯) ଅସ୍ତ୍ରଧାରୀ ଚୋର (୧୦) ନିଶାଖୋର (ମଦୁଆ) (୧୧) ଅପନ୍ତରା ଘାଇ (୧୨) ନାତୁଆ ଘୋଡ଼ା (୧୩) କୁଷ୍ଠ ରୋଗୀ (୧୪) କଳିଗୋଳ ଲାଗିଥିବା ସ୍ଥାନ (୧୫) ଭଙ୍ଗା ଦେଉଳ ଓ କାନ୍ଥ (୧୬) ଗାତ (୧୭) ଗଡ଼ର ଖାଇ (୧୮) ବର୍ଷାବେଳେ ବଡ଼ଗଛମୂଳ (୧୯) ଲାଞ୍ଚୁଆ, ମିଛୁଆ, ଖଚୁଆ, ଖୋସାମତିଆ ଲୋକ (୨୦) କଳିହୁଡ଼ୀ ସ୍ତ୍ରୀ (୨୧) ଠକ ବେପାରୀ (୨୨) ବାଞ୍ଝ ବିଧବା, (୨୩) ଶଠ ମଇତ୍ର (୨୪) କ୍ରୋଧୀ ବ୍ରାହ୍ମଣ (୨୫) ଦୂତିକା ଧାଇ (୨୬) ଟୋକୀ ଶାଳୀ ସୁନ୍ଦର ହୋଇଥିଲେ (୨୭) ସାବତ ପୁଅ (୨୮) ଅବିବାହିତ ଯୁବକ (୨୯) ଭୁଷୁଡ଼ା କୂଅ (୩୦) କ୍ରୋଧୀ ବ୍ରାହ୍ମଣ (୩୧) ଯେଉଁ ଘରଣୀ ଅଗାଧୂଆରେ ପଖାଳ ବାଢ଼ି ଖାଏ (୩୨) ଭୁଆସୁଣୀମାନଙ୍କୁ ଏକା ଦେଖି ଯେ ଛୋକାର ଗୀତ ଗାଏ (୩୩) ଯେଉଁ ଭାଇ ଭଉଣୀ ଘରକୁ ଖାଲି ହାତରେ ଯାଏ (୩୪) ମାଛ ଧରାଳି (୩୫) ଶତ୍ରୁ ସହିତ ଯାହାର ସମ୍ପର୍କ (୩୬) ସବୁ କଥାରେ ଏଣ୍ଡୁଅ ପରି ମୁଣ୍ଡ ଟୁଙ୍ଗାରେ (୩୭) ଚରଣ ଚୁଟିଆ ପ୍ରକୃତିର ଲୋକ (୩୮) କାତ ମାରି ନଜାଣି ଦଦରା ଡଙ୍ଗାକୁ ବାହେ (୩୯) ଶତ୍ରୁ ସଙ୍ଗେ କାରବାର କଲେ (୪୦) ବୃଷଭ ଯେତେବେଳେ କାମ ମତ୍ତ ହୋଇ ଗାଈ ପଛରେ ଗୋଡ଼ାଇଥାଏ (୪୧) ବିଧବା ବ୍ରାହ୍ମଣୀର ଚିତ୍ତ ଚଞ୍ଚଳ ଥିଲେ (୪୨) ମାଇପ କଥାରେ ଯେ ମା'କୁ କର୍କଶ କଥା କହେ ।

(୧୬୪) ଏ ତିନିଙ୍କୁ ବିଶ୍ୱାସ ନାହିଁ

(୧) ଢୁଲି ଡଙ୍ଗା (୨) ବୁଲୀ ମାଇପ (୩) କୁମ୍ଭୀରିଆ ନଈ ।

(୧୬୫) ଏଗୁଡ଼ିକ ଅକାମୀ

(୧) ଅଣ୍ଟା ଭାଙ୍ଗିଯାଇଥିବା ଘୋଡ଼ା (୨) ମାଛ, କଖାରୁ ସଢ଼ିଗଲେ

(୩) ଅଣ୍ଟା ଯାଦୁଆ ନାରୀ (୪) ପାଣିକଖାରୁ ଅତି ହାଲୁକା ହେଲେ

(୧୬୬) ଯିଏ ଭୂତଗଣ୍ଡିଆ

(୧) ଅଳସ କରଇ କାଲୁଆ ବେଳେ,

(୨) ଦରାଣ୍ଡି ହୁଅଇ ଦୁଇ ପ୍ରହରେ,

(୩) ପର ଦୋଷ ଯାକ ବାଛି ବସଇ,

(୪) ଦେହକୁ ପଡ଼ିଲେ ସବୁ କରଇ,

(୫) ଦଇବ ସୁମରି ଆଉଁସେ ହିଆ,

ଏହାଙ୍କୁ କହଇ ଭୂତଗଣ୍ଡିଆ ।

(୧୬୭) ଏମାନେ ମରନ୍ତି

(୧) ଅଲାଜୁକୀ ଘରଣୀ (୨) ଲାଜକୁଳୀ ବେଶ୍ୟା

(୩) ଡର ଡରିଆ ଗରାଖ (୪) ସତକହୁଥିବା ବେପାରୀ

(କ) କଣା (ଶୁକ୍ର) କରାଣ୍ଡି (ମୀନରେ) ଦରାଣ୍ଡି ଧରିଛି-(ଶୁକ୍ରରେ ମୀନ)
ମାଠିଆରେ (କୁମ୍ଭରେ) ଛୋଟା (ଶନି) ଯାଇ ପଶିଛି-(କୁମ୍ଭରେ ଶନି)
ମକର ପିଠିରେ ବହଇ କୁଜ-(ମକରରେ ମଙ୍ଗଳ)
ଷଣ୍ଢ ମୁଣ୍ଡେ ଚାନ୍ଦ ଦିଶଇ ତେଜ-(ବୃଷଭରେ ଚନ୍ଦ୍ର)
ଏହିପରି ଗ୍ରହମାନେ ଅବସ୍ଥାନ କରୁଥିଲେ, ଦାସୀ ପୁତ୍ର ରାଜା ହୁଏ ।

**(ଖ)** କଣା (ଶୁକ୍ର) ବଣା ଧଇଲେ (କୁମ୍ଭରେ) ଲାଭ କିଛି ନାହିଁ ।
ଛୋଟା (ଶନି) ଯେବେ ବଣା ଧରେ (କୁମ୍ଭରେ) ରାଜଯୋଗ ଜାଣି ।

**(ଗ)** ମିଠା ବହୁତ ଖାଇଲେ
(୧) କୁରୁମି (୨) ମେହ (୩) କଫ (୪) ଅଜୀର୍ଣ୍ଣ ରୋଗ ସବୁହୁଏ ।

## (୧୬୮) କଳିଯୁଗରେ ଛ'ପ୍ରକାର ଦଶା (ବିପରୀତ କଥା)

(୧) ଦାନ କରିବାକୁ ଇଛୁକ ବ୍ୟକ୍ତି ହାତରେ ଧନ (ପଇସା) ନଥାଏ ।
(୨) ଧନ ଦୌଲତବାନ ଲୋକ କୃପଣତା କରେ ।
(କାହାକୁ କିଛି ଦେବାକୁ ଚାହେଁ ନାହିଁ )
(୩) ପାପ କର୍ମରେ ଲିପ୍ତ ଥିବା ବ୍ୟକ୍ତି ଦୀର୍ଘଜୀବି ହୁଅନ୍ତି ।
(୪) କୀର୍ତ୍ତିମାନ ପୁରୁଷକୁ କାଳ ସହେ ନାହିଁ (ଶୀଘ୍ର ମରିଯାଆନ୍ତି) ।
(୫) ବଂଶ ମର୍ଯ୍ୟାଦା ହୀନ ବ୍ୟକ୍ତି ସିଂହାସନରେ ବସନ୍ତି (ରାଜା ହୁଅନ୍ତି) ।
(୬) କୁଳୀନ ଲୋକ ବଂଶମର୍ଯ୍ୟାଦା ହୀନ ବ୍ୟକ୍ତିମାନଙ୍କ ପାଖରେ ଚାକିରୀ କରନ୍ତି ।

## (୧୬୯) ପାଞ୍ଚଟି ବଦଭ୍ୟାସ ମଣିଷର ସର୍ବନାଶ କରେ

(୧) ଭାଙ୍ଗ ତଥା ନିଶାଖିଆ (୨) ପଶା ଖେଳ (୩) ପାରା ଲଢ଼େଇ
(୪) ନ୍ୟାୟବଳ ଖେଳ (୫) ବେଶ୍ୟାସଙ୍ଗ

## (୧୭୦) ଗାଳି ଖାଇବା ଯୋଗ

(୧) କାଳି ନ ଶୁଝି, କାଳି ମାଗିଲେ ।
(୨) କାର୍ତ୍ତିକ ଓ ବୈଶାଖ ମାସରେ ବଳି ପଡ଼ିଲେ ।
(୩) ଫୁଟିଲା ଭାତ ନ ଗାଳି, ପିଲା ଗେଲ କରୁଥିଲେ ।
(୪) ଆଷାଢ଼ ଶ୍ରାବଣରେ କଦଳୀ ଗଛ ପୋତିଲେ ।
(୫) ଖଳ ଦୁଷ୍ଟ ଲୋକ ସହିତ ପଶା ଖେଳି ବସିଲେ ।
(୬) ପାଦ ପକଉ ପକଉ ପାଦ ଘୋଳି ହେଲେ ।
(୭) ବେଠିଆ ପାଳି ଦିନ କାମ ନ କଲେ ।
(୮) ଭଳିକି ଭଳି କୁକୁର ପୋଷିଲେ ।
(୯) ଶୂଦ୍ର ଲୋକ ବେକରେ ମାଳି ନଥିଲେ ।
(୧୦) ଜ୍ୱାଇଁଙ୍କ ପାଖକୁ ଶାଳୀ ଆସିଲେ ।

## (୧୭୧) କେତେବେଳେ କେଉଁମାନେ ଆଦର ପାଆନ୍ତି

(୧) ଶ୍ରୀପଞ୍ଚମୀରେ - ପୁଅ (୨) କୁମାର ପୂର୍ଣ୍ଣମୀରେ -ଝିଅ
(୩) ଫଗୁଣ ଦୋଳରେ - ନାଟୁଆ (୪) ଚୋରଧରା ବେଳେ -ଛାଟିଆ
(୫) ପୋଖରୀ ଖୋଳାରେ -ମାଟିଆ (୬) ପୁଷ ମାସରେ-ହାଟୁଆ
(୭) ନଈ ବଢ଼ିଲେ-ଘାଟିଆ (୮) ଆଦର ପାଆନ୍ତି-ଛୋଟିଆ
(୯) ଚଇତ ମାସରେ- ପାଟୁଆ (ଭକ୍ତ)

## (୧୭୨) ଏସବୁ କର୍ମ ବିପାକ ଯୋଗ

(୧) ଅଫିଟା କଦଳୀ ମଞ୍ଜା କାଟିବା ।
(୨) ଗୋଡ଼ ଲମ୍ବାଇ ଘାଟରେ ଖଡୁମାଜିବା ।
(୩) ଚାଟକୁ ବ୍ରହ୍ମ ଚାପଡ଼ା (ନିର୍ଘାତିଆ ପାହାର) ଦେବା ।
(୪) ସକାଳୁ ଉଠି ଘର ନ ଝାଟେଇବା ।
(୫) ଗୁରୁଜନମାନଙ୍କୁ ଆଣ୍ଠକରି କଥା କହିବା ।
(୬) ମହୁଲ ବିରି ଏକାଠି ବାଟିବା ।
(୭) ଭାଟ ଓ ପଣ୍ଡିତ ବ୍ୟକ୍ତିଙ୍କୁ ପୀଡ଼ା (କଷ୍ଟ) ଦେବା ।
(୮) ହାଟରେ ଦର ବୃଦ୍ଧି କରିବା ।
(୯) ପାଣି କଖାରୁ ପିଢାରେ ଫାଟିବା ।
(୧୦) ନୂଆ ବାହାହେଲା ଲୋକ ନାଟରେ ପଶିବା ।

## (୧୭୩) କାହାକୁ କେଉଁଟା ବଇରୀ

(୧) ସନ୍ନ୍ୟାସୀକୁ - ନିଜଘର (୨) ପାଠୁଆ ଚାଟକୁ - ବିବାହ
(୩) ଧାନକୁ - କାଳୀମୁଣ୍ଡି ପୋକ (୪) ରୋଗୀକୁ - ସେବନ (ଖାଇବା)
(୫) ଧନୀକୁ - ରାଜ କୋପଦୃଷ୍ଟି (୬) ବ୍ରହ୍ମଚାରୀକୁ - ଚୁମ୍ବନ
(୭) ଅଜୀର୍ଣ୍ଣକୁ - ଉପବାସ (୮) ଶ୍ୱାସ (ଧଇଁ)କୁ - ଚ୍ୟବନ ପ୍ରାସ
(୯) ଜ୍ଞାନୀ ଗୁଣୀଙ୍କୁ - ଖଳ ଦୁଷ୍ଟ ଲୋକ ।
(୧୦) ବାଳୁତ ପିଲାକୁ -ଖୁଦୁରିଖିଆ (ଏକ ପ୍ରକାର କୃମିରୋଗ)

## (୧୭୪) କେତେକ ନିଷିଦ୍ଧ କର୍ମ

(୧) ସଙ୍କରାନ୍ତି ଅମାବାସ୍ୟାରେ ସ୍ତ୍ରୀ ମାନଙ୍କର ମୁଣ୍ଡରେ ତେଲ ବ୍ୟବହାର ନିଷେଧ ।
(୨) ସୋମବାର ଓ ବୁଧବାର ଛଡ଼ା ଅନ୍ୟବାରରେ ଖିଅର ହେବା ନିଷେଧ ।
(୩) ପ୍ରୀତି ବେଭାରରେ ଜାତି ନାହିଁ ।
(୪) କାମଧନ୍ଦା ନ କରିଲେ ଲକ୍ଷ୍ମୀ ଛାଡ଼େ ।
(୫) ନିଜଠାରୁ ବୟସରେ ବଡ଼ ସ୍ତ୍ରୀ ସହିତ ରତି ବା ରମଣ କଲେ ଦେହର ଜ୍ୟୋତି ଚାଲିଯାଏ ।



# ବଚନ (ଦନେଇ) ପଦ ମାଳ

ଖଞ୍ଜା ଭିତରେ ସାପ କରଜ ବୁଡ଼ା ବାପ
ରକ୍ତ ମିଶା ଛାପ ବରଗୀଙ୍କର ଧାପ (ଆକ୍ରମଣ )
ପରଦାରା(ସ୍ତ୍ରୀ) ଯେ ପାପ
ବୋଲେ ଦନା ଆରେ ବାପ!

* * * *

ଦୁଃଖୀକୁ ଦାନ, ରଜାକୁ କର
ଭାଇଙ୍କୁ ଭାତ, ଶତ୍ରୁକୁ ଶର
ଦନାଇକୁ ପଦେ ବଚନ ମଧୁର

* * * *

ତସ୍କର ପରର ଦ୍ରବ୍ୟ ହରଣ
ପୁଅ ବୋହୂଠାରୁ ମାତା କଷଣ
ଗର୍ଭବତୀ ଯେବେ ହୁଏ କୁମାରୀ
ଠକେଇରେ ପଡ଼ିଗଲେ ବେପାରୀ
ବାସନ ଭାଙ୍ଗିଲେ ଘର ପୋଇଲି
କୁ ସଙ୍ଗରେ ହେଲେ ମେହ ବେମାରୀ
ଆକଣ୍ଠ ନ ହେଲେ ଦନାଇ କହି
କା ଆଗେ ପ୍ରକାଶ କରିବ ନାହିଁ ।

* * * *

ତୀର୍ଥସ୍ଥାନରେ ନାହିଁ ଧର୍ମଶାଳା
ଯୁବା ବୟସ ପାଶେ ନାହିଁ ବାଳା
ମୂଳିଆଣୀ ବେକରେ ଲମ୍ବ ମାଳା
ଢିପ ଜମିକୁ ନଥିଲେଟି ନଳା
ବଡ଼ ହାଟରେ ଯେବେ ନାହିଁ ଚାଳା
ବୋଲେ ଦନାଇ ଏସବୁ ଅକଳା (ଅକଡ଼ିଆ)

* * * *

ତଇଲା ଚାଷ ଅତଡ଼ା ବାସ
ଲାଙ୍ଗୁଡ଼ା ଦାସ ରକତ କାଶ
ଗଣିକା ହାସ
କହେ ଦନାଇ ନାହିଁ ବିଶୁଆସ ।

* * * *

ଡାକ ନ ଶୁଣଣୁ ଧରଇ ଠେଙ୍ଗା
କହେ ଦନାଇ ଏ କୁଳ ବାଲୁଙ୍ଗା ।

* * * *

ଢଙ୍କସର ପାଣି ଘାଣ୍ଟ ତିଅଣ
ମୋଟ ମୋଟ ଯେବେ ଛପର ଛଣ
ଖଣ୍ଡ ଖ୍ରୀରେ ବହକା ଲବଣ
ଅତି ତର ତର ଯେଉଁ ଯୋଗାଣ
ଆଣ୍ଟୁନ ଲୁଚଇ ଯେଉଁ ବେଢ଼ାଣ
କହଇ ଦନାଇ ନୁହେଁ କାରଣ ।

* * * *

କଥା କହୁଥିବା ଇଗି କୃଷିକୁ ଥିବଟି ସଙ୍ଗୀ
ରାତିରେ ନ ଉଠି ହଗି ପାଚିଲା ଖେତକୁ ଇଗି
କହେ ଦନାଇ ଚାହିଁ କରି ଚଳିବ
ନୋହିବ ଋଣୀ ବା ରୋଗୀ ।

* * * *

ଗୀତ ନାଶ ଯାଏ ବାଟରେ ପାଣି ନାଶ ଯାଏ ଫାଟରେ
ନାରୀ ନାଶ ଯାଏ ହାଟରେ କଥା ନାଶ ଯାଏ ଘାଟରେ
ବାଳ ନାଶ ଯାଏ ଜଟରେ ଧର୍ମ ନାଶ ଯାଏ ହଟରେ
ବନ୍ଧୁ ନାଶ ଯାଏ କୂଟରେ ଦନା ନାଶ ଯାଏ ତୁଟରେ ।
(ତୁଟିକରି କଥା କହିଲେ କଥକର ମହତ୍ୱ ନଷ୍ଟ ହୁଏ )

* * * *

ଯାଦୁଆ ପାଚକ ବାଦୁଆ ଭାଇ
କାଦୁଆ ଗଡ଼ିଆ ଭୋଦୁଆ ଗାଈ (ଭାଦ୍ରବ ମାସରେ ଜନ୍ମି ଥିବା ଗାଈ )
ଭେଦୁଆ ପଡ଼ିଶା ଛେଦୁଆ ଦାଈ (ମାରିବା ମନୋବୃତ୍ତିର ଧାଈ )
ବୋଲେ ଦନାଇ ଅଭାଗ୍ୟକୁ ପାଇ ।

* * * *

ଦାନୁଆ ବ୍ରାହ୍ମଣ, ଧାନୁଆ ଲଙ୍କା    କଥା କହେ ଯେ ମୁହଁ କରି ବଙ୍କା
ରାଗକୁ ଦନାଇ ମନରେ ଶଙ୍କା
ଝଡା ଆମ୍ବ ବା ବାଟ ବରକୋଳି    ନଦୀ ମଧେ ଭାସିଯିବା ପଟାଳି
(କାଠଗଡ଼ ବାଉଁଶ ଖଣ୍ଡ ଏକାଠି ବାନ୍ଧି ବଢି ସମୟରେ ନଈରେ ଭସାଇ ଦିଆଯାଏ ।
ଲୋକ ଦାୟିତ୍ୱରେ ଥାଏ ଫିଟିଗଲେ ସର୍ବନାଶ)
ମହାପ୍ରସାଦ ଦାତା ଦେବା ଦାନ
ସଦାବର୍ତ୍ତରେ ଯେବଣ ଭୋଜନ
କୋଠ ପୋଖରୀରେ ଯେ ମାଛ ଧରା
ଅଠାଖାଣ୍ଡିଆରେ ଚଢ଼େଇ ଧରା
ହାଟ ବାଟ ଲୁର  ଦନାଇ କହି ଯେତିକି ପାଇଲି ସେତିକି ସହି ।
(ଆନନ୍ଦ ଉତ୍ସବରେ ରାଜା ହାଟ ଲୁଟ୍ ଆଦେଶ ଦେଉଥିଲେ ଏବଂ ଦୋକାନୀ, ବେପାରୀ ସମସ୍ତ କ୍ଷତି ପୂରଣ କରୁଥିଲେ ।)

* * * *

ଚୁମ୍ବକ ପଥର ଟାଣଇ ଲୁହା    ଦୁଗ୍ଧରୁ ଲହୁଣୀ ଟାଣଇ ଖୁଆ ।
ପରନାରୀ କାନି ଟାଣେ ବେଧୁଆ    ନିର୍ଦ୍ଦୋଷ ଲୋକକୁ ଟାଣେ ମିଛୁଆ ।
ପଖାଳକୁ ଟାଣେ ବଡ଼ ଶୁଖୁଆ    ମାଆ ମନ ଟାଣେ କଅଁଳ ଛୁଆ ।
ଜୁଆଡ଼ିକୁ ଟାଣେ କପଟ ଜୁଆ    ଆଖିକୁ ଟାଣଇ ନାଗରୀ ନୂଆ ।
ମୂଳରୁ ରସକୁ  ଟାଣଇ ପୁଆ    ପେଟକୁ ଟାଣଇ ଡାଲି କାଠୁଆ ।
ଶୁଣ୍ଡିର ଭାଟି ଟାଣଇ ମଦୁଆ    ଦନାଇକୁ ଟାଣେ ଢମାଳି ଡୁହା ।

* * * *

ଚୋରା ବସନ୍ତ ଶୀତକୁ    ଅସତ୍ୟ କଥା ହିତକୁ
ତିନ୍ତୁଳି ଖିଆ ଗୀତକୁ    ଅଗୁଆଁ ଲୋକ ଚିତ୍ତକୁ
ପୋଟଳ ପତର ପିତକୁ    କପଟ ବଚନ ମିତକୁ
ଘଉଡ଼ାଇ ଦିଏ ଆସୁଛି ଦନାଇ ଚିତ୍ତକୁ ।

* * * *

କଦଳୀ ପତର ସଭାକୁ    ଚମ୍ପା ନାଗେଶ୍ୱର ଗଭାକୁ
ନିଜ ଚାଉଳ ଭାତକୁ    କଳା କେନ୍ଦୁ ବାଡ଼ି ହାତକୁ
କୋଚିଲା ଖାଇ ଯେ ବାତକୁ    ଖରାଦିନ ରାତି ଯାତକୁ
ସରସ ବୋଲିଲେ କହଇ ଦନାଇ    ପାଇ ଥାଏ ତାର ଚିତ୍ତକୁ ।

* * * *

କରମରେ ଥାଇ ଯାହାର ଦଶା    ସେ କିମ୍ପା କରଇ ପରକୁ ଆଶା ?
ପରସ୍ତିରୀ ଯେବେ ହରଇ ପୁସା    କହେ ଦନାଇ ଏ ପାପ ଦୁର୍ଦ୍ଦଶା ।

* * * *

କର୍ମହୀନ ଲୋକ ଦଇବ ନିନ୍ଦଇ    ଖାଆଣ ନିନ୍ଦଇ ରୋଗୀ,
କାଳୀ କୋଠରୀକୁ ରସିକ ନିନ୍ଦଇ    ଗହଳ ନିନ୍ଦଇ ଯୋଗୀ ।
ଗରଭ ନିନ୍ଦଇ କପଟି ରମଣୀ    ଜଞ୍ଜାଳ ନିନ୍ଦଇ ଭୋଗୀ,
ନାସ୍ତିକ ଲୋକକୁ ଦନାଇ ନିନ୍ଦଇ    ସଂସାର କଷଣ ଭୋଗୀ ।

* * * *

ଛାଡ଼ନ୍ତି ସରମ ପଡ଼ିଲେ କରମ    ଧରନ୍ତି ବିଛଣା ପଡ଼ିଲେ ଗରମ ।
ଛାଡ଼ନ୍ତି ଧରମ ପଡ଼ିଲେ କାଳ    ଧରନ୍ତି ଠେଙ୍ଗୁଣି ହଟିଲେ ବଳ,
ଛାଡ଼ିବ ଦନାଇ ମାୟା ମୋହ ସତେ ଧରିବ ସେ ନାମ ହୋଇ ବିକଳ ।

* * * *

ଖରୁଡ଼ି ପାଗରେ ଯେ ବୁଣେ ଧାନ    ସ୍ନେହୀ ଲୋକଠାରେ ଯେ କରେ ମାନ
ଲକ୍ଷ ରୋଜଗାରୀ ଚଢ଼ିଲେ ଯାନ    ଦାଣ୍ଡ ଅଢ଼ଙ୍ଗେ ବସି ଖାଏ ପାନ
କୁଣ୍ଡଳ ପିନ୍ଧି ଯେ ହଲାଏ କାନ    ବରଠାରୁ କନ୍ୟା ଦଶନ୍ଧି ସାନ
ବ୍ରାହ୍ମଣ ଯେବେ ହୁଏ ସତ୍ୟବାନ    ଅରଜନ କରି ଯେ କରେ ଦାନ
ବୋଲେ ଦନାଇ ବଡ଼ ସନମାନ ।

* * * *

ଖାଇ ପିଇ ଦରମା ନାହିଁ    ସେ ଯେଉଁ ନିଲଠା ଚାକେରା (ଚାକର)
ଗୁଡ଼ ଭାଗକୁ ଟଙ୍କ (ଆମ୍ବିଳ) ବହକା ସେ ଯେଉଁ ଦକ୍ଷିଣୀ ଶାକେରା ।
କଡ଼ାରେ ପକାଇ ଝଅଟ କାଢେ    ସେ ଯେଉଁ ମାଖେରା କାକେରା
(ଭଲ ଭାବରେ ଘିଅଁ ବା ତେଲ ଲାଗିଥିବା କାକେରା

ତେଲ ନ ଥାଇଣ ସାତ ସୁନ୍ଥାଣି    ସେ ଯେଉଁ ଥୋବରା ଛକେରା (ଛଇ ଛଟକ) ।
ସବୁବେଳେ ପର ଅନୁସରଣ    ଦନାଇ ବୋଲଇ ନାକେରା (ନିନ୍ଦନୀୟ) ।

* * * *

ଓଟକୁ ଚରା    ପଣ୍ଡାକୁ ଖରା
ଆମ୍ବକୁ କରା (କୁଆପଥର)    ବୁଢ଼ିକୁ ଥରା (ଥରା ରୋଗ)
ଛୋଟିକୁ ଗରା    ଦିନକୁ ତରା
ଶୁଆକୁ ଧରା
ବୋଲେ ଦନାଇ ଏ ଅତି ନାକରା ।

* * * *

ଓସାର ଘଳିଆ (ଯେଉଁ ବାଟରେ ପୋଖରୀ ପାଣି ଚାଲିଯାଏ) ବନ୍ଧକୁ
ଚିକିଟା ଗୁଡ଼ କନ୍ଦକୁ (ନବାତ)
କାଳିମୁଣ୍ଡୀ ପୋକ ଖନ୍ଦକୁ (ଫସଲ)    କୋହଳ ପଥର ନନ୍ଦକୁ (କୂଅନନ୍ଦ)
ଖାଲ ଢିପ ବାଟ ଅନ୍ଧକୁ
ବୋଲେ ଦନାଇ , ବାଆଁ ଆଖି ଡିଆଁ ପୁରୁଷର ସିନା ମନ୍ଦକୁ ।

* * * *

ଓଷା ଯାକରେ ଖୁଦୁରୁକୁଣୀ,
(ଭାଦ୍ରବ ମାସରେ କୁମାରୀମାନେ ଏ ଓଷା କରନ୍ତି,
ଏହାର ଅନ୍ୟନାମ ଭାଲୁକୁଣୀ ଓଷା)
ଯାତ ଯାକରେ ତ୍ରିବେଣୀ
(ପୁରୀ ଜିଲ୍ଲାର ବାଲିପାଟଣା ନିକଟବର୍ତ୍ତି, ପ୍ରାଚୀ ନଈ କୂଳରେ ମାଘ ମାସରେ ଏ
ଯାତ୍ରା ଅନୁଷ୍ଠିତ ହୁଏ )
ଧାନ ଯାକରେ ବଉଳା, (ଏକ ପ୍ରକାର ଉତ୍କୃଷ୍ଟ ଧାନ)
ବନ୍ଧୁ ଯାକରେ ମଉଳା । (ମାମୁଁ)
ଫୁଲ ଯାକରେ ବଉଳ,
ମାଛ ଯାକରେ ଶେଉଳ
ବିଲ ଯାକରେ ଯୋରୀ, (ଯୋଡ଼ ଜମି)
ବୋହୂ ଆଣିବ ଗୋରୀ ।

* * * *

ଦରଜୀ ସାଇତେ ଛୁଞ୍ଚି,
ବିଶୋଇ (ଖଜଣା ଆଦାୟକାରୀ) ସାଇତେ କୁଞ୍ଚି,
ପାଟରା ସାଇତେ ପାଞ୍ଚି, (ବ୍ରତ, ବିବାହରେ ବ୍ୟବହୃତ ହଳଦୀ ଲୁଗା )
ମାଛୁଆ ସାଇତେ ଖଞ୍ଚି, (ଖଇଞ୍ଚି ମାଛଧରିବା ପାଇଁ ନଡ଼ିଆ ଖଡ଼ିକାରେ ତିଆରି)
ଦନାଇ ପହଳି ସଞ୍ଚି ।

* * * *

ନାରୀ ମନ ଧନରେ ଚକୋର ମନ ଜହ୍ନରେ,
ବାଳୁତ ମନ ଥନରେ ନାଟୁଆ ମନ ଜନରେ, (ଦେଖଣାହାରୀ)
ଦନାଇ ମନ କଥା ରହିଯାଇ ଥାଏ ମନରେ ।

* * * *

ଦୋରୁଅ ଯେବେ ଖାଇ ବସିବ କୋହ୍ଲୁଆ ଶାଳକୁ (ଆଖୁଶାଳ )ଯାଇ
ପଢୁଆଁ ପୋଖତି ହେଲା ବେଳକୁ ପାଖରେ ରଖିବ ଧାଈ ।
ଘନ ଘନ ହୋଇ ହାଇ ଟିକିଏ ପଡ଼ିବ ଶୋଇ,
ଗାଆଁ ମଝିରେ ଘର କରିଥିବ ଦୁଇ ପାଖେ ଥିବ ସାହି ।
ଭାତ ଯଦି ସୁଆଦ ଲୋଡ଼ିବ କଞ୍ଚା ନଡ଼ାରେ ଯାଇ
(ନଡାକଞ୍ଚା ଥାଇ ଧାନ କାଟିଲେ ତାର ଚାଉଳ ସ୍ୱାଦ ଲାଗେ )
ଅନ୍ଧାର ରାତିରେ ବାଟ ଚାଲିବ ପଛକୁ ନଜର ଦେଇ,
ରାତିରେ ଅନିଦ୍ରା ହେବାକୁ ଥିଲେ ଅଧା ପେଟ କରି ଖାଇ ।
ଭଇଞ୍ଚ ମୁଚୁକୁନ୍ଦ ମରିଚ ଶିଝା ପିଇବ ଧଇଲେ ବାଇ,
(ଭଇଁଞ୍ଚ ମୂଳ, ମୁଚୁକୁନ୍ଦ ଫୁଲ , ଗୋଲ ମରିଚ ଶିଝା ପାଣି ପିଇଲେ ପାଗଳାମି ଭଲ ହୁଏ)
ରସିଆ କଥାକୁ ଶୁଣିବ ଯେବେ ଦନାଇ ପାଖକୁ ଯାଇ ।

* * * *

ଅଣଖୁଆ କାହିଁ ଆଖୁ ହୋଇବକି ବଣଭୂଆ ହେବ ବାଘ ?
କଣ ଭୁଆସୁଣୀ ସଭାରେ ବସିବ ଛଣ ଗୁଣ୍ଡି ହେବ ଶାଗ ?

* * * *

ତେଲୁଣୀର ଘରେ ନ ଜଳେ ଦୀପ ଚିରା ଲୁଗାରେ ଦରଜୀ ମାଇପ
ଭଉଟୁଣୀ ବେକେ ତୁଳସୀ ମାଳ ବ୍ରାହ୍ମଣୀ ନାରୀ ନା ଖାଏ ପଖାଳ

ଧୋବଣୀ କରଇ ବାର ବରତ  ଗୁଡ଼ିଆଣୀ ଘରେ ଟକଳା ସୁତ (ପୁଅ)
କୁମ୍ଭାରୁଣୀ ଧୋବ ପିନ୍ଧାକୁ ବାଇ  ଗଉଡୁଣୀକୁ ଗୋବର ଗନ୍ଧାଇ
କେଳୁଣୀ ଯେବେ କରେ ବ୍ୟଭିଚାର  ଘରଣୀ ନ ସାଇତଇ ଆଚାର
ଚାଷୁଣୀର ମନେ ନଥାଏ ଦକା  ବୋଲେ ଦନାଇ ଏ କୂଳକଳଙ୍କା

* * * *

ଥାନ ଦେଖି ବସିବ  ଥାନ ଦେଖି ହସିବ
ଥାନ ଦେଖି ଭାଷିବ  ଥାନ ଦେଖି ଲସିବ (ନଇଁବ)
ତେବେ ଦନାଇ ମନକୁ ଆସିବ ।

* * * *

ଅଳସ କରଇ କାଲୁଆ ବେଳେ  ଦରାଣ୍ଡି ହୁଅଇ ଦୁଇ ପ୍ରହରେ,
ପର ଦୋଷଯାକ ବାଛି ବସଇ  ଦେହକୁ ପଡ଼ିଲେ ସବୁ କରଇ,
ଦଇବ ସୁମରି ଆଉଁସେ ହିଆ  ବୋଲେ ଦନାଇ ଏ ଭୂତ ଗଣ୍ଡିଆ ।
(ଗଣ୍ଡିଟିଏ ବୋହି ଥାଏ କିଛି କାମର ନୁହେଁ )

* * * *

ଦେହ ଛଉ ଯେବେ ହୁଅଇ ଚକା  ବେକ ସଣ୍ଢାରେ ପଶେ ଯାର ରକା
ଆକଟ କାମରେ ନ ଥିଲେ ଦକା  ଶୀତ ରାତିରେ ଯେ ପରିସ୍ତ୍ରୀ ଢକା
ଛାପା ଶାଢ଼ୀ ଯେବେ ହୁଅଇ ଫକା (ଫିକା)  ଶୋଇଲା ଘରେ ନଥିଲେ ଝରକା
ପୋଷା ବିରାଡ଼ି ହୋଇଲେ ଛଉକା  ଦନାଇ ଛାତିରେ ପଶେ ଛନକା ।

## ଏ ମାନଙ୍କୁ ପରିତ୍ୟାଗ ଦୋଷ ନାହିଁ

ଦୋଚାରୁଣୀ ନାରୀ, ମଡକ ଦେଶ  ଘୋଟକ ଦେହରେ ନଥିଲେ କେଶ ।
ଯୁଦ୍ଧରୁ ପଛଘୁଞ୍ଚା ଦେବା ବୀର  ମୂରୁଖ ବ୍ରାହ୍ମଣ ହୀନ ଆଚାର ।
ନିଶାଖିଆ ବୈଦ୍ୟ, ଲୋଭୀ ବେପାରୀ ମହିଷ ମନ୍ଥନ ଯେଉଁ ପୋଖରୀ ।
ଭଗ୍ନ ଦେବମୂର୍ତ୍ତି, ପେଟୁ ଚାକର  ମିଛୁଆ ନାହାକ, କରଣ ଚୋର ।
ଏମାନଙ୍କୁ ଯେହୁ ତ୍ୟାଗ କରଇ  କହେ ଦନାଇ ଦୋଷ ଲାଗେ ନାହିଁ ।

## ଅକରଣୀୟ କାର୍ଯ୍ୟ

ଝାଳ ନମରୁ ଗାଧୋଇ ପଡ଼େ  ଯେହୁ ଦଳୁଆ ଯୋଡେ (ପୋଖରୀ)
କଇଁଥା ବଥ ମୁହଁକୁ ଯେ  ଶାଉଳି କଣ୍ଡାରେ ଫୋଡ଼େ ।

ସଂକ୍ରାନ୍ତିରେ ଯେଉଁ ଘରଣୀ ମାଛ ଶୁଖୁଆ ପୋଡ଼େ,
ବୋଲେ ଦନାଇ ଏହି ମାନଙ୍କୁ ନିଶ୍ଚେ ଦାଉଘାତ ପଡ଼େ ।

## କ'ଣ କଲେ କ'ଣ ବଢେ

ସିନିହ ବଢ଼ଇ କଲେ ଆଦର ଘିଅ ଖାଇଲେ ବଢ଼ଇ ଉଦର ।
ଅଭ୍ୟାସ କଲେ ବଢ଼ଇ କଦର ମାଉଁଶ ବଢ଼ଇ ହେଲେ ଗୋଦର ।
ଜ୍ଞାନ ବଢ଼ାଏ ମନ୍ତର (ମନ୍ତ୍ର)ବେଦର ଅଜ୍ଞାନ ବଢ଼ାଏ ନିଶା ମଦର ।
ମାନ ବଢ଼ାଏ ଯେ- ମାନୀ ସୋଦର ଦନାଇ ବଢ଼ାଇ ଢ଼ଗ ସୁନ୍ଦର ।

## ମଉଜିଆ ଜିନିଷ ପାଇଁ କ'ଣ ଲୋଡା

ଭାକୁଡ଼ ମୁଣ୍ଡ ବଡ଼ ମଉଜ ଜୀର୍ଣ୍ଣ କଲେ ହେଲା,
ବାବାଜୀ ଜୀବନ ବଡ଼ ମଉଜ ସଙ୍ଗେ ଥିଲେ ଚେଲା,
ପୁରଷ୍ତମ (ପୁରୀ)ରେ ବଡ଼ ମଉଜ ପଇସା ଥିଲେ ହେଲା !
ମଞ୍ଜି ବଡ଼ ମଉଜ ଦାନ୍ତ ଥିଲେ ହେଲା,
ପଖାଳ ଭାତ ଯେ ବଡ଼ ମଉଜ ପଡ଼ିଥିଲେ ଚହ୍ଲା,
ଦନାଇ ପହଲି ବଡ଼ ମଉଜ ଲୋକେ ଶୁଣିଲେ ହେଲା ।''

## କାହାକୁ କିଏ ସୁଖ ପାଏ

ଟାପରା ସୁଖ ଶାଳୀ, କହିଲେ ଯେବେ ସହେ ।
ସଉଦା ସୁଖ କାଳି, ନମାଗୁଣ୍ଡୁ ଯେବେ ଦିଏ ।
ଗାଧୁଆ ସୁଖ ସକାଳ, ଦେହରେ ଯେବେ ଯାଏ ।
ଖାଇବା ସୁଖ ପଖାଳ, ଭଜାଭଜି ଯେବେ ଥାଏ ।
ଦନାଇ ସୁଖ ପହଲି, ମନକୁ ଯେବେ ପାଏ ।

## ଏଗୁଡ଼ିକ ବଡ଼ କର୍କଶ

କହରା ଓଡ଼ କଙ୍କଡ଼ା ଗୋଡ଼ କୁକୁର ଯୋଡ଼
ପଠାଣ ଥୋଡ଼ ବରଗୀ ତୋଡ଼ କମ୍ବଳ ଘୋଡ଼
ପର୍ବତ ମୋଡ଼

## କିଏ କାହା ପାଇଁ ଉଦ୍ଦିଷ୍ଟ

ବୁଆର ପୁଅ ଘର ପାଇଁ, ଝୁଅ ଜନମ ପର ପାଇଁ,
ଆଷାଢ଼ ଚାଷ କର ପାଇଁ, ଦାଶମୂଳ ଯେ ଜର ପାଇଁ,
ଦନାଇ ପହଲି ଚର ପାଇଁ ।

## ଏଗୁଡିକ ଅମଣିଷ ପଣିଆ

ଦେବେ ନସମର୍ପି ଖାଏ ଯେ ଅନ୍ନ, ପର ନାରୀ ଦେଖି ହୁଏ ଯେ ଛନ୍ନ,
ପୁରାଣ ଶୁଣେ ନାହିଁ ମନ କର୍ଣ୍ଣ, ଚାଲି ଯାଉ ଯାଉ ଦିଶେ ଯେ ସ୍ତନ ।
ବିଧବା କୁଚ ଯେ କରେ ମର୍ଦ୍ଦନ, ପରକୁ ଠକି କରେ ଅର୍ଜନ,
ଦନାଇ କହଇ କରି ତର୍ଜନ, ସେ'କି ମଣିଷ ପଣକୁ ଭାଜନ ।

## ରଜା, ଅଜା,ଖଜା, ମଜାର ଲକ୍ଷଣ

ଧୀର ହୋଇଥିବ ବୀର ହୋଇଥିବ ତାକୁ ଯେ ବୋଲିବ ରଜା,
ନକଲ କହିବ ଅକଲ କହିବ ତାକୁ ଯେ କହିବ ଅଜା ।
ମିଠା ହୋଇଥିବ ସିଠା ବୋହୁଥିବ ତାକୁ ଯେ ବୋଲିବ ଖଜା ।
ଜନ ମୋହୁଥିବ କାନ ଶୋହୁଥିବ ଦନାଇ ପହଲି ମଜା

## କାହାକୁ କିଏ ଗନ୍ଧାନ୍ତି

ମୂରୁଖକୁ ପଣ୍ଡିତ, ମାଛିକୁ ଚନ୍ଦନ କୁକୁରକୁ ଅତର । ବେଶ୍ୟାକୁ ନନ୍ଦନ
ଯବନକୁ ତୁଳସୀ । ସନ୍ୟାସୀକୁ ବନ୍ଧନ ଗନ୍ଧାନ୍ତି ବୋଲି ଦନାଇ ବଚନ ।

## ସାମାଜିକ ଚଳନି ଜ୍ଞାନ ଅଭାବ

ସଂକ୍ରାନ୍ତି ଅମାବାସ୍ୟାରେ ଯେ ବାନ୍ଧଇ କେଶ
ସ୍ୱାମୀ ବିଦେଶ ବେଳରେ ଯେ ହୁଅଇ ବେଶ
ବୈତରଣୀ ଦାନ ପରେ ମନ୍ଦିରେ ପ୍ରବେଶ
ଝାଡ଼ିକରି ନ ପକାଏ ଯେ ଶୋଇଲା ହେଁସ
ପୁରାଣ ବୋଲଇ ଯେହୁ ନକରଣ୍ତୁ ଶେଷ
ଘର ଦେବତା ନ ପୂଜି ବୁଲେ ଦେଶ ଦେଶ
ଅତି ଆଗୁଆଁର ବୋଲି ଦନାଇର ଭାଷ ।

## ଅତି ରୁଚିକର

ସୁନ୍ଦରୀ ନାରୀକି ଚୋରା ଚାହାଣୀ, ଢେଙ୍କେ ମାଆଙ୍କର ରୂପ କାହାଣୀ ।
ଓଷା ବାସିଦିନ ଯେଉଁ ଖାଆଣି, ଷୋଳ ବରଷରେ ଯେଉଁ ପୁଆଣୀ ।
ଫଗୁଣ ଚଇତେ ଘରଛୁଆଣି ଲୁଣ ଟଭାରସ ଚୁଆ ଚୁଆଣି ।
ବାପ ଆଗେ ପୁଅ ହେଲେ ନୂଆଣି ଅତି ରୋଚକ ଦନାଇ ଗାଆଣି ।

## ସମ୍ମାନୀୟ ବୃଦ୍ଧ ବ୍ୟକ୍ତି

ଷାଠିଏ ବରଷେ ଯେ ଚାଲେ ତେଢେ କୁଆ କାଆ କଲେ ନଶୁଏ ଶେଯେ,
ଶେଯରୁ ଉଠି ହରିନାମ ଭଜେ ହରି ସୁମରି ଯେ ଶୁଅଇ ଶେଯେ ।
ଦନାଇ ଏହାଙ୍କୁ କରେ ଢେଙ୍କେ ।

## ବଦମାସ ପ୍ରକୃତିର ଲକ୍ଷଣ

ମାଡ଼ ମାରେ ଯେହୁ ନିଜ ନାରୀକୁ ଶଳା ବୋଲି କହେ ଆଜ୍ଞାକାରୀକୁ,
ଆସନ ନଦିଏ ବ୍ରହ୍ମଚାରୀଙ୍କୁ ମାନ୍ୟ ନ ଦିଏ ଯେହୁ ନାରୀଙ୍କୁ,
ମାଛ ଖୁଆଏ ତିଳକଧାରୀଙ୍କୁ ଆଖିଠାର ମାରେ ପର ନାରୀଙ୍କୁ,
ବୋଲେ ଦନାଇ ଛେଚ ଯାଙ୍କ ଟାଙ୍କୁ ।

## ସଦ୍‌ଗୁଣ ଲକ୍ଷଣ

ହବିଷ କରଇ ନିତି ପ୍ରତିରେ ହରିନାମ ଛାପା ଘେନେ ଛାତିରେ ।
ସ୍ନାହାନ କରେ ପିଛିଲା ରାତିରେ ସମସ୍ତଙ୍କୁ କଥା କହେ ପ୍ରୀତିରେ ।
ବସଇ ଯାଇ ସଜ୍ଜନ କତିରେ ରସଇ ସଦା ଯେ ନାମ ଗୀତରେ,
ଦନାଇ ବୋଲେ ନ ବୁଝ ନୀତିରେ ହାଡ଼ି ହେଉ ଗଣା ବଡ଼ ଜାତିରେ ।

## ଗୁଣ ହୀନତାର ଲକ୍ଷଣ

ମରମ ନବୁଝି ଶାସ୍ତ୍ର ପଢ଼ିବା ଧରମ ନଜାଣି ଚିତା କାଟିବା
ଋଣ ଯଦି ବଢ଼ିଯାଏ ବହୁତ ପର ଦାରା ଯେବେ କରଇ ସୃତ ।
ଜମି ବାଡ଼ି ବନ୍ଧା ଦିଏ ଯା ବାପ କହେ ଦନାଇ ବଢେ ମନସ୍ତାପ ।

## ଭୟଭ୍ରାନ୍ତି ଯୁକ୍ତ

ଗାଳୁଆ ଗଡ଼ିଆ ଭାହୁଆ ମିତ     ନାତୁଆ ପନିକି ମାତୁଆ ପୁତ
ପାଳୁଆ ଖାତକ ଝାଡୁଆ କ୍ଷେତ     ହାଡୁଆ ବଳଦ କାଳୁଆ ବିଛ
କହେ ଦନାଇ ଏ ଡ଼ରାନ୍ତି ଚିତ୍ତ ।

## ଅସାମାଜିକତାର ଲକ୍ଷଣ

ଘର ଘୁମର ଯେ ଗପେ ଦାଣ୍ଡରେ     ଯାତ୍ରା ଦେଖିଯାଏ ଘେନି ରାଣ୍ଡରେ
ମାଛ କଣ୍ଟା ଫିଙ୍ଗେ ଗୋରୁ ହାଣ୍ଡିରେ     ଅଭବ୍ୟ କଥା ଧରଇ ତୁଣ୍ଡରେ,
ମୁହଁ ଟାଣ କରେ ଦେଇ ଭଣ୍ଡରେ     ମିତ ବସଇ ଯେ ଠକ ଧେଣ୍ଡରେ
ଦନାଇ ଏହାକୁ ଗଣେ ଭାଣ୍ଡରେ ।

## ଅଲକ୍ଷଣ ଓ ଅଲକ୍ଷଣୀଙ୍କ ଲକ୍ଷଣ

ଅତି ଅଲକ୍ଷଣା ନିଲଠା କୁଣିଆ     ଦିନେ ଛଡ଼ା ଦିନେ ଆସେ
ଅତି ଅଲକ୍ଷଣୀ ବୁଢା ବରକୁ ଯେ     କର୍କଶ ବଚନ ଭାଷେ ।
ଅତି ଅଲକ୍ଷଣା ଖବିସା ବାଳକ     ବାପ ପାଖରେ ନ ପଶେ,
ଅତି ଅଲକ୍ଷଣା ବିରାଡ଼ି ନିଇତି     ଖଟ ତଳେ ହଗି ବସେ ।
ଅତି ଅଲକ୍ଷଣା ଚଗଲା ଦନାଇ     ହରି ପାଦକୁ ନ ଘୋଷେ ।

## ଯେଉଁଠାରେ ଦୟା ମାୟା ବିରଳ

ଘାତକର କି ଦୟା ଅଛି     ନା ବେଶ୍ୟାର କି ମାୟା ଅଛି,
ଭାଡୁଆଙ୍କର କି ଭାୟା ଅଛି     କି ବାବାଜୀର ଜାୟା ଅଛି,
ଦନାଇର କି ସାୟା ଅଛି ?

## ଏ ସବୁ ନୈରାଶ୍ୟ ଜନକ

ଅନ୍ତକୋଷିଆର ଉଠିଲେ କାଶ     ବିଦେଶୀକୁ ଯେବେ ନମିଳେ ବାସ
ବହୁ କୁଟୁମ୍ବୀର ନଥିଲେ ଚାଷ     ଦୁହାଁଳୀ ଗାଇ ନପାଇଲେ ଘାସ
ଚୁଲୀ କରି ଯେବେ ନକାଟେ ଧାସ     ଚୂନ ଟାଣ ନୋହି ଯେବଣ ନାସ,
ମୁହଁ ଗାରୁ ଗାରୁ ଯେବଣ ଭାଷ     ଶୀତ ଟାଣ ହେଲେ କାର୍ତ୍ତିକ ମାସ
ସତୀ ନାରୀକୁ ଯେ କରଇ ଆଶ     ବୋଲେ ଦନାଇ ଏ ବଡ଼ ନିରାଶ ।

## ଅପମାନ ସୂଚକ

ଆମ୍ବ ମଧ୍ୟରେ ରସୁଣିଆ ନାରୀ ମଧ୍ୟରେ ହସୁଣିଆ
ପାଇକ ମଧ୍ୟରେ ଖସୁଣିଆ ବୋଲେ ଦନାଇ ଏ ଧସୁଣିଆ ।

## ଏଗୁଡିକ ହାନିମାନିଆ

ଆଦର ନଥାଇ ଯେଉଁ ଭୋଜନ ନିଶ୍ଚିନ୍ତ ନହୋଇ ଯେଉଁ ଶୟନ,
ଗୃହିଣୀ ନଥାଇ ଯେଉଁ ଭବନ ଚିତ୍ତ ଥୟ ନାହିଁ ଯେଉଁ ଭଜନ
ବୋଲେ ଦନାଇ ଅତି ହାନିମାନ ।

## ଅଶୋଭନୀୟ ଆଚରଣ ବିଧି

ମାଡ଼ ଗୋଳେ ଯେହୁ ପଶେ ଆଗରେ ବିହନ ନ ବୁଣେ ଯେହୁ ପାଗରେ ।
ଶିବ ଦର୍ଶନ ନକରେ ଢାଗରେ ମାଳିଆଣୀ ଯେବେ ପୋଷେ ଛାଗରେ ।
ଗାରେଡ଼ି ନଜାଣି ଖେଳେ ନାଗରେ ସଙ୍ଗୀ ନଥାଇ ପଶଇ ଡଗରେ ।
ବଣ୍ଟାଇ ନଦିଏ ଭାଇ ଭାରେ । କଛା ନମାରେ ଯେ ନାରୀ ଢଙ୍ଗରେ ।
ସଭାରେ ମୂର୍ଖେ ବସିଲେ ଆଗରେ ଦେଖିଲେ ଦନାଇ କମ୍ପେ ରାଗରେ '' ।

## ଉନ୍ମତ୍ତ ପ୍ରାଣୀଙ୍କର ଲକ୍ଷଣ

ଉନ୍ମତ୍ତ ବୃଷଭ ଛାଡ଼େ ହେଣ୍ଟାଳ ଉନ୍ମତ୍ତ କୁକୁର ମୁତଇ ମାଳ
ଉନ୍ମତ୍ତ ମେଷ ଖୋଜଇ ବାଟ ଉନ୍ମତ୍ତ ମୟୂର କରଇ ନାଟ
ଉନ୍ମତ୍ତ ନାଗରୀ ଫୁଲାଏ ନାକ ଉନ୍ମତ୍ତ ଗାଭୀ ଛାଡ଼ଇ ଡାକ
ଉନ୍ମତ୍ତ ମର୍କଟୀ ହଲାଏ ମୁଣ୍ଡ ଉନ୍ମତ୍ତ ମାର୍ଜାରୀ ଯେ ଲଣ୍ଡ ଭଣ୍ଡ
ଉନ୍ମତ୍ତ ହସ୍ତୀଗୁଣ୍ଡୁ ବହେ ବାରି ଉନ୍ମତ୍ତ ପୁରୁଷ ହୁଅଇ ଘାରି
ଉନ୍ମତ୍ତ ଘୋଡାକୁ ଧରଇ ଜର ଉନ୍ମତ୍ତ ଛାଗଳ ଯେ ବଂବଂ କରେ
ଉନ୍ମତ୍ତ ବେଶ୍ୟା ଯେ ବଜାରେ ବୁଲେ ଉନ୍ମତ୍ତ ଗୟଳ ଗଡ଼ଇ ତଳେ,
ଉନ୍ମତ୍ତ ଦନାଇ ପଶଇ ଢଳେ ।

## କର୍ତ୍ତବ୍ୟହୀନ ଚରିତ୍ର

ଉପରୋଧିଆ ଶାଳୀ ଉପରୋଧିଆ ଛଗୁଆଳି
ଉପରୋଧିଆ କାଳି ଉପରୋଧିଆ ଗାଳି
ଉପରୋଧିଆ ଦେଲେ ପରକୁ ଥାଳି ବୋଲେ ଦନାଇ ଏ ହୁଅନ୍ତି ଭାଳି

## ଅକାମୀ ହେବାର କାରଣ

କିଳା ନଥାଇ ମଇ ବୟସ ନଥାଇ ସହୀ
ଲବଣ ନଥାଇ ଦହି ଓଖର ନଥାଇ ଛଇ
ପାଣି ନଥାଇ ନଇ ବୋଲେ ଦନାଇ କେଉଁ କାମକୁ ପାଇ ।

## ଗୃହସ୍ଥର କାମନା

ସୁନ୍ଦର ପୁଅ, ଝିଅ,ପକ୍‌କାଘର ଆଜ୍ଞାକାରୀ ନାରୀ, ଧନ ପ୍ରଚୁର
ନୀରୋଗ ଶରୀର, କାମିକା ଭୃତ୍ୟ ଅର୍ଥକାରୀ ବିଦ୍ୟା, ଅଖଳ ମିତ୍ର
କ୍ଷୀବତୀ ଧେନୁ, ବାଡି ବଗିଚା ହରି କଥାରେ ମନ ଥିବ ସଦା
ଗୃହସ୍ଥ ଇଛଇ ସଦା ଏମାନ ଦନାଇ ଇଛଇ ନାମ ସ୍ମରଣ ।

## ଏଗୁଡିକ ଖୁବ୍ ଭଲ

ଏକାଦଶୀରେ ଯେଉଁ ଉପବାସ ରଙ୍ଗ ରହସ୍ୟକୁ ଏକାନ୍ତ ବାସ
ସାଧୁ ଲୋକଙ୍କର ବରିବା ପାଶ ଏକଚକିଆ ହୋଇ ଯେଉଁ ଚାଷ
ଦୁହାଁଳୀ ଗାଈକୁ ଯେ ଦୁବଘାସ ବରଷା ହୋଇଲେ ବୈଶାଖ ମାସ
ନାଗରୀର ଓଠ କୋଣରେ ହାସ ଭଲ ବୋଲି କହେ ଦନାଇ ଦାସ ।

## କେଉଁ କ୍ଷେତ୍ରରେ ଅଧୀର ହେବ ନାହିଁ

ଅଧୀର ହୋଇ ନଖାଇବ ଭାତ ଅଧୀର ହୋଇ ନଚାଳିବ ହାତ
ଅଧୀର ହୋଇ ନମାରିବ କାତ ବୋଲେ ଦନାଇ ପଡ଼େ ଉତପାତ ।

## ଏଗୁଡିକ ବିଧି ସଙ୍ଗତ

ଓସ୍ତ ଗଛକୁ କେବେ ନକାଟ ଗୁରୁ ନିନ୍ଦା କେବେ ନକର ଚାଟ
ଏକଲା ହୋଇ ନଚାଲିବ ବାଟ ଗୋରୁ ପାଖେ ଗଲେ ଧରିବ ଛାଟ
ଦାନ୍ତ ନ ଘଷିବ ଗାଧୁଆ ଘାଟ ଗଡ଼ିଆ କୂଳରୁ ଆମ୍ୱଡ଼ା କାଟ
ବୋଲେ ଦନାଇ ଏ କଥା ନିରାଟ ।

## ବିଲକ୍ଷଣ ଆଚରଣ ବିଧି

ମଟାଳ ମାଟି ହୋଇଲେ କାଦୁଆ ମାଆ ପେଟ ଭାଇ ହେଲେ ବାଦୁଆ ।
ପ୍ରତାପୀ ନୃପତି ହେଲେ ମଦୁଆ ଧନୀ ପଡ଼ୋଶୀ ହୋଇଲେ ଛନ୍ଦୁଆ ।
ଶତ୍ରୁରେ ମିଶିଲେ ଘର ଭେଦୁଆ ବଡ଼ ପଣ ଯେବେ ପାଏ ବେଧୁଆ ।
ପୂଜାହାରୀ ଯେବେ ହୁଏ ଯାଦୁଆ କହେ ଦନାଇ ଏ ବଡ଼ ହଦୁଆ ।

* * * *

ବାଇଗରମିକୁ ଶୁଖିଲା ଭାତ କଫଶୁଆସରେ ଯେ ଖାଏ ଭାତ
କହେ ଦନାଇ ଏ କପାଳେ ହାତ ।

* * * *

ଚଲାଖୀ ନାରୀର କାଣିଆ କଛା (ଯେ ଦୂର ବାଟ ଚାଲେ)
ନାରୀ ହାତ କାଚ ନୋହିଲେ ଗଛା ( ସାନ ବଡ)
ବୋଲେ ଦନାଇ , ଅତି ନିକୁଛା ।

* * * *

ପୋଖତୀ ମେଣ୍ଢା ମାଉଁସ ଖାଇଲେ ଖାରା (ଖରାପ)
ଥୋଇଲୀ ମାଇପ ଆଖିଟା ଟେରା
ବୁଢୀ ମାହାରୀର ଯେ ଆଖି ଠରା
ବୋଲେ ଦନାଇ ଏ ଅତି ନାକରା ।

* * * *

ଟେରୀର ଆଖିରେ କଳା ଗୋଦରୀ ଗୋଡରେ ବଳା
ଥୋଇଲୀ ମଇପ ହତରେ ଟଙ୍କା ବୃଦ୍ଧାନାରୀ ଗଣ୍ଡସ୍ଥଳରେ ବୋକ (ଚୁମ୍ବନ)
କୋହ୍ଲନାରୀ ସଙ୍ଗେ ପ୍ରୀତିବେଉସା ବୋଲେ ଦାନଇ ଏ କର୍ମ ଦୁର୍ଦ୍ଦଶା ।

* * * *

ବିଟ ଦେଖିଲେ ନବ କଉତୁକୀ ନବ ବିବାହୀ ଦେଖିଲେ ରାତିକି
ପୁଆତୀ ଖାଇଲେ ପଣସ, ଶୁଖୁଆ, ତାଳଜାଣିବ ପିଲାର ପୁରିଲା କାଳ ।
ଟେରୀ ଯେବେ ହାଣେ ବାଙ୍କ ଚାହାଣୀ ବୋଲେ ଦନାଇ ଏ ନିର୍ଲ୍ଲଜ ପ୍ରାଣୀ

* * * *

ପିଲାଙ୍କ  କଳିକି କଳିରେ ଲେଖା          ଅନ୍ତୁଡ଼ି ପୁଅକି ପୁଅରେ ଲେଖା ?
ମାଇପଙ୍କ  ବଳ ପୁଅ ଗେରସ୍ତରେ (ସ୍ୱାମୀ) ସ୍ତ୍ରୀ ପରଖିବ ଯେ ଛାତିରେ ।

* * * *

ଅଖିଆ ବାବାଜୀ ଭଜନ ଟାଣ ,
ଅଖିଆ ଗଉଡ କଣ୍ଟା ପଠାଣ (ହିତାହିତ ଜ୍ଞାନ ଶୂନ୍ୟ)
ଅଖିଆ ଶାଗୁଣା  ଉଡଇ  ଉଞ୍ଚ          ଅଖିଆ  ମାହାନ୍ତି କରଇ ପାଞ୍ଚ
ଅଖିଆ  ଦନାଇ  କଥା ପ୍ରପଞ୍ଚ

* * * *

ଅସତୀ ନିନ୍ଦଇ ପତି, ନାସ୍ତିକ ନିନ୍ଦଇ ଯତୀ
ସ୍ଥବିର ନିନ୍ଦଇ ରତି, ଲମ୍ପଟ ନିନ୍ଦଇ  ସତୀ
ଦନାଇ  ନିନ୍ଦଇ ଗୁଆଁର ମତି ।

* * * *

ଆମିଷ ଖାଏ  ବେକେ ବାନ୍ଧି କଣ୍ଠି     ଅହିଅ ନାରୀ ମୁଣ୍ଡେ ନାହିଁ ଗଣ୍ଠି ।
ବେପାର କରେ ହାତେ ନାହିଁ ପାଣ୍ଠି     ଚଷାପୁଅ ଯେବେ ନ ଧରେ କଣ୍ଟି
ଦେବ ପୂଜାରେ ନ ବଜାଏ  ଘଣ୍ଟି     ଘରେ  ଧନ ଥାଇ ପତାଏ ଅଣ୍ଟି
ବୋଲେ ଦନାଇ ଚିପ ଯାଙ୍କ ତଣ୍ଟି ।

* * * *

ଓଦା  ପିନ୍ଧେ ଯାର ଯାଦୁଆ କଟି     ଠକି ଖାଏ  ଯେହୁ ଧନ୍ଦା ନ ଖଟି
ହାତେ  ପାଣି  ପିଏ  ଥାଇଣ ଘଟି     ସଞ୍ଜରେ  ବାଟୋଇ ନ ଧରେ  ଚଟି
ଗୁରୁଜନଙ୍କୁ ଯେ ମାରଇ  ପଟି     ନାରୀଙ୍କ  ନାମେ ଯେ କରଇ  ଛଟି
କାମବେଳକୁ ପଛେ ରହେ ହଟି     ଚକ୍ର ଛେଉଣ୍ଡା ଏ ଦନାଇ  ରଟି ।

* * * *

କଳି ଯେବେ କରିବସିବ ସାଙ୍ଗରେ ଥିବ ଭାଇ
ଦୁଧ ଯଦି ଖାଇ ବସିବ  ଘରେ ଥିବ ଗାଈ
ମୁଜା ଯଦିଖାଇ ବସିବ ବାହାରି ନଥିବ ସାଇଁ
ଢମାଳି  ଯେବେ ଶୁଣି ବସିବ ଦନାଇ  ପାଖକୁ ଯାଇ

* * * *

କାଖ ବାଲୁଆ ଚାଟ, ନାକ ବାଲୁଆ ଓଟ    ପାଖ ପଡିଶା ବନ୍ଧୁ, ଦଉଡ଼ି ଛିଣ୍ଡା ନଟୁ
ବୋଲେ ଦନାଇ ବୋଲ  ମାନନ୍ତି ନାହିଁ ହୁଅନ୍ତି  ଅଖଟୁ ।

* * * *

କାଣୀ  ଦାରୀର ଠାଣୀ    ନିତି ଭିକାରୀର  ଆଣି (ଗର୍ବ)
ବଦ୍ଧଗଡିଆର ପାଣି    ନିଲଠା ଲୋକର ବାଣୀ
ଅରକ୍ଷିତର ମାଣି    କହେ ଦନାଇ ମରମ ଦିଅଇ ହାଣି

* * * *

କୁଆଛୁଆ କି ପାଳି ?    ଅଚିହ୍ନାକୁ କି କାଳି ?
ନାସ୍ତିକକୁ କି ମାଳି ?    ରାତି ଅଧରେ କି  ତାଳି ? (ତାଳିମାରିବା ନିଷେଧ)
ଓସ୍ତ କାଠ କି ଜାଳି ?    ହଗା ମୂତା କି ଟାଳି ?
କହେ ଦନାଇ (ଏପରି କଲେ ) ପଛେ ହେବ ଭାଳି ।

* * * *

କୁକୁର ଚଟା ହେଲେ ନିଶାଖୋର    ବିଧବା ଯେବେ କରେ ବ୍ୟଭିଚାର
(ନିଶାଖାଇ ଅଜ୍ଞାନ ହୋଇ ହଗିମୂତି  ପଡିଲେ କୁକୁର  ଆସି ଚାଟନ୍ତି )
ପଣ୍ଡିତ  ଅଗମ୍ୟେ କରେ ଗମନ    ଚୋରି କରେ ଯେ ଗୁରୁଙ୍କ ଧନ
ସର୍ବଦା ଯା କୁଚୁ (ସ୍ତନରୁ ) ଖସେ ବସନ  ଧୋବା ତୁଠରେ ଯେ କରେ ସ୍ନାହାନ
ନ ଶୁଝାଇ  ଯେହୁ ଆଣି ଉଧାର    ବୋଲେ ଦନାଇ ଏ ଅତି ତାଛାର (କୁତ୍ସିତ)

* * * *

କୁଟୁମ୍ବ, ବ୍ରାହ୍ମଣ, ସାଆନ୍ତ , ସାପ,    ଶତ୍ରୁ, ବାଘ, ରୋଗ, ଦେବତା, ବାପ,
କହେ ଦନାଇ  ଶୁଣିଥାରେ  ଭାଇ    ଏମାନଙ୍କୁ ସାନ ବିଚାର ନାହିଁ ।

* * * *

କୁଳାଟା କାଟିଲେ ଚାରି -ଦଉଡ଼ି    ରୋଗ ସଙ୍କଟରେ ନାହିଁ କଉଡ଼ି
ପାହାନ୍ତିଆକୁ ଉଠିଲେ ହେଉଡି    ନିର୍ଦ୍ଦୋଷୀ ନାରୀକୁ ଦେଲେ ଘଉଡ଼ି
ପୋଷିଲା ପୁଅ ନ ଆସେ ବାହୁଡ଼ି    କୁଳବଧୂ ଯେବେ ଦିଏ ଦଉଡ଼ି
ମୁହଁ-ସଞ୍ଜରେ ଯେ ନାରୀ ପହୁଡ଼ି    ଦେଖି ଦନାଇ ଜ୍ଞାନ ଯାଏ ଉଡ଼ି  ।

* * * *

କ୍ଷେତକୁ କପା ସୁନ୍ଦର    ଘରକୁ ଅପା ସୁନ୍ଦର,
ଭଡ୍ଡକୁ ଛାପା ସୁନ୍ଦର    କାନ୍ଥକୁ ଲିପା ସୁନ୍ଦର
ବୁଢାକୁ  ଜପା (ଜପ କରିବା )ସୁନ୍ଦର  ଦନାକୁ ଗପା(ଗପ କରିବା)ସୁନ୍ଦର

* * * *

ଖୁଣ୍ଟି ଉଠାହୋଇ ଯେଉଁ ଖୁଅର	ଖଣ୍ଡୀ ଗଣିଆ ଯେବଣ ଦିଅର
ପାଣି ନଳା ନାହିଁ ଯେଉଁ ଦୁଆର	କାନ୍ଥ ନ ଥାଇଣ ଯେଉଁ ଗୁହାଳ
ବୋଲେ ଦନାଇ ଏସବୁ ଖୁଆଳ (ମନ୍ଦ)

* * * *

ଗଞ୍ଜେଇ ଟଣାକୁ କିଆ କାହାଳି	କାଲ ଖନା ଓଝା ଯେଉଁ ଚାହାଳି
(ଚିକ୍‌ଣ ପତ୍ର ଖସି ପଡ଼ି ଫିଟା ଯାଏ )
ନାତୁଆ ଗାଈକୁ ଯେଉଁ ଦୁହାଁଳୀ	ଶୀତ ରାତିରେ ପାଖଳ ଖୁଆଳି
ବିଦା ବଛା ନାହିଁ ଯେହୁ ବିଆଳି	ମାନ୍ୟ ନାରୀଙ୍କୁ  ଯେ ବୋଲେ ଗିହାଳୀ
ହଳ ହଡ଼ା ନାହିଁ ଯେହୁ ଭାଗୁଆଳି	ଓଦା କାଠରେ ଚୁଲୀ ଲାଗୁଆଳି
ବୋଲେ ଦନାଇ ସବୁ ଭାଙ୍ଗୁଆଳୀ ।

* * * *

ଘୋର ବରଷା ସକାଳ	ଘରଣୀ ବାଢ଼ଇ ପଖାଳ
ଗୋରୁ ମୁହାଁ ଜଞ୍ଜାଳ	ମୂଲିଆଙ୍କର କଟାଳ
ଗହିର ବିଲ ମଟାଳ	ଗୋରୁ ନ ଛାଡ଼ନ୍ତି ଗୁହାଳ
ଡାଉଁଶ ମାଛି ବିଟାଳ	ବୋଲେ ଦନା ଧିକ ଚଷାର କପାଳ ।

* * * *

ଟହ ଟହ ଚିକ୍‌ଣ ଗୋରୀ କଳା ଶାଢ଼ୀ ପିନ୍ଧି କରି
ବିଡ଼ିଆ (ପାନ) ଖାଇଣ ଦାଣ୍ଡେ ଚାଲିଯାଏ କାଖେ ପୂର୍ଣ୍ଣ-କୁମ୍ଭ ଧରି ।
ଛଇଳ ହୁଅନ୍ତି ଘାରି ଦନା ଯାଏ ଅପସରି
ପର ପଦାର୍ଥରେ ଆଶା ବଳାଇଲେ ଜୀବ ଥାଉ ଥାଉ ମରି ।

* * * *

ଚାଳକୁ ସମ୍ଭାଳେ ଶେଣୀ	ବାଳକୁ ସମ୍ଭାଳେ ବେଣୀ
ଧାନକୁ ସମ୍ଭାଳେ ଖଣି	ଭରଣି ସମ୍ଭାଳେ ଟାଣି (ଲୁଗାବୁଣା ସୂତା)
ଡାହାଣୀ ସମ୍ଭାଳେ ଗୁଣି	ଦନାକୁ ସମ୍ଭାଳେ ଗୁଣୀ (ଗୁଣୀ ଲୋକ )

* * * *

ଚେକାପାରି ଯେ ନାରୀ ଖାଇବସେ   ବଡ଼ପାଟି କରି ଦାଣ୍ଡରେ ହସେ
ତେଲ ନ ଢାଳୁଣୁ ଆଇଁଷ କଷେ   ପହରେ ବସି ତୁଠେ ଗୋଡ଼ ଘଷେ
ମୁଣ୍ଡ ପୋତି ନଖେ ମହୀକୁ ପଶେ   ଉଲଗ୍ନ ହୋଇ ଜଳ ମଧ୍ୟେ ଚଷେ
ଅତି ଅଲକ୍ଷଣୀ ଦନାଇ ଭାଷେ

*   *   *   *

ଛନନୀର କୋପ, ବାଳକ କ୍ରୋଧ   ମାଇପର ମାନ, କୁକୁର ନିଦ,
ପୁଆତୀର କୁଚ (ସ୍ତନ), ବାଟୋଇ ସ୍ନେହ,   ପାଷାଣ୍ଡର ଭକ୍ତି, ପିଲା କଳହ,
ଚଟିଆ (ଚଢ଼େଇ) ରମଣ, ନାଟୁଆ ଲୀଳା, ଭୋଦୁଆ ମାସର ବଉଦ ଭେଳା ,
ଦନାଇ ରଟି , କ୍ଷଣକରେ ଯାଏ ଫସର ଫାଟି ।

*   *   *   *

ଛନ୍ନ କଳା ମାତା ହାତ (ରନ୍ଧା) ସୁଆଦ   ଶୀତ ଦିନରେ ତାତ ସୁଆଦ
ଖରା ଦିନରେ ବାତ ସୁଆଦ   ଟୋକୀ ମେଳରେ ଯାତ ସୁଆଦ
ଦୁଧ କ୍ଷରୁଥିଲେ ନାତ ସୁଆଦ   ବଳ ଥିଲେ ସିନା ମାତ (ମାଇକିନିଆ) ସୁଆଦ
ଦନାଇକୁ ପୋଲା (ମାଗଣା) ଭାତ ସୁଆଦ ।

*   *   *   *

ଟେରୀର ବେକରେ ପଶିଲେ ରକା   କାଣୀ ମାଛ ବଛା ପୁସି ଛଉକା
କାଲୁଣୀ ବୋହୂକୁ ଶାଶୁର ବୋକା   ପଛରୁ ଛୋଟିକୁ ମାଇଲେ ଧକା
ଅନ୍ଧୁଣୀ ଚାଲଇ ହୋଇ ନିଶଙ୍କା   ପିନ୍ସନାକୀ ଯେ ଆଇଁଷ ରଙ୍କା
ରାନ୍ଧୁଣୀର ଯେବେ ନଥାଏ ଶଙ୍କା   କେମ୍ପୀର କୁଲାରେ ପାଉଁଶ ପକା
ଗୋଦରୀ ନାରୀ ବାଟେ ହେଲ ଥକା   ଖନାର ଜିଭରେ ଉଠିଲା ଚକା
ପାକେଇ ଯଦି ଖାଇବସେ ମକା   ଘରଣୀ ଯେବେ ହୁଅଇ ନିଦକା
ନୂଆବୋହୂ ଯେବେ ହୁଅଇ ସକା(କାନ୍ଦୁରୀ)   ଦନାଇ ଛାତିରେ ପଶେ ଛନକା ।

*   *   *   *

ଭଇଁଚ (ମୂଳ) ମୁଚୁକୁନ୍ଦ (ଫୁଲ) ମରିଚ ସିଝା ପିଇବ,   ଧଇଲେ ବାଇ
ରସିଆ କଥା ଶୁଣିବ ଯେବେ,   ଦନାଇ ପାଖକୁ ଯାଇ ।

*   *   *   *

ଧର୍ମରେ ପୃଥ୍ୱୀ ହୁଏ ଆତଯାତ ଧର୍ମରେ ସିନ୍ଧୁରେ ଚାଲେ ବୋଇତ
ଧର୍ମରେ ସମୁଦ୍ର ନ ଲଙ୍ଘେ କୂଳ ଧର୍ମରେ ଇନ୍ଦ୍ର ବରଷନ୍ତି ଜଳ ।
ଧର୍ମରୁ ରାମ ଚନ୍ଦ୍ର ଲଙ୍କା କଲେ ଜୟେ ଅଧର୍ମରୁ ରାବଣ ବଂଶ ହେଲା କ୍ଷୟେ ।

* * * *

ନନ୍ଦ ବାନ୍ଧେ କୂଅ କୂଳ ବାନ୍ଧେ ପୁଅ
କାମଡ଼ା ବାନ୍ଧେ ରୁଅ ପରକୁ ବାନ୍ଧେ ଝୁଅ
ଅଫିମ ବାନ୍ଧେ ଗୁହ ଚତୁରଙ୍ଗ ବାନ୍ଧେ ବୁଅ (ସୈନ୍ୟ ବିନ୍ଥ)
ଦନାଇ ବାନ୍ଧେ ଦୁଅ । (ପହଳୀ )

* * * *

ପଡ଼ିଶା, ବେଶ୍ୟା , ଗହକି (ସାହୁ), କନିଆ ମାଆ
ରଜା, ଭାଇ ବୋହୂ, ଧନ ଲୋଭୀ, କଣା, ଧରମ ଭାଇ
ୟାଙ୍କ ସ୍ନେହ ସଦା ରହଇ ନାହିଁ ।

* * * *

ପାଟରା ପାଖେ ଖୋଜଇ ପେଟରା ତମ ପାଖରେ ଖୋଜଇ କଟାରା
ଏକା ପଦାର୍ଥ ଦଶ ମୂଲ କରେ ଦଶଥର ହୋଇ ହାଟରେ ବୁଲେ,
ତନ୍ତୀ ପାଖରେ ଖୋଜେ ପାଟଫୁଲୀ ବୋଲେ ଦନାଇ ଏ ବଜାର ବୁଲୀ ।

* * * *

ଫୋଟକାକୁ ଫୋଡ଼ିବ ନାହିଁ ଘୋଟକକୁ ତଡ଼ିବ ନାହିଁ
ଚଟକକୁ (ଘରଚଟିଆ) ମାରିବ ନାହିଁ ଘଟକକୁ ଚିଡ଼ିବ ନାହିଁ
ଦନାଇକ ବିଡ଼ିବ ନାହିଁ

* * * *

ବଳଦ ପରଖ ବାଲି ବନ୍ଧୁ ପରଖ ଦୁଃଖ ପଡ଼ିଲେ
ସଉଦା ପରଖ କାଲି ନଢୀ ପରଖ ଗୁଳି
ମାଇପ ପରଖ ଧନ ସଇଲେ ଦନାଇ ମନରେ ଭାଳି

* * * *

ପର ଉପକାରରେ ଲାଗିଲେ ଧନ ତାକୁ ଯେ ବୋଲିବ ବିତ୍ତ,
ବିପଦ ବେଳେ ଯେ ଆଗରେ ଥାଏ ତାକୁ ଯେ ବୋଲିବ ମିତ ।

ପାପ କଥାକୁ ଯେ ପଛାଇ ଯାଏ ତାକୁ ଯେ ବୋଲିବ ଚିତ୍ତ,
ଯେତେ ଘୋଡ଼ି ହେଲେ ଆହୁରି ଆଶା ତାକୁ ଯେ ବୋଲିବ ଶୀତ ।
କଅଁଳ କଥାରେ ଆକଟି କହିଲେ, ଦନାଇ ବୋଲଇ ହିତ ।

* * * *

ବୁଢ଼ାକୁ ଖଡ଼ା , ବାଟକୁ ବୁଢ଼ା କେମ୍ପାକୁ ଧଡ଼ା, ଛୋଟୀକୁ ଘଡ଼ା
ମୁଣ୍ଡକୁ ଜଡ଼ା (ତେଲ),ଶଗଡ଼କୁ ଗଡ଼ା, ଗୋଠକୁ ଛଡ଼ା, ଡଙ୍ଗାକୁ ଚଡ଼ା (ନଈର),
ଜରକୁ ଝାଡ଼ା, ହଡ଼ାକୁ ମଡ଼ା, ବୋଲେ ଦନାଇ ଏ ବଡ଼ ବିଗିଡ଼ା ।

* * * *

ମନ ଫାଟିଲେ କି ଯୋଡ଼ି ହୁଏ ଭୂଇଁ ଫାଟିଲେ କି କୋଡ଼ି ହୁଏ
ମାଟି ଶୁଖିଲେ କି ଗୋଡି ହୁଏ ମାଇର ଗଧ କି ଘୋଡ଼ି ହୁଏ ।
ମାଖନାର କି ଥୋଡ଼ି ହୁଏ (ନିଶଦାଢ଼ି) ଦନାଇର କି ବୋଡ଼ି ହୁଏ ।(ପଇସା)

* * * *

## ସୁଆଦିଆ ଖାଇବାକୁ

ପୁରୁଣା ସାରୁକୁ କଅଁଳ ଶିମ୍ବ ଚଇତ ମାସରେ କଅଁଳ ନିମ୍ବ ।
ଖୁରୁଡ଼ ନଡ଼ିଆ ଖଇକି ପଖାଳ ଭାତ ଦହିକି ।
କାଗଜି ପତର ଅଇକି (ବାନ୍ତି) ଚୁଙ୍ଗୁଡ଼ି ଶୁଖୁଆ ପୋଇକି ।
ବିରିଡାଲିକୁ ହେଙ୍ଗୁ ପରଜା, ବୁଟ ଡାଲିକୁ ଘିଅ,
ହରଡ଼ ଡାଲିରେ ଗୁଡ଼ ଆମ୍ବିଳ, ବରଷା ରାତିରେ ଡାଲି କୋଳଥ ।
ଶେଉଳ ମାଛକୁ ଠାକରା ଆମ୍ବ, ଚୁଙ୍ଗୁଡ଼ି ମାଛକୁ ଠାକରା ଆମ୍ବୁଲ,
ମାଗୁର ମାଛରେ ସଜ ବସାଦହି, ତୋଡ଼ିମାଛକୁ କାଞ୍ଜି ପାଣି ।
ଭାକୁଡ ମୁଣ୍ଡ ବଡ଼ ମଉଜ ମଞ୍ଜି ବଡ଼ି ବଡ଼ ମଉଜ
ପଖାଳ ଭାତରେ ପଡ଼ିଲେ ଚହ୍ଲା ବଡ ମଉଜ
ପାଖାଳକୁ ବଡ଼ ଶୁଖୁଆ ଓ ଭଜାଭଜି,
ବଡ଼ି ବାଇଗଣ ବେସର ପାଣି, ଦନାଇ ମନକୁ ନିଅଇ ଟାଣି,

* * * *

ମୁହଁ ଭଙ୍ଗା କୁଳା, ଦକ୍ଷିଣ ମୁହାଁ ଚୂଲା ନଡ଼ିଆ କାନ୍ଦି ଝୁଲା
(କାନ୍ଦି ବାହୁଙ୍ଗା ଉପରେ ନ ରହି ତଳକୁ ଝୁଲି ପଡ଼ିଲେ ଖରାପ ହୋଇଯାଏ)
କଣ୍ଡା ବାଉଁଶ ତୁଛା (କାଟିବା) ବୋଲେ ଦନାଇ ଏସବୁ ଅଭିଲା ।

* * * *

ଯେ ନାରୀ ହସେ ହୋଇ କିରି କିରି ପିଲାଙ୍କୁ ନିଶା କରେ ଯେ ବିକିରି
ସୁଙ୍ଘଇ ସଦା ହାତ ମଳିକରି ଷଣ୍ଢଙ୍କୁ ଦେଖି ବୋଲେ ଗିରି ଗିରି
(ଲଢ଼ିବା ପାଇଁ ପ୍ରବର୍ତ୍ତାଇବା)
ହାଣ୍ଡିଖିଆ ଯେବେ ହୁଏ ପୂଜାରୀ ମାହାରୀ ଘରେ ଯେ କରେ ଚାକିରୀ
ଦେଖିଲେ ଦନାଇ ହୁଏ ବିଦାରୀ ।

* * * *

ରମଣ ନ ପାଇଲେ ନବ ନାରୀ ମିଠେଇ ଦୋକାନ ଦେଖେ ଭିକାରୀ
ଭୋକ ବିକଳିଆ ହେଲେ ବେଗାରି ଚିତ୍ତ ଅଥୟ ଯେଉଁ ବ୍ରହ୍ମଚାରୀ
(ବିବାହ ପ୍ରଭୃତି ଉତ୍ସବରେ ଆସିଥିବା ବାଜାବାଲା ଇତ୍ୟାଦି)
ଦିନରାତି ଖଟେ ଯେ ଆଜ୍ଞାକାରୀ ସାଧ୍ୟକରି ନ ପାରିଲେ ଭଗାରି
ମାଲ ନ କଟିଲେ ହାଟ ବେପାରୀ ବୋଲେ ଦନାଇ ଏ ହୁଅନ୍ତି ଘାରି ।

* * * *

ପିତା ତିଅଣ, ଝିଅ ମରଣ ସାହୁ ନ ଦେଲେ ରଣ
ଆଗେ ଦୁଃଖ ପଛେ ସୁଖ ।

* * * *

ଅଳପ ବୟସୀ ବାଈ (ବେଶ୍ୟା)
ବଢ଼ିଲା (ହେତୁପାଇବା) ଶାଳୀର ଟାହି । (ଥଟା)
ନୂଆ ମାଇପ (ସ୍ତ୍ରୀ)ର ଛଇ,
ନାରୀଙ୍କ ଚାଲି ହୋଇଲେ ଥିରି ।
ସରସ ବୋଲି ଦନାଇ କହି ।

* * * *

ପୁଅ, କୁଅ,ଧନୁ ଗୁଣ ନଥିଲେ ପୋଛ ମନୁ ।
(କୂଅ ପାଇଁ ଗୁଣମାନେ ଦଉଡି ଓ ଧନୁ ପାଇଁ ଗୁଣମାନେ ଦଉଡି)

* * * *

ପୁଆତୀ (ଗର୍ଭବତୀ ସ୍ତ୍ରୀ) ଖାଇଲେ ପଣସ, ଶୁଖୁଆ, ତାଳ
ଜାଣିବ ପିଲାର ପୂରିଲା କାଳ (ମୃତ୍ୟୁ ହେବ)

* * * *

ଶାଶୁ କହେ ବୋହୂଲୋ ଭଲ କରି ଗୋଡ ଘଷ,
ଘଇତା ତେଣେ ଆଖିଠାର ମାରେ ଚଞ୍ଚଳ ଶୋଇବ ଆସ
ରାଣ୍ଡ ନଣନ୍ଦ ଶିରୀ ନ ଦେଖଇ ମାରୁ ଥାଏ ଖଣ୍ଡି କାଶ,
ଦିଅର ସହଜେ ଟୋକା ଟାକିଳିଆ ଅଇଁଠା ପତରେ ଆଶ,
ବୋଲେ ଦନାଇ ନୂଆବୋହୂଙ୍କର ନିତି ପୂରେ ନାହିଁ ବାସ ।

* * * *

ଛୋଟା କଣା କୁଜା ଘଇତା ହେଉ ବଉଁଶ ପୋଷିଲେ ହେଲା
ଛୋଟୀ କାଣୀ କୁଜୀ ମାଇପ ହେଉ ପୁଅ ଜନ୍ମ କଲେ ହେଲା ।

* * * *

ଘରଣୀର ସଜ (ବେଶ) ରାତିଖିଆ ପରେ ଦାରୀଙ୍କର ସଜ ସଞ୍ଜକୁ,
ଦୋକାନୀର ସଜ ସକାଳ ପହରୁ ବୁଢ଼ାଙ୍କର ସଜ ପୂଜାକୁ ।

* * * *

ବଟୁ ଲେଖନ ଦାଆ ଦଣ୍ଡି ଗୋଟାଏ ନ ଧଇଲେ ଖାଆ ଭଣ୍ଡି ।
(ବଟୁ- ବ୍ରାହ୍ମଣ ବୃତ୍ତି, ଲେଖନ- କରଣ ବୃତ୍ତି, ଦାଆ- ଚାଷୀ ବା ମୂଲିଆ ବୃତ୍ତି, ଦଣ୍ଡି- ବେପାରି ବୃତ୍ତି)

## ଦନାଇ ଦାସଙ୍କ 'ଗୋପୀ ଭାଷା'

(୧) ସହୀ ବସିଥିବ ସଙ୍ଗ ସରିସା, ଶାନ୍ତଶୀଳ ହୋଇ କହିବ ଭାଷା,
ସଂସାରେ ବୋଲିବେ ଉତ୍ତମ ଲୋକ, କହେ ଦନାଇ ସେ ବଡ଼ ବିବେକ ।
(୨) ଶୁଆ ହୋଇ ଯେବେ ନ ଭାଷେ ବାଣୀ, ଶିଷ୍ୟ ହୋଇ ଯେବେ ଗୁରୁ ନ ମାନି,
ସଂସାରେ ବୋଲନ୍ତି ଏହାଙ୍କୁ ନଷ୍ଟ, କହଇ ଦନାଇ'ଏ ବଡ଼ କଷ୍ଟ ।
(୩) ଶ୍ରୀବନ୍ତ ହୋଇଣ ଯେବନ୍ତ ନର, ଶାନ୍ତଶୀଳ ହୋଇ କରେ ଉତ୍ତର ।
ଶୁଣଇ ପଢ଼ଇ ଜାଣେ ବିବେକ, କହେ ଦନାଇ ସେହୁ ବଡ଼ ଲୋକ ।
(୪) ରାମ ନାମ ବୋଲୁ ଥାନ୍ତି ଯେ ମୁଖେ ରାଗ ବହୁଥାନ୍ତି ଜଗତ ଲୋକେ;
ରାଗୁଆ ବୋଲିଣ ତାହାକୁ କହି କହେ ଦନାଇ ସେ ଯୋଗୀ ନୁହଁଇ ।
(୫) ଲାଜ ନଥାଏ ଯେବଣ ମୁଖେ, ଚୋରି କରି ଯାଏ ଆଲୁଅ ପାଖେ;
ନିଲଜ ପଣରେ ଖାଆନ୍ତି ମାଡ଼, କହେ ଦନାଇ ତାଙ୍କ ମୁହଁ ପୋଡ ।

(୬)ମନ ନ ମୁଣ୍ଡାଏ ମୁଣ୍ଡାଏ କେଶ ଜ୍ଞାନ ନ ଜାଣଇ ଭ୍ରମଇ ଦେଶ,
ଧ୍ୟାନ ନ ଜାଣଇ ପୁହାଏ ରାତି, କହେ ଦନାଇ ଏ କାଫର ଜାତି ।
(୭)ଭାଇ ସଙ୍ଗେ ଯେହୁ କରଇ କଳି, ଭାଣ୍ଡିଆ ବୋଲିଣ ତାହାକୁ ବୋଲି;
ଭଲ ଭଲ ଲୋକେ ବୋଲନ୍ତି ମନ୍ଦ, କହେ ଦନାଇ ଏ ସ୍ୱଭାବେ ଅନ୍ଧ ।
(୮)ପାଇକ ହୋଇଣ ଚରଣ ଫାଟୁଆ, ବଳଦ ହୋଇଣ ବିନ୍ଧଣା ମଠୁଆ;
ପୁରୁଷ ହୋଇ ମାଇପି ଚାଟୁଆ, ଗାୟକ ହୋଇ ତା କଣ୍ଠ ମୋଟୁଆ;
କହେ ଦନାଇ ଏ ହଟହଟିଆ ।

(୯)ବଡ଼ ଲୋକ ହୋଇ ନ ଥାଏ ବୁଦ୍ଧି, ବ୍ରାହ୍ମଣ ହୋଇଣ ନ ଥାଏ ସିଦ୍ଧି,
ହାତେ ଖଡୁ ନାହିଁ ଗୋଡରେ ମୁଦି, କହେ ଦନାଇ ଏ ନିର୍ଲଜ୍ଜ ବୁଦ୍ଧି ।
(୧୦) ଦାରିଦ୍ର୍ୟ ଘୋଟଇ ଯୁବା ବୟସ, ଦୁଃଖୀ ଦେଖିଲେ ଯେ କରେ ନିରାଶ ।
ଦୁର୍ବୁଦ୍ଧି ବୋଲିଣ ତାହାକୁ କହି, କହେ ଦନାଇ ଏ ନିନ୍ଦା ହୁଅଇ ।
(୧୧) ଧନ ସଞ୍ଚିଥାଇ ଯେବଣ ପ୍ରାଣୀ, ଧରିଣ ବିକଳ ହୁଅନ୍ତି ପୁଣି ।
ଧୂଳି ନ ଲାଗଇ ଯେବଣ ପାଦ, କହେ ଦନାଇ ଏ ବଡ଼ ପ୍ରମାଦ ।
(୧୨) ଦାରୀ (ବେଶ୍ୟା)ଙ୍କି ସୁନ୍ଦର ନାଟ, ଯୋଗୀଙ୍କି ସୁନ୍ଦର ମଠ;
କେଳାକୁ ସୁନ୍ଦର ହଟଚମଟ, ରାଜାଙ୍କୁ ସୁନ୍ଦର ଭାଟ,
ଗୁରୁଙ୍କୁ ସୁନ୍ଦର ଚାଟ, ନଈକି ସୁନ୍ଦର ଘାଟ ।
(୧୩) ଘରକୁ ସୁନ୍ଦର ବୁଢ଼ା ବୁଢ଼ୀ ଦାନ୍ତକୁ ସୁନ୍ଦର ଚୁଡା ମୁଢ଼ୀ
ହାତକୁ ସୁନ୍ଦର ସୁନା ଚୁଡ଼ି ପ୍ରିତୀକି ସୁନ୍ଦର ଗଡ଼ାଗଡ଼ି
କଳିକି ସୁନ୍ଦର ଲଢ଼ାଲଢ଼ି ।
(୧୪) ଝିଅ ବିଭାଦେଇ ନିଅନ୍ତି ଧନ, ଝଗଡ଼ି ହୋଇଣ ଯେବେଣ ଜନ,
ଝିଙ୍କିଣ ନିଅଇ ଅଳପ ଧନ, କହେ ଦନାଇ ଏ ପ୍ରଚଣ୍ଡ ମାନ ।
(୧୫) ଥିର ହୋଇ କରି ଶୁଣିବା ନରେ, ଥୋଇଲି ମାଇପ ଯାହାର ଘରେ ।
ଥୟ ନୁହଇ ଯେ ତାହାଙ୍କମନ, କହଇ ଦନାଇ ଏ ବଡ଼ ହୀନ ।
(୧୬) ତିଅଣ ହୋଇଣ ହୁଏ ଅଲଣା ସୁନା ଝାଳିବାରେ ନାହିଁ ଟାଙ୍କଣା
ତାଙ୍କ ଧରି ଯେତେ ହୁଅନ୍ତି ବଣା ଝିଅକୁ ବଢ଼ାନ୍ତି କରି ଦୁଲଣା,
କହେ ଦନ୍ୟାଇ ଏ ଚାରିହେଁ କଣା ।

(୧୭) ଡରେ ଥର ଥର ନୁହଇ ସୁତ, ଡାକଇ ଯାହାକୁ ପାଖକୁ ତାତ,
ଡାକ ନ ଶୁଣଣ୍ଁ ଧରଇ ଠେଙ୍ଗା, କହେ ଦନାଇ ଏ କୁଳ ବାଲୁଙ୍ଗା ।

(୧୮) ଟଙ୍କା ନ ଥାଇ ଟଭା, ଟାଙ୍ଗର ମୁଣ୍ଡରେ ଗଭା,
କୁଳ ଭୁଆଷୁଣୀ ଦାଣ୍ଡରେ ଉଭା କହେ ଦନାଇ ଏ କାହିଁରେ ଶୋଭା ?

(୧୯) ଟକଳା ଗୁଡ଼ିଆ, ଧଇଁଆ ତେଲି, ଛୋଟା ଦଣ୍ଡୁଆସି, ଛେଳିଆ ମାଳୀ
ଅରୁଚା ବ୍ରାହ୍ମଣ, କୁରୁଚା ଧୋବା; କହେ ଦନାଇ ଏ ଖାଆନ୍ତି ଖୋବା ।

(୨୦) ଚିତ୍ତ ଦୃଢ଼ କରି ଶଠ ଲକ୍ଷଣ, ଚିତା କାଟିମାଳି କରେ ଭଜନ;
ଚାହେଁ ନେବା ପାଇଁ ପରର ଧନ, କହେ ଦନାଇ ଏ ଠକ ଦୁର୍ଜନ ।

(୨୧) ପିଠା ଯାକରେ ମଣ୍ଡା, ପରିବା ଭିତରେ ଶଣ୍ଢା (ପିଆଜ ଶଣ୍ଢା)
ମଣିଷ ଯାକରେ ଇଣ୍ଡା ମଇଁଷି ଯାକରେ ପଣ୍ଡା,
ଗାଁ ଯାକରେ ଦଣ୍ଡା, ପଶୁ ଯାକରେ ଗଣ୍ଡା,
ହତିଆର ଯାକରେ ଖଣ୍ଡା, ଦନାଇ କହେ ଏମାନେ ବଡ ହୁଣ୍ଡା ।

(୨୨) କରମ ଥାଇ ଯାହାର ଦଶା, ସେ କିପାଁ କରଇ ପରକୁ ଆଶା;
ପରସ୍ତିରୀ ଯେବେ ହରଇ ଫୁସା, କହେ ଦନାଇ ଏ ପାପ ଦୁର୍ଦ୍ଦଶା ।

(୨୩) ମେଘ ଗରଜନ, ବ୍ରାହ୍ମଣ ଭୋଜନ, ଛଅଶ ଚକୁଳି ଘଷ ମରଦନ;
ପୀଢ଼ା ଫାଟଇ, ନାହି ଲେଉଟାଇ କହେ ଦନାଇ
(ତେବେ ବ୍ରାହ୍ମଣ) ସେ ଠାଆରୁ ଉଠଇ ।

(୨୪) ଡହ ଡହ ଆମ୍ବିଳ, ଶୀତଳଭଜା କହେ ଦନାଇ ଏ ନୁହଁନ୍ତି ମଜା ।
ଆଉ ଲୋଡିଲେ କାହିଁଛି ସେ କଥା, ପିଠି ଘେନଇ ନାହିଁ ପେଟକଥା ।

(୨୫) ଯାକୁ ମିଳିବ ଦିବ୍ୟ ସରୁ ଅନ୍ନ, ତାର ବଗଡା ଭାତେ କାହିଁ ମନ ?

(୨୬) ଯାକୁ ମିଳିବ ପଲଙ୍କ ସୁପାଡି, ତାର ଭୂମି ଶଯ୍ୟାରେ କାହିଁ ମତି ?

(୨୭) ଯାକୁ ମିଳିବ ସୁବାସ ଚନ୍ଦନ, ତାର ଲିମ୍ବକାଠରେ କାହିଁ ମନ ?

(୨୮) ଯେହୁ ଗଙ୍ଗାରେ କରିବ ସ୍ନାହାନ, ତାର କୂପ ଜଳରେ କାହିଁ ମନ ?

(୨୯) ସଭା କଲେ ଲୋକେ ନ ବୋଲିବେ କି ?
ଗୋପୀନାଥଙ୍କୁ ଗୋପୀ ନେବେ କି ?

(୩୦) କେତେ କେତେ ବିପତ୍ତି ନ ପଡିଲା, କୃଷ୍ଣ ଥିଲାକୁ କିଛି ନ ଲାଗିଲା ।

(୩୧) ତହ ତହ ଢାଉ ଦହି ପଖାଳ କାଞ୍ଜି ସାଙ୍ଗରେ ଯେ ଓଉର ଫାଳ
ତହିଁ ଶଙ୍ଖସାରୁ ଭଜା ଏକା ସାଙ୍ଗରେ ଖାଇବୁ ଯେବେ
ଯମପୁରକୁ ଯା ! ଯା !

(୩୨) ଅଣ୍ଡା ଭଙ୍ଗା ହୋଇ ଯେବଣ ଦାରୁ, ପୁଙ୍ଗ ହୋଇ କରି ଯେଉଁ କଖାରୁ,
ଯେଉଁ ସ୍ତିରୀଙ୍କର ଅଣ୍ଟାରେ ବାରୁ, କହେ ଦନାଇ ଏ ତିନିହେଁ ମାରୁ ।

(୩୩) ଖଣ୍ଡିଆ ଗୀତ, ରଙ୍କ ମାନିତ, ଧୋବା ସଙ୍ଗାତ, ଭଣ୍ଡାରି ମିତ;
କହେ ଦନାଇ ଏ କାହିଁରେ ହିତ ?

(୩୪) ଠିକଣା ନଥାଇ ଯେବଣ ଢନ, ଠିକରେ କହଇ ଦନାଇ ହୀନ ।
ଠାପୁଆ ହୋଇଣ ଯେବଣ ବାରୁ, କହେ ଦନାଇ ଏକଥା ଗରୁ ।

(୩୫) ଢ଼ୋଲ ହୋଇ କରି ତାର ନଥାଏ ସ୍ୱର,
ସର ହୋଇ ଯେବେ ନଥାଏ ନୀର,
ଢ଼ମାଳିଆ ନାମ ଅଟେ ସେ ପୁର,
କହେ ଦନାଇ ଏକଥା ନିକର ।

(୩୬) ଢପଇ ଦାଣ୍ଡରେ ତୁଳସୀ ମାଳୀ, ଗ୍ରାମେ ଗ୍ରାମେ ପଶି, କରଇ କଳି ।
ଯେମନ୍ତ ଲୋକର ଏମନ୍ତ ଗତି, ଦନାଇ ସେ ମିଛ ଭକତି ।

(୩୭) ପାଣି ବୁହାନ୍ତୀଙ୍କ ମୁଣ୍ଡରେ ଖୋଷା, ପୋଇଲି ହୋଇ କରିଥାଇ ଓଷା,
ପର ଗାଈ ଦୁହାଁ, ପର ଘର ପଶା, କହେ ଦନାଇ ଏ ଦଶମ ଦଶା ।

(୩୮) ଫୁଲ ହୋଇ ଯେବେ ନଥାଏ ବାସ, ଫୁଲାଣିଆ ଯେବେ ହୁଏ ନରେଶ;
ଫନ୍ଦା କରି ଯେବେ କରଇ ହେଳା, କହେ ଦନାଇ ଏ ବୁଡ଼ାଏ ଭେଳା ।

(୩୯) ଲିଫି ଲିଫି ବରଷା, ପରଲୋକ (ପୁରୁଷ) ଭରସା,
ବ୍ରାହ୍ମଣ ଘର ପରସା; କହେ ଦନାଇ ଏ ଫସର ଫସା ।

(୪୦) ଘୋର ବରଷା, ରଜନୀ ନିଶା, କହେ ଦନାଇ ଏ ସ୍ତିରୀଙ୍କ ଦଶା ।

(୪୧) ଗଡ ହୋଇକରି ନଥାଏ ବଣ, ଘର ଗେରସ୍ତର ନଥାଏ ପଣ,
ଥୋଇଲୀ ମାଇପର ନଥାଇ ଠଣ;କହେ ଦନାଇ ଏ କାହିଁରେ ଗଣ ?

(୪୨) ହସନ୍ତି ମନରେ ନଥାଏ ଦୟା, ହୃଦୟ ଭିତରେ କରନ୍ତି ମାୟା,
ହେରେଷା ବୋଲିଣ ତାହାଙ୍କୁ କହି; କହେ ଦନାଇ ଏକଥା ନୁହଁଇ ।

ମା ଭାଇ ଭଉଣୀଏ -
ନ କରିବ ଗାଳି ,
ରସରସିଆ ନ ହେଲେ
ଦନାଇର ଧିକ ପହଳି ।

# ନାଥ ବଚନ

(୧) ଉଇଁ ନ ଦିଶେ, ହସି ପଶେ,
ଉତ୍ତର ମେଘ ଦକ୍ଷିଣ ଆସେ,
ଘଟ ଗୋବରରେ ଅଂଶେଇ ବସେ,
ନାଥ ବୋଲେ ପୁତା ନିଶ୍ଚେ ବରଷେ ।

(୨) ପୂର୍ବେ ଆଦ୍ରାବଳି, ପଶ୍ଚିମେ ରୋଇ,
ନାଥ ବୋଲେ ପୁତା ନିଶ୍ଚେ ଯିବ ଧୋଇ ।
(ଖୁବ୍ ବର୍ଷା ଓ ନଈବଢ଼ି ହୋଇ ଧାନ ଫସଲ ଧୋଇବାର ପୂର୍ବ ଲକ୍ଷଣ)

(୩) ଫଗୁଣ ଗୁଣ୍ଡି, ଭୋଦୁଅ ବିଣ୍ଡି, ନାଥ ବୋଲେ ପୁତାରେ-
ଧାନ କାଟି ଚଷା ମାରଇ ହେଣ୍ଡି ।
(ଫଗୁଣରେ ଧାନ ବିଲକୁ ଗୁଣ୍ଡି କରି ଚାଷ କରିବ ଓ ଧାନ ବୁଣି ଭୋଦୁଅରେ ଧାନ ହୋଇଥିବା ବିଲକୁ ବାଛିବ, ତେବେ ଫସଲ ଭଲ ହେବ) ।

(୪) ଦିନକୁ ମଳାମଳା, ରାତିକୁ ନିର୍ମଳା,
ନାଥ ବୋଲେ ପୁତା ରାଇଜ ଛାଡି ପଳା ।
(ଦିନରେ ମେଘ ଘୋଟି ରାତିକୁ ଆକାଶ ନିର୍ମଳ ହେଲେ ଦେଶରେ ବର୍ଷା ନହୋଇ ନିଶ୍ଚୟ ଦୁର୍ଭିକ୍ଷ ପଡିବାର ଲକ୍ଷଣ) ।

(୫) ପୂର୍ବେ ଇନ୍ଦ୍ରଧନୁ ପଶ୍ଚିମେ ରୋଇ,
ନାଥ ବୋଲେ ପୁତା ନିଶ୍ଚେ ପଡ଼ଇ ଧୋଇ ।

(୬) ଆଗ ଚଲା, ପର ଗାଇ ଦୁହାଁ, ଦୀପ ପେଲା
ନାଥ ବୋଲେ ପୁତାରେ- ଜୀଇ ଥାଉଁ ଥାଉଁ ମଲା ।

(୭) ମକରେ ମଙ୍ଗଳ ଥିଲେ ରେ ପୁତା,
ନାଥ ବୋଲେ- ଦାସୀ ପୁଅ ହେଲେ ଧରି ଛତା ।
(ମକର ରାଶିରେ ମଙ୍ଗଳଗ୍ରହ ଯାହାର ଜାତକରେ ଥାଏ, ସେ ଦାସୀ ପୁତ୍ର ହେଲେ ମଧ- ରାଜା ହୁଏ)

(୮)   ମାଠିଆ ଭିତରେ ପଶିଲେ ଯମ, ନାଥ ବୋଲେ ପୁତା-
ଦାସୀ ପୁଅ ହେଲେ ରାଜାର ଯମ ।
(କୁମ୍ଭ ରାଶିରେ ଶନି ଗ୍ରହ ଯାହାର ଜାତକରେ ଥିବ ସେ ଦାସୀ ପୁତ୍ର ହେଲେ ମଧ ରାଜା ହେବ)

(୯)   ମୁରୁକି ହସା, ଚୁଙ୍ଗୁ ଚୁଙ୍ଗିଆ, ମାଗୁର ନିଶା, (ନିଶ)
ହିଆରେ ନ ଥାଏ ବାଳ, ନାଥ ବୋଲେ ପୁତା-
ଏ ତିନିଙ୍କି ପରତେ ନ ଯିବ, ଜିଇଁଥିବ ଯେତେ କାଳ ।

(୧୦)   ବାଇଶା ଗରଗଡା, ତେଇଶା ଝଡା, ନାଥ ବୋଲେ ପୁତା,
ପାଗ ପାଇଲେ ଉଠେ ମୁନିକନ୍ଦା ବାପୁଡା ।
(ଧାନ କ୍ଷେତରେ ୨୨ ବର୍ଷ ପର୍ଯ୍ୟନ୍ତ ଗରଗଡାର ମଞ୍ଜିରୁ ଗଛ ଉଠିବ, ୨୩ ବର୍ଷ ପର୍ଯ୍ୟନ୍ତ ଝଡା ବା ବାଲୁଙ୍ଗା ଧାନର ଗଛ ଉଠିବ ଏବଂ ମୁନିନ୍ଦା ନାମକ ଘାସ ପାଗ ପାଇଲେ ଯେତେ ଇଚ୍ଛା ସେ ସମୟରେ ଉଠିବ ।)

(୧୧)   ମଙ୍ଗଳ ରାତି ବୁଧ ପାହାନ୍ତି, ନାଥ ବୋଲେ ପୁତା-
ଯେଣେ ଇଚ୍ଛା ତେଣେ ଯାଆନ୍ତି ।
(ମଙ୍ଗଳବାର ରାତି ପାହିବା ଅର୍ଥାତ୍ ବୁଧବାର ବଡି ଭୋରରେ ଅନୁକୂଳ କଲେ, ଯାତ୍ରା ଶୁଭ ।)

(୧୨)   ବାଡି ଠୁକୁ ଠୁକୁ ବାନ୍ଧେ ଲଡକା
ବାଟେ ଦ୍ୱିଜବର ଦେଖିବ ଏକା,
ପାଆକେ କୁମ୍ଭାର କୋଣକେ ତେଲୀ (ତେଲ ବୋଝ)
ବାପଘର ହେଲେ, ନାଥ ବୋଲେ ପୁତା- ନ ଯିବ ପେଲି ।
(ଯାତ୍ରା ଅନୁକୂଳ ସମୟରେ ଏମାନଙ୍କୁ ଦେଖିଲେ ଅମଙ୍ଗଳ, ତେଣୁ ସେ ଯାତ୍ରା ଫେରାଇବେ)

(୧୩)   ବହୁ ମେଳି ହୋଇ ରାବିଲେ କାକ
ରାତିରେ ଭେରଣ୍ଡା ମାଇଲେ ଡାକ
କୁକୁର ମେଳି ହୋଇଣ କାନ୍ଦିଲେ

ସନ୍ଧ୍ୟା ସମୟେ କପୋତ ରାବିଲେ
ଆକାଶରୁ ତରା ହୋଇଲେ ଭ୍ରଷ୍ଟ
ନାଥ ବୋଲେ ପୁତା ପଡ଼ଇ କଷ୍ଟ ।

(୧୪) ବୟସ ମଦ (ବୟସ ନିଶା) ଯେ ଧନର ମଦ (ଧନ ନିଶା)
ପଣ ମଦରେ (ଯୁଆ ନିଶା) ଶୁଣ୍ଢିଘର ମଦ (ପିଇବା ମଦ ନିଶା)
ଏକା ସଙ୍ଗରେ ହେଲେ ଚାରି ମଦ
ନାଥ ବୋଲେ ପୁତାରେ-ପଡ଼ିଲା ମହା ବିପଦ ।

(୧୫) ବାହା ହବା ସିନା ଜୀବନ ସଉଦା
ଶାଗ ସଉଦା ତରକାରି ପାଇଁ ।
ଚାଉଳ ସଉଦା ସାରା ବର୍ଷ ପାଇଁ
ନାଥ ବୋଲେ ପୁତାରେ-
ଧର୍ମର ସଉଦା ସେପାରି ପାଇଁ ।

(୧୬) ଶିଙ୍ଗ ସରୁଆ, ଲାଙ୍ଗୁଡ଼ ମୋଟା
ନାଥ କହେ- ପାଶେ ନ ଯାଅ ବେଟା ।

(୧୭) ସ୍ୱର୍ଣ୍ଣ, ଭୂମି, କନ୍ୟା ଦାନ
ନାଥ ବୋଲେ- ସ୍ୱର୍ଗେ ସ୍ଥାନ ।

(୧୮) ଚୋର ସେବକ, ଚୋରଣୀ ଗାଈ
ପଡ଼ୋଶୀ ଖଳ, ଦୁଷ୍ଟ ଭାଇ
ଦୁଷ୍ଟା ନାରୀ, ପୁଅ ଯୁଆରୀ
ନାଥ ବୋଲେ- ଦୂରୁଁ ପରିହରି ।

(୧୯) ବାପ ସ୍ଥବିର, ପୁଅ ମୂରୁଖ
ନାଥ ବୋଲେ- ଏ ବଡ଼ ଦୁଃଖ ।



# କୁଞ୍ଜବନ ବଚନ

(୧) ଆଜି ଝୁଲଣ, ପୁରୀ ଚନ୍ଦନ, ଓରକଣା (ଯାଜପୁର) ମେଳନ,
ଚନ୍ଦ୍ରଭାଗା ସ୍ନାହାନ କଣ୍ଟିଲୋ ବାସନ (କଂସା),
ମାଣିଆ ବନ୍ଧ ବସନ, ନୀଳଗିରି ବାସନ (ପଥର),
କହେ କୁଞ୍ଜବନ ନାହିଁ ସମାନ ।

(୨) ଦକ୍ଷିଣୀ ବେଶ, ବଙ୍ଗାଳି କେଶ,
ଓଡ଼ଶୀ ଉରୁ, କାମାକ୍ଷା (ଆସାମ) ଭୂରୁ,
ଉତ୍ତରୀ କୁଚ (ସ୍ତନ), ଗୁଜ୍ଜରୀ (ଗୁଜୁରାଟୀ)କୁଞ୍ଚ,
ମଥୁରା ନାରୀଙ୍କ ଚାହାଁଣୀ
କହେ କୁଞ୍ଚବନ ଆଖିରେପଡ଼ିଲେ
ମରମ ହୁଅଇ ହାଣି ।

(୩) 'ବଳଦେବ'ଙ୍କର ରସାବଳୀ 'ଲିଙ୍ଗରାଜ'ଙ୍କର କୋରା,
'ସାକ୍ଷୀଗୋପାଳ'ଙ୍କ ସରପୁଲୀ, 'ସାରଳା'ଙ୍କର କାକେରା,
'ଜଗନ୍ନାଥ'ଙ୍କ ଚଢ଼େଇ ଲେଦା, 'ଲୋକନାଥ'ଙ୍କ ଚୁଡାଘଷା,
'ଶୀତଳା'ଙ୍କ ଛେନା ତାଡ଼ିଆ, 'ରଘୁନାଥ'ଙ୍କ ରସା,
'ନୀଳମାଧବ'ଙ୍କ କ୍ଷୀରୀ ଖେଚେଡି, 'ଭଗବତୀ'ଙ୍କ ମହୁର,
କହେ କୁଞ୍ଜବନ ଥରେ ଖାଇଥିଲେ ଲକ୍ଷଥର ଜୁହାର ।

(୪)'ମାର୍କଣ୍ଡ', 'ଶ୍ୱେତଗଙ୍ଗା' , 'ଇନ୍ଦ୍ରଦ୍ୟୁମ୍ନ ରୋହିଣୀକୁଣ୍ଡ' ,'ସାଗର' ସ୍ନାହାନ
ମାଘ ସପ୍ତମୀରେ 'ଚନ୍ଦ୍ରଭାଗା' ରେ 'ତ୍ରିବେଣୀ', 'ପ୍ରାଚୀନଦୀ'ର ଜଳେ
'ବିନ୍ଦୁ ସରୋବର'ରେ 'କୋଟି ତୀର୍ଥ'ରେ କାର୍ତ୍ତିକ ମାସେ ଯେ ସ୍ନାହାନ କରେ
ଶାସ୍ତ୍ରମତେ କୁଞ୍ଜବନ କହଇ ଏମାନଙ୍କୁ ଯମ ଯାତନା ନାହିଁ ।

(୫)ସାତକୋଶିଆ ଗଣ୍ଡ, ପଟିଆଗଡ ଭାଣ୍ଡ ହଳଦିପଦା ରାଣ୍ଡ,ଖୋରଧାଓଡ ଖଣ୍ଡ
ଖଣ୍ଡିଆଗଡ ଦାଣ୍ଡ, ଖଇରାପାଟ ଧଣ୍ଡ ଲିଙ୍ଗରାଜଙ୍କ ଚଣ୍ଡ, ପୁରୀପଣ୍ଡାଙ୍କ ତୁଣ୍ଡ
ହଟକେଶ୍ୱର କୁଣ୍ଡ, ବୋଲେ କୁଞ୍ଜବନ ସବୁ ବିଗଣ୍ଡ ।



# ସଖୀଗୋ

(୧) ଖାଲ ବିଲ ଚାଷ, ଖଣ୍ଡ ଖୀରି ଗ୍ରାସ;
ଖଟିଥିବ ଗୁଣ ଚିହ୍ନା ନରପତି ପାଶ- ! ସଖୀଗୋ, ଭଲଏ ।

(୨) ଚାପଡେ ପ୍ରୀତି, ଗଙ୍ଗା ତୀରେ ସ୍ଥିତି
ଗୁରୁଜନମାନଙ୍କୁ କରିବ ବିନତୀ- ! ସଖୀଗୋ-ଭଲଏ ।

(୩) ନୂଆ ନୂଆ ଶାଗ, ନୃପତି ଅନୁରାଗ,
ନାତି ନାତୁଣୀଙ୍କ ଠାରେ ବୁଢ଼ା (ଅଜାର) ସରାଗ (ସୁହାଗ) ! ସଖୀଗୋ, ଭଲଏ ।

(୪) ବିଭା ହୋଇଥିବ କାଳୀ କି, ଟାପରା କରିବ ଶାଳୀ କି,
ବିଲ ଧରିଥିବ ନାଳୀ କି ! ସଖୀଗୋ-ଭଲଏ ।

(୫) ନଇ କୂଳିଆ ଡେଣ୍ଡା, ଛାଇ ତଳିଆ ଭେଣ୍ଡା,
ଛେନା ପଣାରେ ମରିଚ ଗୁଣ୍ଡା ! ସଖୀଗୋ- ଭଲଏ ।

(୬) କଟୁ ବଚନ, ମିଠାତିଅଣ ପାସୋରି ନଯାଏ ମନୁ,
ଦିନ ଦିନକର କଥା ମନେ ପଡ଼ିଗଲେ, ଘାରି ହେଉଥାଏ ତନୁ ।
ସଖୀଗୋ- ଭଲଏ ।

(୭) ସମୁଦ୍ରକୁ ପିଣ୍ଡ, ଶାକରକୁ ଖଣ୍ଡ;
ଶଙ୍ଖସାରୁକୁ (ପୋଇ ଖାଡିରେ) ଶୁଖୁଆମୁଣ୍ଡ; ସଖୀଗୋ- ଭଲଏ ।

(୮) ମାଘ ମାସରେ ନିଆଁ, ମିତଠାରେ ସ୍ନେହା,
ମୁଣ୍ଡି ଖଇଛଡ଼ାକୁ ମୁଡ଼ିମୁଁଆ; ! ସଖୀଗୋ- ଭଲଏ ।

(୯) ଚାଷ ତରତର, ବଣିଜ ଧିର ! ସଖୀଗୋ- ଭଲଏ ।

(୧୦) ମାଘ ବରଷା, ମା' ପରଷା,
ଲମ୍ୱା ନଡ଼ିଆ, ଚକାଗୁଆ ! ସଖୀଗୋ- ଭଲଏ ।

(୧୧) ନଈ କୂଳିଆ ତେଣ୍ଟା, ଛାଇ ତଳିଆ ଭେଣ୍ଡା,
ଛେନା ପଣାରେ ମରିଚ ଗୁଣ୍ଡା ! ସଖୀଗୋ- ଭଲଏ ।

(୧୨) କେମ୍ପା କରଣ, ଛୋଟା ଘୋଡ଼ା,
ଖନା ଓକିଲ, ହାକିମ ତେଢ଼ା ! ସଖୀଗୋ- ମନ୍ଦଏ ।

(୧୩) ଖୁଁ ଖୁଁ କାଶ, ଖର ନିଶ୍ୱାସ ଖରଜନ୍ତୁ ଥିବା ଘରେ ବାସ,
ଖଣ୍ଡ ଗାଁରେ ଚାଷ ବାସ ! ସଖୀଗୋ- ମନ୍ଦଏ ।

(୧୪) ଛାଇ ତଳିଆ ବେଉସା, ଛୋକାରୁଣୀ ମାଇପଙ୍କ ଓଷା,
ପାଣି ବୁହାନ୍ତିଙ୍କ ମୁଣ୍ଡରେ ଖୋଷା ! ସଖୀଗୋ- ମନ୍ଦଏ ।

(୧୫) ଟେଁ ଟେଁୟା ଶାରୀ, ଚିକଣିଆ ଭଣ୍ଡାରି;
ଚାହିଁ ଢଳକୀ, ବୀଟପି ନାରୀ ! ସଖୀଗୋ- ମନ୍ଦଏ ।

(୧୬) ଭାଦ୍ରବ ମାସର ଖରା, ଅଳପ ଲୋକର ତୋରା,
ଛିଣ୍ଡା କନାରେ ବାସୀ, ଭଙ୍ଗା ଦାନ୍ତରେ ମିଶ୍ରି ! ସଖୀଗୋ- ମନ୍ଦଏ ।

(୧୭) ମେଘ ବରଷା, ଅନ୍ଧାର ନିଶା
ଭୁଆଷୁଣୀର ପରରେ ଆଶା ! ସଖୀଗୋ- ମନ୍ଦଏ ।

(୧୮) ବନ୍ଧ ତଳିଆ ବାସ, ନଈ ତଳିଆ ଚାଷ,
ପର ଯୁବତୀରେ (ପୁରୁଷ) କରିବା ଆଶ ! ସଖୀଗୋ- ମନ୍ଦଏ ।

(୧୯) ଦକ ଦକ ମନ, ଦୁମୁ ଦୁମୁ ଗମନ,
ଦାନା ଦେଲା ଲୋକଠାରେ କଲେ ଅଭିମାନ ! ସଖୀଗୋ- ମନ୍ଦଏ ।

(୨୦) ଶୋଷୀ ମରା କାଠ, କାନ୍ଥ ଭିତରେ ଫାଟ,
କାଖ ବାଳୁଆ ଚାଟ ! ସଖୀଗୋ- ମନ୍ଦଏ ।

(୨୧) ରାଣ୍ଡ ହୋଇ ଦେହକୁ ମଣ୍ଡେ, ରାଜା ହୋଇ ପରଜା ତଣ୍ଡେ
ଗୃହସ୍ଥ ହୋଇ ପତ୍ନୀକି ଦଣ୍ଡେ, ସାହୁ ହୋଇ ଖାତକକୁ ଭଣ୍ଡେ !
ସଖୀଗୋ- ମନ୍ଦଏ ।

(୨୨) ରାଗରେ ଜରଜର, କାମରେ ତରତର, ଚାଲିଟି ଖର ଖର,
ଠିଆହେଲେ ଧରଧର, ବରଷା ଫର ଫର, ହସିବା କରକର,
ହଳଦୀ ଗରଗର, ଶୀତରେ ଥରଥର, ଲୋତକ ଝରଝର (ଜରଜର) !
ସଖୀଗୋ- ମନ୍ଦଏ ।

(୨୩) ଫିରି ଫିରି ବରଷା, ଫଗୁଣ ମାସରେ ମଶା,
ଫିଙ୍ଗିଦିଆ ଭାତ ପରଶା; ! ସଖୀଗୋ- ମନ୍ଦଏ ।

(୨୪) ନଳୀ ଗୋଡ ଘାଆ, ଦୁଆରମୁହଁ ସାହୁ, ! ସଖୀଗୋ- ମନ୍ଦଏ ।

(୨୫) ଝପ ଝପ ଚାଲି, ଝୁଣ୍ଟି ପଡ଼ିଲେ ଗାଳି, ଝାଳ ଗମ ଗମ, ତପତ ବାଲି; !
ସଖୀଗୋ- ମନ୍ଦଏ ।

(୨୬) ଖଣ୍ଡି ଖଣ୍ଡି କାଶ, ଖର ନିଶ୍ୱାସ, ! ସଖୀଗୋ- ମନ୍ଦଏ ।

(୨୭) ଖଳ ସଙ୍ଗେ ମେଳ, ଖଣ୍ଡେଇତ (ଖଣ୍ଡ) ସଙ୍ଗେ ଗୋଳ,
ଖଣ୍ଡିଆ ଖଟୁଲି, ହାଣ୍ଡିଶାଳ ଗୁହାଳ, ! ସଖୀଗୋ- ମନ୍ଦଏ ।

(୨୮) ନଈ ଆତଡ଼ା ଚାଷ, ଅନ୍ତୁଡ଼ି ପୁଅକୁ ଆଶ ! ସଖୀଗୋ- ମନ୍ଦଏ ।

(୨୯) ଚିଚିୟାଁ ସାରୀ, ଝପଝପ ଚାଲି,
ଚାହିଁ-ଢଳକା, ଅବିଗୁଣ ଭାରିଜା ! ସଖୀଗୋ- ମନ୍ଦଏ

(୩୦) କଉପୁନିଆଙ୍କ ଧନ୍ଦା, କଳେହୀ ମାଇପ ରନ୍ଧା,
କରକଚା ଭୁଇଁ ଫନ୍ଦା ! ସଖୀଗୋ- ମନ୍ଦଏ ।



# କୃଷି ବଚନ/ଡାକ ଋଷି ବଚନ

## ବଳଦ ଲକ୍ଷଣ

(୧) ଜାଣ ନ ଜାଣ (ଆଣ ନ ଆଣ) ଝାମ୍ପୁଲି ଆଣ ।
ଖାଡ଼ିଆ ଶିଂଘା ସବୁଠୁ ଟାଣ
କୁଣ୍ଡଳୀ ଶିଂଘାକୁ ଦେଖିବୁ ଯେବେ
ଅଣ୍ଟାରୁ ପଇସା କାଢ଼ିବୁ ତେବେ ।
କିଣିଥିବୁ ମୂଳା ଶିଂଘାକୁ ରସି
ଯେବେ ଆଣିଥିବୁ ବେଣିଆ ରସି
କାନ୍ଦୁଥିବୁ ହିତ ମୁଣ୍ଡରେ ବସି ।
ଶିଂଘ ସରୁଆ ଲାଙ୍ଗୁଳ ମୋଟା,
ମାଗଣା ଦେଲେ ନ ଆଣି ଲେଉଟା

(୨) କାଳିଆ ବଳଦ କହରା, ଯାଙ୍କୁ ନ କରିବ ପସରା
(ଏ ଜାତୀୟ ବଳଦ ବେଶି କାମିକା ନୁହଁନ୍ତି)

(୩) ବଳଦର ଦାନ୍ତ, ଗାଈର ଅନ୍ତ ।
(ବଳଦ ଯେତିକି କୁଟା ଘାସ ଆଦି ଦାନ୍ତ ବା ଚୋବାଇବାକୁ ପାଇବ, ଗାଈ ଯେତିକି ପେଟକୁ ଦାନା ପାଣି ପାଇବ, ସେତିକି ବେଶୀ କର୍ଯ୍ୟକାରୀ ହେବ)

(୪) ଗାଈ କରିଥିବ ଗୁରୁଡ ଗାରଡ ବଳଦ କରିବ ଢ଼େପା;
ଆଖୁ ବିଲରୁ ମାଣେ ନ କରିବ, ପାଏ କରିଥିବୁ କପା ।

(୫) ମଠୁଆ ବଳଦ କରିବୁ ଯେବେ, ଜୀବ ଥାଉଁ ଥାଉଁ ମରିବୁ ତେବେ ।

(୬) ଧଅକ ଚିକ୍‌କଣ କୁଣ୍ଡା ଖାଏ , ଆଗ ହଳ ବାଆଁରେ ଯାଏ ।

(୭) ତୁଳାରେ ପକାଇ ମଣିବ , ପଥର ପକାଇ ଚଷିବ ।
(ହାଲୁକା କାମଦେଇ ଦାମୁଡ଼ି (ବଳଦ)କୁ ମଣ କରିବ । ଚାଷ କଲାବେଳେ ଭିଡ଼ କାମରେ ଲଗାଇବ)

(୮)　ଗାଈ ପୁଅ ଅଣ୍ଡିରା　　　　ଘରେ ନ ବାନ୍ଧେ କଣ୍ଡରା ।
(ନିଜ ଗାଈର ଅଣ୍ଡିରା ବାଛୁରୀ କି ବଳଦ କରି ହଳରେ ଯୋଚିବା ଅବିଧି)

(୯)　ଗାଈ ପେଟରୁ ମାଣିକ ଜାତ ।
(ଗୋରୁ ବିନା ଚାଷ, ଗାଈ ବିନା ଯଜ୍ଞ ହୋଇପାରୁ ନଥିଲା, ତେଣୁ ଗାଈ ପେଟରୁ ମାଣିକ ବା ଧନ ସମ୍ପତ୍ତିର ଜନ୍ମ ବୋଲି କୁହାଯାଉଥିଲା)

(୧୦)　ଖଳିଆ ବୋଇଲା ପାଟରାରେ　　　　ଦେଖ ମୋର ଚାଲି
ତୁ ମୁଁ ଦିହେଁ ସାଙ୍ଗ ହୋଇଲେ　　　　ସାଆନ୍ତ ଖାଇବା କାଲି ।
(''ଖଳିଆ'' ବଳଦ ଛୋଟା ପରି ପେଙ୍ଗେଇ ପେଙ୍ଗେଇ ଚାଲେ । ''ପାଟରା'' ବଳଦର ଚୂଳରେ ନାହିଁରେ, ଶିଙ୍ଘ ତଳେ ଛଉ ଥିଲେ ଏହାକୁ (ପାଟରା) ଦୁର୍ଲକ୍ଷଣ କୁହାଯାଏ । ଏମାନଙ୍କ ଦ୍ୱାରା ଚାଷ ହୋଇପାରେ ନାହିଁ)

(୧୧)　ଛ' ଦାନ୍ତିଆ ନ' ଦାନ୍ତିଆ,　　　　ଭାଗ୍ୟେ ଥିଲେ ପାଇ
ଆଠଦାନ୍ତିଆ ଗୋରୁ ଯେ　　　　ଗୋରୁ ମଧ୍ୟେ ଥାଇ
ସାତ ଦାନ୍ତିଆ ଗୋରୁ ଯେ　　　　ଗୋସେଇଁ ମୁଣ୍ଡ ଖାଇ ।
(ଛ'ଦାନ୍ତିଆ, ନ'ଦାନ୍ତିଆ ବଳଦ ଲକ୍ଷଣବନ୍ତ । ସାତ ଦାନ୍ତିଆ ଗୋରୁ ମାଲିକକୁ ଖାଏ)

(୧୨)　କାଳିଆ ବଳଦ ନ ଲୋଡ଼ି ।

## ମାଟିର ଲକ୍ଷଣ

(୧)　ଚିକିଟା ମାଟି,　　　　ଖରା କଲେ ଯାଏ ଫସର ଫାଟି;
ବରଷାରେ ଯାଏ ଫାଟି ଫୁଟି ।

(୨)　ରହୁଆ ମାଟି (ମଟାଳ ମାଟି), ଖରାକଲେ ଯାଏ ଫସର ଫାଟି;
ମେଘ ଅସରାକେ ବେସର ବାଟି ।

(୩)　ଗାଁ ଧୋଓରା ପୋଖରୀ ତଳ, ଯାକୁ ଦଉଥିବ ଆଗତକର ।
(ଗ୍ରାମର ବର୍ଷା ପାଣି ଯେଉଁ ଜମିରେ ପଶେ ଓ ପୋଖରୀ ତଳ ଜମିସବୁ ଉତ୍କୃଷ୍ଟ)

(୪) ବିଲ କରିଥିବ ଢୋଡି, ମାଇପ କରିବ ଗୋରୀ;
ଗାଈ କରିବ କାଳି ପୁଞ୍ଛ, ବଳଦ କରିବ ଢେପା;
ପୋଖରୀ ପାଖରେ ବିଲ କରିଥିବ, ଚାଷ କରିଥିବ ଏକା ।

(୫) ମଣିଷ ଫୁଲଇ ଖାଇଲେ ଭାତ, କ୍ଷେତ ଫୁଲୁଥାଏ ଖାଇଲେ ଖତ ।
ମନୁଷ୍ୟକୁ ବୁଲାଭାତ, ଖେତକୁ ଉପର ଖତ ।

(୬) ଦୂର ମଟାଳ ପାଶ ପାଣି ପାଶ ମଟାଳ ଦୂର ପାଣି ।

## ଧାନର ଲକ୍ଷଣ

(୧) ଧାନ କୋଇଲି, କୁଟି କୁଟି ମଲା ବୋହୂ ପୋଇଲୀ ।
('କୋଇଲି ବାଇ' ନାମକ ଧାନ କୁଟି ଚାଉଳ ବାହାର କରିବାକୁ ଭାରି ପରିଶ୍ରମ ଲାଗେ)

(୨) ଧାନ ବଉଳା, ବନ୍ଧୁ ମଉଳା
('ବଉଳା' ନାମକ ଧାନ ମଉଳା ବନ୍ଧୁ ପରି ଉତ୍କୃଷ୍ଟ)

(୩) ଧାନ ଯାକରେ ମକରା, କେଭେଁ ନୁହେଁ ନାକରା ।
ଯେବେ ହେବ ନାକରା, ତେବେ ନେବ ଖପରା ।
('ମକରା' ନାମକ ଧାନ ବହୁତ ଫଳେ ମାତ୍ର ପାଗ ଯୋଗରେ ତୃଟି କଲେ ଏକାବେଳକେ ନଷ୍ଟ ହୁଏ)

(୪) ଧାନ ନାଁ ଷାଠିକା ନଉ (ନବେ) ଦିନେ କାଟିଥା ।
(ବିଆଳି ଧାନ ତଥା 'ଷାଠିକା' ନାମକ ଧାନ ବୁଣିବାଠାରୁ ୯୦ ଦିନରେ ପାଚେ)

(୫) ଧାନ ନାଁ ରଙ୍ଗିଆ ରାଇ; ତାକୁ ନ ଛାଡ଼ିବୁ ଚଷା ଭାଇ ।
ହାତେ ଲମ୍ବ କାଢ଼ିବ ଶୀଷା ଦେଖି ଝୁରୁଥିବେ ସାଇ ପଡ଼ିଶା ।
('ରଙ୍ଗିଆ ରାଇ' ନାମକ ଧାନ ପ୍ରଚୁର ପରିମାଣରେ ଫଳେ)

(୬) ଧାନ ନାଁ ନରସିଂଘ ଭୋଗ, ଘଇତା ଅରଜିଲେ ମାଇପକୁ ଯୋଗ ।
('ନରସିଂହ ଭୋଗ' ନାମକ ଅତିସରୁ ଧାନର ସରୁ ଚାଉଳ ମୂଳିଆମାନେ

ଖାଇବାକୁ ସୁଖ ପାଆନ୍ତି ନାହିଁ । ମୁଲିଆ ବା ଚଷା ଉକ୍ତ ଧାନର ଚାଉଳକୁ ସୁଖ ନ ପାଇବାରୁ ସେ ଚାଉଳ ଭାତ ତା ଘରର ମାଇପେ ଖାଆନ୍ତି)

(୭) ରାବଣା ଧାନ; କେଣ୍ଡାଯାକ ବାଲୁଙ୍ଗାପରି, ଢୋଡ଼ିବିଲ (ଗଣ୍ଡପାଣି)ରେ ବୁଣ । ('ରାବଣା ଧାନ' ବେଶି ପାଣି ରହିବା ଜମିରେ ଫଳେ ଓ ତହିଁରେ କେଣ୍ଡାମାନଙ୍କରେ ବାଲୁଙ୍ଗା ପରି ଶିଂଘା ବାହାରେ)

## ଧାନ ଚାଷ

(୧) ଚଷାର ଚାଷ, ଭଲ କମଣ ମାଟି ଉଶ୍ୱାସ
ବ୍ରାହ୍ମଣ ଚାଷ, ହଳ ଟୁଙ୍ଗୁ ଟୁଙ୍ଗୁ ଉପରେ ଘାସ
ମହାନ୍ତି ଚାଷ, ହିଡ ଖଣ୍ଡିକ ତଉଲ ଡାଉଲ
ଧାନ ଫଳଇ ଫସର ଫାସ ।

(୨) ବ୍ରାହ୍ମଣ ଚାଷ, ହଳ ଟୁଙ୍ଗୁ ଟୁଙ୍ଗୁ ଉପରେ ଘାସ,
ମହାନ୍ତି ଚାଷ, ପିଣ୍ଡାରେ ବସ,
ବଙ୍ଗାଳୀ ଚାଷ, ହୁକା ଗୁଡୁ ଗୁଡୁ, ଖୁଁ ଖୁଁ କାଶ ।

(୩) ଧାନ ଫସଲ ପାଇଁ
ଆଠ ଦୁମୁକାଣି ଷୋଳ ଅସରା ।
ବତିଶ ଲିଫି ଲିଫି ଚଉଷଠି କୁଣ୍ଡାଝରା ।
ତେବେ ଯାଇ ଚାଷୀର ପେଟ ହୁଏ ପୂରା ।

(୪) ଉଭା ମୁଠା ଆଡ ଦିମୁଠି — କିଆରୀ ମଝିରେ ପୋତିବୁ କାଠି
ବିଲରେ ରଖିବୁ ପାଣି ସମାନ — ପର୍ବତ ଶିଖରେ ବୁଣିବୁ ଧାନ
ଯଦି ନ ହେବ ଧାନ, — ତେବେ ଯାଇ କାଟିବୁ 'ଡାକର କାନ'
(ଧାନ କିଆରୀରେ ଉଚ୍ଚ ଓ ଚଉଡ଼ା କରି ହିଡ଼ ବାନ୍ଧିବ, କିଆରୀ ମଝିରେ ଗର୍ଭଣା ସଂକ୍ରାନ୍ତି ଦିନ ଗର୍ଭଣା କାଠି ଉଚ୍ଚ ୧ ହାତ ଚଉଡାରେ ୨ ହାତ ଛଡ଼ାରେ ପୋତିବ, ବିଲରେ ସବୁବେଳେ ସମାନ କରି ପାଣି ରଖିବ, ତେବେ ଯେଉଁଠାରେ ଇଚ୍ଛା ସେଠାରେ ଧାନ ଫସଲ ଭଲ ହେବ)

(୫) କରକଟେ ଛରକଟ ସିଂହେ ଶୁଖାଏ କନ୍ୟେ କାନେ କାନ
(ଧାନଗଛର ବେକ ପର୍ଯ୍ୟନ୍ତ ପାଣି)
ବିନ୍ଦୁ ବିନ୍ଦୁ ହୋଇ ତୁଳେ ବରଷିଲେ କାହିଁରେ ରଖିବୁ ଧାନ ।

(୬) ଛାଡ଼ିବୁ ଚଉଦ ଧରିବୁ ଚାରି କମଣ କରିବୁ ଚାଷ କିଆରୀ
ବୁଣିବୁ ଖରୁଡ଼ି ବିଞ୍ଛିବୁ ଖତ ହିଡ଼ ଖଣ୍ଡିକରେ ନ ଦେବୁ ହାତ
କିଏ ସେ ଖାଇବ ତୋହର ଭାତ ?
(ବହୁତ ଜମି ଚାଷ ନକରି ଅଳ୍ପ ଚାଷ କରିବା ଉଚିତ)

(୭) ଫଗୁଣ ଚାଷ, ସୁନା କଷ ଚଇତ ଚାଷ, ରୂପା କଷ
ବୈଶାଖ ଚାଷ, କୁଟୁମ୍ବ ପୋଷ ଜ୍ୟେଷ୍ଠ ଚାଷ, ରାଜା ପୋଷ
ଆଷାଢ଼ ଚାଷ, ମୂଲିଆ ପୋଷ ଶ୍ରାବଣ ଚାଷ, ମୂଲିଆ ପୋଷ
ଭୋଦୁଅ ଚାଷ, ଗଙ୍ଗା କୂଳେ ବାସ ।

(୮) ଅଳପ ଚାଷ କୁଟୁମ୍ବ ପୋଷ ବହୁତ ଚାଷ ରାଜାକୁ ପୋଷ ।
(୯) ଆଠର ଚକା ଷୋଳ ବଢ଼ି, ତେବେ ଦେଖିବ ଧାନର କଢ଼ି ।
(ବଢ଼ି ଯୋଗୁ ପଟୁ ପଡ଼ିଲେ ଧାନ ଭଲ ହୁଏ)

(୧୦) ଆପେ ଚଷିବୁ ପୂରା ଚାଷ, ଛତା ଜୋତା ଅଧା ଚାଷ,
ମୂଲିଆ ଚାଷ ଫସର ଫାସ ।

(୧୧) କରକଟେ (ଶ୍ରାବଣ) ଝର ଝନ, କନ୍ୟାରେ (ଆଶ୍ୱିନ) କାନ,
ବିନେ ବାଏ, ତୁଳେ (କାର୍ତ୍ତିକ) ବରଷିଲେ କାହିଁ ରଖିବୁ ଧାନ ?
(ଶ୍ରାବଣରେ ବରାବର ଝଡ଼ବର୍ଷା, ଆଶ୍ୱିନରେ ଧାନର କାନ ବୁଡ଼ିବା ଯାକେ ବରଷା, କାର୍ତ୍ତିକରେ ବିନା ପବନରେ ବର୍ଷା, ଏପରି ହେଲେ ବହୁ ପରିମାଣରେ ଧାନ ଫଳେ)

(୧୨) କାର୍ତ୍ତିକ ମାସରେ ଦାଣ୍ଡରେ ପାଣି ହାଟୁଆ କାଢ଼ିଲେ ବଡ଼ ଗଉଣୀ ।

(୧୩) କାର୍ତ୍ତିକ ନ ଥାଏ ଅଫୁଲା ମଗୁଶୁରେ ନ ଥାଏ ଅପାଚିଲା ।

(୧୪) କେଭେଁ ନ କରିବୁ ଟିକରା ଚାଷ, କର ଦେଇ ନାହିଁ ଲାଭରେ ଆଶ ।
(ଅଳ୍ପ ଚାଷ କଲେ କ୍ଷତି ଘଟିବା ଅନିବାର୍ଯ୍ୟ)

(୧୫) ଖତ ବରଷେ, ପଙ୍କ ପୁରୁଷେ ।

(୧୬) ଗଙ୍କା ମରୁଡ଼ିରେ ମୂଲ୍ଲ ଯାଏ, କ୍ଷେତ ମରୁଡ଼ିରେ ବିହନ ଥାଏ ।

(୧୭) ଛାଡ଼ିବୁ ଚଉଦ ଧରିବୁ ଚାରି, କମଣ କରିବୁ ଚାଷ କିଆରୀ;
ବୁଣ ଖରଡ଼ି ପକା ଖତ, ହିଡ଼ ଖଣ୍ଡିରେ ନ ଦେବୁ ହାତ;
ଦୀର୍ଘରେ ହାତେ, ପ୍ରତିରେ ହାତେ, ହିଡ଼ ବାନ୍ଧିବୁ ଘାସ ସହିତେ;
ପର୍ବତ ଶିଖରେ ବୁଣିବୁ ଧାନ, ଯେବେ ନ ହେବ ତହିଁରେ ଧାନ,
ତେବେ କାଟିବୁ 'ଡାକର କାନ' ।

(୧୮) ଚଷା ଭାଇ ମାନରେ, ଯହିଁ ପାଣି ତହିଁ ଧାନରେ ।

(୧୯) ଆଗେ ବୁଣ୍ ପଛେ ବୁଣ୍, ଗର୍ଭଣାକୁ (ସଂକ୍ରାନ୍ତି) ଟୁଣ୍ ଟୁଣ୍ ।

(୨୦) ମାଘ ଚକଟା, ଫଗୁଣ ଫଟା, ଚଇତେ ଝାଞ୍ଜି,
ତେବେ ସେ ଜାଣିବ ମୁଗର ପାଞ୍ଜି ।

(୨୧) ଯହିଁ ଚାଷ, ତହିଁ ବାସ ।

(୨୨) ରୁଆ ଧାନ ଥୁଆ ।

(୨୩) ରାଶି ମୁଠି, ବିରି ଚଉଠି ।

(୨୪) ଲମ୍ବ ନଡ଼ିଆ, ଚକା ଗୁଆ ।

(୨୫) ଲମ୍ବ ଚାଷ, ଘରେ ଉପାସ ।

(୨୬) ଭୋଦୁଆ ବିଣ୍ଡି, ଅଶିଣ ଗୁଣ୍ଡି ।
(ଭୋଦୁଅ ମାସରେ ଧାନ କିଆରି ବଛା ହୋଇ ବଛା ଘାସର ବିଣ୍ଡି କିଆରିରେ ମଡାଯାଏ ଏବଂ ଆଶିଣ ମାସରେ ଟୁପୁ ଟୁପୁ ବର୍ଷା ହୁଏ, ତେବେ ଧାନ ଫସଲ ଭଲ ହୁଏ)

(୨୭) ଚାଷ ବାସରେ ନକର ହେଳା; ଅପ୍ରମୟେ ପଡ଼ିଲେ ରାଇଜ ଛାଡି ପଳା

(୨୮) ଚାଷି, ଲକ୍ଷ ପୋଷୀ

(୨୯) ଚାଷ ଯେବେ କରି ବସିବ, ସଙ୍ଗରେ ଥିବ ପୁଅ

(୩୦) ଚାଷ ତର ତର (ତରବର), ବଣିଜ ଧୀର (ମଠ) ।

(୩୧) ଝିଙ୍କାରି ବିଲରେ କଲେଣି ସ୍ୱର,
ଆରେ ଚଷା ଭାଇ ହୁଅ ତୁ ଖର ।
(ପହିଲି ଅସରା ବର୍ଷା ହେଲେ ବିଲରେ ଝିଣ୍ଟିକାମାନେ ବୋବାନ୍ତି; ଏହି ସମୟରେ ବିଲରେ ପହିଲି ଚାଷ କରିବା ବିଧେୟ)

(୩୨) ଥୋଡ଼ ବତିଶା ଫୁଲ ବାଇସା । (ଧାନ ଥୋଡ ଓ ଫୁଲ)

(୩୩) ବଙ୍କାଧାନ, ଯାକୁ ନେଇ ପାଣି ଯୋଡିରେ ବୁଣ ।

(୩୪) ପାହି ଚାଷ, ନାହିଁ ବାସ,
ଥାନୀ ଚାଷ, ଘରେ ବାସ ।

(୩୫) ଷାଠିଏ ଓଡ ଗୁଳା, ତହିଁର ଅଧ ମୂଳା,
ତହିଁର ଅଧ ଧାନ, ତହିଁର ଅଧ ପାନ,
ତେବେ ଖାଇବୁ ବଙ୍ଗଳା ପାନ ।
(ଆଖୁ ଫସଲ ପାଇଁ ୬୦ ଥର ଚାଷ, ମୂଳା ପାଇଁ ୩୦ ଥର ଚାଷ, ଧାନ ପାଇଁ ୧୫ ଥର ଚାଷ, ପାନ ପାଇଁ ୮ ଥର ଚାଷ ଲୋଡା ହୁଏ ।)

(୩୬) ଟଙ୍କା ଦରକାର ଥିଲେ ପୁଅ, ଚଇତ୍ର ମାସରେ ମକ୍କା ରୁଅ ।

(୩୭) ବୃଷ ସତର କାନେ ଶୁଣ, ଦୂବ ଚିରି ଧାନ ବୁଣ ।

(୩୮) ଆରେ ଚଷାଭାଇ ! ମୋ ବୋଲ ଶୁଣ !
ବେଳ ଥାଉଁ ଥାଉଁ ବୁଣିବୁ ଧାନ ।

(୩୯) ଧାନକୁ ମୂଳା, ଚାଷୁଣୀ ଧାଇଁଲେ ବାଳ ମୁକୁଳା ।

(୪୦) ଆଷାଢ଼ ମାସରେ ବତୁରି ଚାଷ ଅତି ଭାଗ୍ୟଥିଲେ ପାଇ
ଠିଆ ହୋଇ ବୁଣିଥିଲେ ବସି କରି ଖାଇ ।

(୪୧) ଆଠ ବିହୁଡ଼ା, ଷୋଳ କୋଡ଼ା ତେବେ ଖାଇବ ବାଇଗଣ ପୋଡ଼ା ।
(ଆଠ ଥର ବଛା, ଷୋଳଥର କୋଡା ହେଲେ ଭଲ ବାଇଗଣ ହୁଏ )

(୪୨) ଧୋଇଆ କଣେ, ମରୁଡିଆ ମାଣେ ।

(୪୩) ଦୋଳ ବାସି, ଜଳବାସି, ଅଗିବାସି
କି କରିବ ଖଡ଼ି ଘଷି ?

(୪୪) ଦୀର୍ଘହାତେ ପ୍ରତି ହାତେ ହିଡ ବାନ୍ଧିବ ଘାସ ସହିତେ
ଚଷାଭାଇ ମାନ୍‌ରେ, ଯହିଁ ପାଣି ତହିଁ ଧାନରେ ।

(୪୫) ଦେଖା ଦେଖି ଚାଷ, ଲଗା ଲଗି ବାସ ।

(୪୬) ଧାନ ଯାକରେ 'ମୋଟରା' (ଏକ ପ୍ରକାର ଲଘୁ ଧାନ )
ମଣିଷ ଯାକରେ ଛୋଟରା

(୪୭) ଧାନ ପାଣିକେ ସୁନା କାଣିକେ ।

(୪୮) ଗଜାବୁଣା ରଜା ।
(ବୁଆ ଛୋଟ ହୋଇଥିଲା ବେଳେ ବେଉଷଣ କଲେ ଧାନ ଭଲ ହୁଏ ।
ଧାନ ବାଲୁଙ୍ଗା ବାଡ଼ି ହୋଇଯାଏ ।)

(୪୯) ରୁଆ ଟାଣ ଧାନ, (ଅର୍ଥାତ୍ ରୁଆଧାନ ଥୁଆ)
ଛାଡ଼ ରୁଆ, ବେହୁଡ (ବେଉଷଣ କରିବା) ବୁଆ
କି କରିବ ତୋର ଆଗ ରୁଆ ?

(୫୦) ଚନ୍ଦ୍ରମଣ୍ଡଳ ମଧରେ ତାରା ମେଘ ବରଷେ ମୂଷଳ ଧାରା ।

(୫୧) ଚାଷ ଭାଷିଲେ ମୂଳ ମୂଳ ବଣିଜ ଭାସିଲେ ଗଙ୍ଗାର ତୁଳ ।

(୫୨) ହାତ ଚାଷ ପୂରା ଚାଷ ଭାଗ ଚାଷ କଲେ ଅଧା ନାଶ ।

(୫୩) ଛାଡ଼ ଚଉଦ ଚଷ ଚାରି କରଷଣ କର କୃଷି କିଆରୀ ।
ଉଚ୍ଚ ଉଚ୍ଚ ହିଡ଼ ଦେ, ଚାରି ଚଉଦ ବୁଝି ନେ ।
(ଚଉଦ ଓଡ଼ ଚାଷ ନହେଲେ, ଚାରି ଓଡ଼ କର । ବଡ଼ ବଡ଼ ହିଡ଼ ଦେଇ ପାଣି
ଅଟକାଅ । ତାହାହେଲେ ଖର୍ଚ୍ଚର ଚାରିଗୁଣ ଆୟ ହେବ)

(୫୪) ଚାହୁଁ ଚାହୁଁ ଗଲା ଜ୍ୟେଷ୍ଠ କଞ୍ଚା ଅଳସରେ ଚଷା ନଷ୍ଟ ।
(ଜ୍ୟେଷ୍ଠ ଶେଷ ସୁଦ୍ଧା ବର୍ଷା ଅଭାବରୁ, ଯେଉଁ ହଳ ହୁଏ ସେଥିରେ ଭଲ ଫସଲ
ହୋଇପାରେ ନାହିଁ । ଚଷାର ସମୟ ବସି ବସି କଟେ )

(୫୫) ଗହିରୀ ବିଲକୁ 'କୋଇଲି ବାଇ' ବଢ଼ିପାଣି ହେଲେ ନଯାଏ ଧୋଇ ।
('କୋଇଲି ବାଇ' ଏକ ଜାତୀୟ ଧାନ )

(୫୬) ଖୁର୍ ଖାର୍ ବୁଣ୍ , କାହାରି କଥା ନ ଶୁଣ୍ ।

(୫୭) ଗଜା ମରୁଡ଼ିରେ ସବୁ ଯାଏ ଖେତ ମରୁଡ଼ିରେ ବିହନ ପାଏ ।

(୫୮) କାର୍ତ୍ତିକ ସାତ, ମଗୁଶୀର ଆଠ ଓଡିଆନ୍ତ (ପ୍ରବଳ ଝଡ଼ବର୍ଷା) ଯାଏ ବାଟ ବାଟ
ଓଡ଼ିଆନ୍ତ ଯଦି ରୁଷେ ପାକା (ପାଚିଲା)ଧାନ ଘରକୁ ନ ପଶେ ।
(କାର୍ତ୍ତିକ ସାତ, ମଗୁଶୀର ଆଠରେ ଝଡବର୍ଷା ହେଲେ ଫସଲର ସର୍ବନାଶ ହୁଏ)

(୫୯) ଆଷାଢେ ରୁଏଁ ବଲକେ ଶ୍ରାବନେ ରୁଏଁ ଫଲକେ
ଭାଦ୍ରବେ ରୁଏଁ ତୁଷକେ ଆଶ୍ୱିନେ ରୁଏଁ କସକେ । (ପଶ୍ଚିମ ଓଡ଼ିଶା )
(ଆଷାଢରେ ରୁଇଲେ ଧାନର ବଳ ବଢ଼େ, ରୋଗ ତାର କ୍ଷତି କରିପାରେ ନାହିଁ ।
ଶ୍ରାବଣରେ ରୁଇଲେ ଭଲ ଫଳ ହୁଏ । ଭାଦ୍ରବରେ ରୁଇଲେ ଚଷୁ ବଢେ,ଆଶ୍ୱିନରେ
ରୁଇବା ନିଷ୍ଫଳ)

(୬୦) ଆଷାଢେ ରୁଏଁ କ୍ଷେତକୁ , ଶ୍ରାବଣରେ ରୁଏଁ ପାଟକୁ ।
(ସାଧାରଣ ଜମିକୁ ଆଷାଢ଼ରେ ଏବଂ ପାଟ, ଯୋଡ଼ ବା ଖାଲୁଆ ଜମିକୁ
ଶ୍ରାବଣରେ ରୁଇଲେ, ଭଲ ଧାନ ହୁଏ)

(୬୧) **ଧାନ ରୁଆ ସମ୍ପର୍କରେ**
ମିଥୁନ ଛଡା (ଆଷାଢ଼ ମାସରେ ଦୂର ଦୂର ଛଡା ଧାନ ରୋଇବ)
କକଡ଼ା ହତା (ଶ୍ରାବଣ ମାସରେ ହାତେ ଛାଡ଼ି ଛାଡ଼ି ରୋଇବ)
ସିଂହ ଚଉଠା (ଭାଦ୍ରବ ମାସରେ ଚାରିଆଙ୍ଗୁଳି ଛାଡ଼ି ଛାଡ଼ି ରୋଇବ)
କନ୍ୟେ ନିଘଞ୍ଚନ ରୋ, (ଆଶ୍ୱିନ ମାସରେ ନିଘଞ୍ଚଭାବେ ରୋଇବ)
ତୁଳାରେ (କାର୍ତ୍ତିକ ମାସରେ) ରୋଇଲେ ମୂଳରେ ଫଳେ ।
ତାକୁ ବିଡ଼ି ବିଡ଼ି କି ଥୋ (ବଳଦ ଆଗରେ ଥୋ)

(୬୨) ଅଇଲାରେ ଡେଙ୍କା ଶ୍ରାବଣ, ଭାଦ୍ରବ ତିରିଶ ଦିନ;
ଆଶ୍ୱିନ ମାସର ଗହଳା ଗହଳି, କାର୍ତ୍ତିକେ ପାଇବ ଦିନ ।

(୬୩) ଚନ୍ଦ୍ରମଣ୍ଡଳ ମଧରେ ତାରା, ମେଘ ବରଷଇ ମୂଷଳ ଧାରା ।

(୬୪) ମନ୍ଦ ମନ୍ଦ ପୂବେଇ ବାଆ, କୋଡ଼ା କୋଡ଼ା ଶାଆ;
ଶଶୁରକୁ ବୋଲ ବାନ୍ଧୁ ଓଳି, ଆଜି ନବର୍ଷୁ ବର୍ଷିବ କାଲି ।

(୬୫) ଆଣରେ ପିଲାଏ ମୂଷାମାଟି, ମେଘ ଯାଉ ଫସର ଫାଟି ।

(୬୬) ନ ବରଷଇ କଳାମେଘ, ବରଷଇ ଧଉଳିଆ
ନ ପୋଷଇ ଛାପଚିକ୍‌ଣିଆ, ପୋଷଇ ଖଉରିଆ ।

(୬୭) ଗରଜିଲା ମେଘ ବରଷେ ନାହିଁ, ଭୁକିଲା କୁକୁର କାମୁଡେ ନାହିଁ ।

(୬୮) କାର୍ତ୍ତିକ ବରକ୍ଷା ହୀନିମାନ, ମଗୁଶିରରେ ଲୋକସାନ ।
ପୁଷ ବରକ୍ଷା ହତଶିରୀ, ମାଘ ବରକ୍ଷା ଗୁଣ ଭାରୀ ।

(୬୯) କକଡା (ଶ୍ରାବଣ) ବରଷା ମହୀରେ ସାର,
ମିଥୁନ (ଆଷାଢ଼) ବରଷା ନଈରେ ଧାର ।

(୭୦) ଶ୍ରାବଣ ଧୋଇ ବାଧଇ ନାହିଁ, ଭୋଦୁଅ ଧୋଇ କିଛି କିଛି ରହି,
ଅଶିଣ ଧୋଇ, ନିଷଳଙ୍କ ହୋଇ ।

(୭୧) ଧାରା ଶ୍ରାବଣରେ ଦିନେ ବର୍ଷା ନ ହେଲେ, ଲକ୍ଷେ ଭରଣ୍ ଧାନ
ତୁଟି ହୁଏ (ଲୋକଙ୍କର ବିଶ୍ୱାସ)

(୭୨) ଯେବେ ବରଷେ ମାଘର ଶେଷ, ଧନ୍ୟ ସେ ରାଜା ଧନ୍ୟ ସେ ଦେଶ ।
(ମାଘ ଶେଷରେ ବର୍ଷା ହେଲେ ଆଗାମୀ ବର୍ଷ ଧାନ ଫସଲ ଭଲ ହୁଏ ।)

(୭୩) ଶୁଖା ଶ୍ରାବଣ, ଧୂଳିଆ ଭୋଦୁଅ, ଆଶିଣ ମାସରେ ନ ଲାଗଇ କାଦୁଅ ।
କାର୍ତ୍ତିକ ମାସରେ ବାଆ ବରଷା, କ୍ଷେତ ଛାଡିକରି ପଳାଏ ଚଷା ।

(୭୪) ଶ୍ରାବଣ ମାସର ଆଦି ଚଉଠି, ଚାରି ଦିଗୁଁ ଯେବେ ମେଘ ନ ଉଠି ।
ଦକ୍ଷିଣ ଦିଗରୁ ବହଇ ବାଆ, ହଳବଳ ଧରି ଦେଶାନ୍ତର ଯା ।

(୭୫) ବ୍ରାହ୍ମଣୀ ହାତରେ ଅଢ଼ା ପଡିଛି ।
(ଜ୍ୟୋତିଷ ମତରେ ଯେଉଁ ବର୍ଷ ଶନିଗ୍ରହ, ମିଥୁନ, କନ୍ୟା, ଧନୁ, ମୀନ

ରାଶିରେ ଥାଆନ୍ତି, ସେ ବର୍ଷ 'ଅଢା' ଅର୍ଥାତ୍ ପୃଥିବୀକୁ ଶସ୍ୟ ଦେବାର ଭାର ସାବିତ୍ରୀ ବା ବ୍ରାହ୍ମଣୀ ହାତରେ ରହେ ଓ ତହିଁର ଫଳରେ ମହର୍ଗ ପଡେ ।)

(୭୬) ବିଶ୍ ବାଇଶ୍ ମେ ଯବ୍ ନେହିଁ ପୋତା, ତବ୍ ନେହିଁ ପୋତା;
ପୁଷ୍ ମାଘମେଁ ଯୋ ନେହିଁ ଖାତା, ସୋ ନେହିଁ ଖାତା;
ଚୈତ ବୈଶାଖ୍‌ମେଁ ଯୋ ନେହିଁ ଶୋତା, ସୋ ନେହିଁ ଶୋତା;
ଆଷାଢ଼ ଶ୍ରାବନ୍‌ମେଁ ଯୋ ନେହିଁ ରୋତା, ସୋ ନେହିଁ ରୋତା । (ହିନ୍ଦୀ)

(୨୦/୨୨ ବର୍ଷ ମଧ୍ୟରେ ପୁଅ ନ ହେଲେ ଆଉ ପୁଅ ହେବାର ସମ୍ଭାବନା ନାହିଁ । ପୁଷ ମାଘରେ ଯେ ନିଜର କୃଷି ଉପାର୍ଜିତ ଅନ୍ନ ଖାଇ ନପାରେ, ସେ ବର୍ଷ ସାରା ଦୁଃଖୀ । ଚୈତ୍ର ବୈଶାଖରେ ଯେଉଁ କୃଷକ ବିଶ୍ରାମ ନ ପାଏ ତାକୁ ଆଉ ବିଶ୍ରାମ ସମୟ ମିଳେ ନାହିଁ । ଆଷାଢ଼ ଓ ଶ୍ରାବଣରେ ଯେଉଁ କୃଷକ ଧାନ ନ ରୁଏ, ସେ ଆଉ ଧାନ ରୋଇ ପାରେନାହିଁ ।

(୭୭) ବୁଆ ଶୁଖିଲେ ଥୋଇବୁ କାହିଁ, ରୁଆ ଶୁଖିଲେ ପାଇବୁ କାହିଁ ।

(ବୁଣା ହୋଇଥିବା ଧାନ ଗଛ, ବୁଆ ଅବସ୍ଥାରେ ଗଛର ମୂଳ ଶୁଖିଲା ରହିଲେ ଧାନ ଭଲ ଫଳେ । କିନ୍ତୁ ଧାନ ରୁଆ ହୋଇଗଲେ ଧାନ ରୁଆ ମୂଳରେ ପାଣି ନ ରହିଲେ ଗଛ ମରିଯାଏ ।)

(୭୮) ବୈଶାଖ ପ୍ରଥମ ଦିନରେ ବୃଷ୍ଟି, ବିଆଳି ଧାନ୍ୟରେ ହୁଏ ସୃଷ୍ଟି ।
ଉତ୍ତର ବାଆ ବଡ଼ ମନ୍ଦ, କେହି ନ ଜାଣନ୍ତି ତାର ଛନ୍ଦ ।
କାର୍ତ୍ତିକେ ବୃଷ୍ଟି ହେଲେ ଊଣା, ଧାନ ଫଳଇ ଦୁଇ ଗୁଣା ।

(୭୯) କକଡ଼ା (ଶ୍ରାବଣ) କଣିଆଁ ବହିଲା ବାଆ,
ମୂଳ ନେଉଟାଇ ଦିଅଲୋ ମାଆ ।

(କକଡ଼ାରେ (ଶ୍ରାବଣ) କଣିଆଁ ହୋଇ ପବନ ବହିଲେ ଘୋର ବର୍ଷା ହୁଏ)

(୮୦) ଜ୍ୟେଷ୍ଠେ ଝାଞ୍ଜି ନାହିଁ ବିନ୍ଦୁ ପତନ, ଆଷାଢ଼େ ବରଷା ଦିନକୁ ଦିନ ।
ଧରା ଶ୍ରାବଣରେ ଘୋର ବରଷା, ଭାଦ୍ରବ ମାସରେ ଫସର ଫସା,
କାହିଁରେ ଧାନ ସାଇତିବୁ ଚଷା ।

(୮୧) ଧୂଳିଆ ଗୁଣ୍ଡିଚା, କାଦୁଆ ଗହ୍ମା,
ଚଷା ବୋଲେ ଧାନ ହାଟକୁ ନେମା (ନେବା)।
(ଗୁଣ୍ଡିଚା ସମୟରେ ବର୍ଷା ନହୋଇ, ଗହ୍ମା ପୂର୍ଣ୍ଣମୀକୁ ବର୍ଷା ହେଲେ ଧାନ ଫସଲ ଭଲ ହୁଏ।)

(୮୨) ମାଘ ବରଷା, ମା ପରଷା।

(୮୩) ମାଘ ବରଷେ, ସୁନା ଖସେ; ଚଷାର ମାଇପ ଖିଲ୍ ଖିଲ୍ ହସେ।
ପୁଷେ ବରଷେ, ସର୍ବନାଶେ।
(ପୌଷ ମାଘ ମାସରେ ଚଷା ଘରେ ଆନନ୍ଦ ଉତ୍ସବ ହୁଏ, କିନ୍ତୁ ପୌଷରେ ବର୍ଷା ହେଲେ ଚଷାର ସର୍ବନାଶ ଘଟେ)

(୮୪) ଅଣି. ଗରଗଡ, ନଉ ବାଲୁଙ୍ଗା।
(ଗରଗଡ ଅଣି ଦିନରେ ଓ ବାଲୁଙ୍ଗା ନବେ ଦିନରେ ପାଚେ)

(୮୫) କାର୍ତ୍ତିକେ ନଥାଏ ଅଫୁଲା, ମାର୍ଗଶୀରେ ନ ଥାଏ ଅପାଚିଲା।
(କାର୍ତ୍ତିକ ମାସରେ ସବୁଧାନ ଥୋଡ଼ ହୋଇଯାଏ। ମାର୍ଗଶୀରରେ ସବୁ ଧାନ ପାଚେ)

(୮୬) ଆଠହାତ ଅନ୍ତର-ଦେଢ଼ହାତ ଗାତ, ଜ୍ୟେଷ୍ଠ ମାସରେ କଦଳୀ ପୋତ
ପତ୍ର ଖଣ୍ଡିକରେ ନ ଦେବୁ ହାତ, ମଲା ମୂଳ ଖୋଳି ମାଟିରେ ପୋତ
ଖରାଦିନରେ ଯେ ତେଣ୍ଡିକୁ ପାଣି, ପୁଆ କାଟୁଥିବ ସମୟ ଜାଣି
ଚାଖଣ୍ଡେ ଛାଡ଼ିଣ ଭାଙ୍ଗିବୁ ଭଣ୍ଡା, ତେବେ ଯେ ଦେଖିବୁ କଦଳୀ ପେଣ୍ଡା

(୮୭) କୁମ୍ଭମାସରେ ଯେ ତାରା ରୋହିଣୀ ଆଗତ ବର୍ଷର ବିଷୟ ଜାଣି
ସପ୍ତମୀ ଅଷ୍ଟମୀ ତିଥିରେ ଶସ୍ୟ ନବମୀରେ ବଢ଼ି ଦଶମୀ ନାଶ।

(୮୮) ଘର ଆଗରେ ନ ରଖିବ ବେତ, ତେନ୍ତୁଳି, ତାଳ
ଦକ୍ଷିଣେ ରୋପିବ ନିମ,
ଉତ୍ତରରେ ରୋପିଲେ କଦଳୀ ସଜନା
ସମୟକୁ ଦେବ କାମ।

(୮୯) ଆଗେ ତେନ୍ତୁଳି ପଛେ ତାଳ, ଘର ଗୁସିଆଁର ପୂରିଲା କାଳ ।
(ବାସଗୃହର ଦାଣ୍ଡ ପାଖରେ ତେନ୍ତୁଳି ଗଛ ଓ ପଛଆଡ଼େ (ବାରିଆଡ଼େ) ତାଳଗଛ ଲଗାଇବ ନାହିଁ )

(୯୦) କଦଳୀ ପୁଅ ବାଉଁଶର ନାତି, ଆପଣା ଇଚ୍ଛାରେ ବଢ଼ାନ୍ତି ଜାତି ।

(୯୧) କଦଳୀ, ବାଉଁଶ, କିଆ, ଏ ତିନିରୁ ନାହିଁ ପରଖିଆ ।
(ଏମାନେ ପାଖ ଗଛରୁ ସାର ସଂଗ୍ରହ କରି ବଞ୍ଚନ୍ତି )

(୯୨) କନ୍ୟେ (ଆଶ୍ୱିନ) କଦଳୀ, ମିଥୁନେ (ଆଷାଢ଼) ଆମ୍ବ ।

(୯୩) ଜ୍ୟେଷ୍ଠେ କଦଳୀ, ଆଷାଢ଼େ କିଆ,
ପୋତ ନ ପୋତ ହୁଅଇ ଠିଆ ।

(୯୪) ତେଙ୍ଗା ନଡ଼ିଆ, ବାଙ୍ଗର ଗୁଆ, ମଝି ମଝିକିଆ ତାଳ;
ମଞ୍ଜି ଲଗାଇ ଗଛ କଲେ ଫଳୁଥିବ କାଳକାଳ ।

(୯୫) ନଡ଼ିଆ ଲଗେଇ ବଙ୍ଗଳା ଯା, ଗୁଆ ଲଗେଇ ଘରେ ବସିଥା ।
(ନଡ଼ିଆ ଗଛ ଯତ୍ନ ନକଲେ ବଢ଼େ, କିନ୍ତୁ ଗୁଆ ଗଛ ଯତ୍ନ ଖୋଜେ)

(୯୬) ପଣା (ମହା ବିଷୁବ ପଣା ସଂକ୍ରାନ୍ତି), ଆମ୍ବ ପାଚେ ବଣା କଣା ।

(୯୭) ଫାଲଗୁନରେ ଅଗ୍ନି ଚଇତ୍ରେ ମାଟି, ବାଉଁଶ କହେ ମୁଁ ଶୀଘ୍ର ଉଠି ।

(୯୮) ଗୁଆ ନାରିକେଳ ଚାରା ତୁ ରୁଅ ଆମ୍ବ ପଣସକୁ କେଭେ ନ ରୁହ ।

(୯୯) ନାରିକେଳ ଗଛରେ ଛାଇ, ଯେମନ୍ତ ନ ପଡିବ କର ଭାଇ
ସଫା କରିବୁ ତାରି ମୂଳ, ଖାଇବୁ ମନଇଚ୍ଛା ଫଳ ।

(୧୦୦) ନଡ଼ିଆ ମୂଳରେ ଦିଅ ଚିଟା, ଗଛ ହେବ ବହୁତ ମୋଟା
ଶୀଘ୍ର ଶୀଘ୍ର ଧରେ ଗୋଟା ।

(୧୦୧) କଦଳୀ ଲଗାଇ ଭାଦ୍ରବ ମାସେ ନାଶ ହେଲେ ଲଙ୍କା ପତି ସର୍ବଂଶେ

(୧୦୨) ଯେବେ ରୋପିବ ଫଗୁଣେ କଳା ବାର ମାସ ହୁଏ ସୁଫଳା ।
(କଳା-କଦଳୀ)

(୧୦୩) ନଡ଼ିଆକୁ; ନ ଅଡ଼ିଆଁ ଛଡ଼ା ଲଗାଅ ତାକୁ
(ନଡ଼ିଆ ଗଛ ଅଠର ହାତ ଲେଖାଏଁ ଛଡ଼ାରେ ପୋତିବା ବିଧେୟ)

(୧୦୪) କାନ୍ତାରୀ, ରୂପଖାରି
ଚୋବାଇ ଖାଇବା ରୂପ ଦେଖାଇବା
ବହୁଫଳ ଦେବା ଗୁଣେ (କେହି) ନୁହେଁ ସରି ।
(କାନ୍ତାରୀ ନାମକ ଆଖୁ ସବୁ ଆଖୁଠାରୁ ଶ୍ରେଷ୍ଠ )

(୧୦୫) ଜାମୁ, ଜଡାଙ୍ଗ, କପାଝଟି, ଯାକୁ ନ କରିବ ଦାନ୍ତ କାଠି;
ଯେବେ କରିବ ବଳେ, ତେବେ ପକାଇବ ଜଳେ ।

(୧୦୬) ବଙ୍ଗ (ଏକ ପ୍ରକାର ଔଷଧ), ନିକି ବଢ଼ାଏ ଅଙ୍ଗ,
(ବଙ୍ଗ ଭସ୍ମ ଦ୍ୱାରା ଶରୀର ବଳିଷ୍ଠ ଓ ପୁଷ୍ଟ ହୁଏ)

(୧୦୭) ଦକ୍ଷିଣା ପବନ ସବୁରି ହିତ ଉତ୍ତରା ପବନ ଆଣଇ ଶୀତ
ପୁବେଇ ପବନ ଧାନକୁ ଭଲ ପଶ୍ଚିମା ପବନ ଜରର ମୂଳ
ଈଶାଣ ପବନ ମାଛ ମରାକୁ ଆଗ୍ନେୟ ପବନ ଆଖି ଧରାକୁ
ନୈରତ ପବନ ରବିକୁ ଭଲ ବାୟବ ପବନ ବରଷା ଭଲ ।

(୧୦୮) କୁଆ ବୋବାଏ ଚାଳେ ନ ବସେ, ତାରା ବୁଡ଼ିଯାଏ ରୁମ ନ ଦିଶେ,
ତାକୁ ବୋଲିବ ଉଷା,
ସବୁ ଗ୍ରହଯାକ ଥାଇ ବୋଇଲେ ଆମେ ସେତେବେଳେ ମୂଷା
(ଉଷା ସମୟରେ ଯାତ୍ରା ଶୁଭ, ସେତେବେଳେ ଗ୍ରହଦୋଷ ଲାଗେନାହିଁ)

(୧୦୯) ତେଲି, ଦେଖି ନ ଯାଅ ପେଲି ।
(ଅନୁକୂଳ ଯାତ୍ରା କରିବା ସମୟରେ ଆଗରେ ତେଲବୋଝ
ଦେଖିଲେ ଅମଙ୍ଗଳ ଘଟେ । ତେଣୁ ଅନୁକୂଳ ନ କରି ଫେରି ଆସିବ)

(୧୧୦) ଚୈତ୍ରେ ଗୋଟା, ବୈଶାଖେ ମୁଠା
ଜ୍ୟେଷ୍ଠେ ହାରେ, ଆଷାଢ଼େ ଭାରେ ।
(ମାସ ଅନୁସାରେ ମଲ୍ଲୀଫୁଲର ମହକ)

✷

# ଖନାବଚନ

## ଯାତ୍ରାକାଳର ଶୁଭାଶୁଭ

(୧) ଯାତ୍ରାକାଳେ ଯେବେ ଛିଙ୍କ ପଡଇ ନିକର ।
ଅଥବା ପଲ୍ଲୀ ପତନ ହୁଅଇ ତତ୍କାଳ ।
ମହାଶୁଭ ଫଳ ବୋଲି ଜାଣିବ ନିୟତ ।
ଲାଭ ହେବ ଅଷ୍ଟଗୁଣେ ମହା ସୌଖ୍ୟଜାତ ।
ଏହି ବେଳେ ଦେଖି ଯେବେ ଯାତ୍ରା ଆଚରିବ ।

(୨) ରବି ଦଶଘଡି, ସୋମ ଚଉଠା, ବାର ମଙ୍ଗଳ, ପଣ୍ଡିତ (ବୁଧ) ଷଠା,
ଗୁରୁ ଚଉଦ, ମନ୍ତ୍ରୀ (ଶୁକ୍ର) ଆଠ, ଉଦୟ ଅସ୍ତ, ଶନିର ଘାଟ ।
(ସପ୍ତାହର ବାରମାନଙ୍କର ବାରବେଳା ନିର୍ଣ୍ଣୟ । ଏହି ସମୟରେ ଯାତ୍ରା ଅନୁକୂଳ କଲେ ଅମଙ୍ଗଳ ଘଟେ ।)

(୩) ବିଷ୍ଟି, ବ୍ୟତିପାତ, ଆଉ ବୈଧୃତି ଏତିନି;
ସଂକ୍ରାନ୍ତିରେ ଯାତ୍ରା କଲେ ହୁଅଇଟି ହାନି ।
ଯଦା ମୁସ୍ତରୀ କର୍କଟେ ବା କମାଣେ
କଣା କୁଜା ଦୋନୋ ଅବା ମାଲ୍‌ଖାନେ ।
ତଦା ଜ୍ୟୋତିଷାନେ ନଗଣେ୍ୟ ନ ମାନେ,
ତଦା ବାଳକେ ଉବେଦ୍ ରାଜମାନେ ।
(ଯଦି ବାଳକର ଯାତକରେ ବୃହସ୍ପତି କକଡା ବା ଧନୁ ରାଶିରେ ଥାଆନ୍ତି ଓ ଶୁକ୍ର ଏବଂ ମଙ୍ଗଳ ଧନୁ ଗୃହରେ ରହନ୍ତି, ତେବେ ଉକ୍ତ ବାଳକ ରାଜାହୁଏ ।

(୪) ବାଆଁ ଶିଆଳ, ଯାତ୍ରା ଅନୁକୂଳ କିଛି ନ ଭାଳ ।
ବାଆଁଠାରୁ ଡାହାଣ ଭଲ, ଯେବେ ଫେରି ଚାହେଁ (ବା) ଲେଉଟି ଯାଏ ।
(ବିଲୁଆକୁ ଆପଣାର ବାଆଁ ପାଖରେ ଦେଖି ଯାତ୍ରା କଲେ ଶୁଭ । ବାଆଁ ପାଖରେ ବିଲୁଆ ନ ଥାଇ ଡାହାଣ ପାଖରେ ଯାଉଥିବ; ଅଥଚ ତୁମ ଆଡକୁ ଫେରି ଚାହିଁବ; ଅଥବା ଲେଉଟି ଯିବ, ତେବେ ଏ ଅନୁକୂଳ ବାଆଁ ବିଲୁଆଠାରୁ ଭଲ ।)

(୫) (କ) ନକୁଳ କୂଳ ପୁରତେ ଚାହିଁ, ଚିତ୍ତ ଉସତରେ ସୀମା ନାହିଁ;
ବାମେ ଶିବ ଶିବା କୁମ୍ଭ ଦେଖି ଦମ୍ଭ କୁମ୍ଭୀ କୁମ୍ଭସ୍ତନ ହୃଦେ ବହି
ଦକ୍ଷିଣରେ ଦ୍ୱିଜ ଗଜ ଗୋମିଥୂନ ମୃଗ ଚରେ ।

(ଖ) ଯାତ୍ରା ଅନୁକୂଳ ସମୟରେ ନେଉଳ ଦେଖିଲେ ଶୁଭ ଓ ମଙ୍ଗଳ ।
ସାପ ଦେଖିଲେ ଅନୁକୂଳ ଅଶୁଭ ଓ ଅମଙ୍ଗଳ ।

(ଗ) ଛଅ, ନଅ, ତେର, କେବେ ନ ଯିବ ଘର !
ଯେବେ ଆସିବ ଘର, ତେବେ କରିବ ଢର ।
(ଘରୁ ଆସିଥିବା ୬ଷ୍ଠ, ୯ମ ଓ ୧୩ଶ ଦିନରେ ବିଦେଶରୁ ଘରକୁ ଫେରିବ ନାହିଁ ।)

(୬) ମାର୍ଜାର ସମର ମହାଘୋର, ଧରାଧରି ଯେବେ ସହୋଦର ।
ନିଜର ଯୁବତୀ ରଜୋବତୀ, ଜନନୀର ଦୁଃଖ ଥିଲେ ମତି ।
ସୂକ ମୃତକ ଆଦି ଦୋଷ, ଅସମୟ ବୃଷ୍ଟି ନ ମିଳେ ବାସ ।
ଖନା ଡାକି କହେ ଶୁଣ ହେ ଭାଇ, ଏମନ୍ତ ଘଟିଲେ ନ ଯିବ କାହିଁ ।

(୭) ବାମେ ଥାଏ ଶିଆଳ ମଡ଼ା, କୁମ୍ଭ ଯୋଡ଼ା, ଅଜା ଘୋଡ଼ା ।
ଦକ୍ଷିଣେ ଗୋରୁ, ମୃଗ, ଦ୍ୱିଜ, ଶୁଭ ଚିହ୍ନ ମନରେ ହେଜ ।
ନକୁଳ ଶୁଭ ସର୍ବ ପାଖ, ଗୋରୁ ପୃଷ୍ଠେ କାକ ଦେଖ ।
ଖନା କହେ ଶୁଭ ଫଳ, ସାର ଅଟେ ଅନୁକୂଳ ।

## ତିଥି, ବାର, ମାସ, ଦିନ ଓ ଜନ୍ମନକ୍ଷତ୍ର ଗଣନା କ୍ରମେ ଯାତ୍ରାର ଶୁଭାଶୁଭ

(୮) ଯେଉଁଦିନ ଯାତ୍ରା କରିବ ସେଦିନର- ତିଥି, ବାର, ମାସ, ଦିନ ଓ ଯାତ୍ରାକାରୀର ଜନ୍ମନକ୍ଷତ୍ରର ସଂଖ୍ୟାକୁ ଏକତ୍ର ମିଶାଇ ୭ (ସାତ) ଅଙ୍କ ଦ୍ୱାରା ହରଣ କର । ଭାଗଫଳରେ ଆବଶ୍ୟକତା ନାହିଁ । ଭାଗଶେଷରୁ ଶୁଭାଶୁଭ ନିର୍ଣ୍ଣୟ ହେବ ଯଥା:- ଭାଗଶେଷ, ୧ (ଏକ) ରହିଲେ- ସକଳ ଶୁଭହୁଏ । ୨ (ଦୁଇ) ରହିଲେ - ପ୍ରଚୁର ଧନ ଲାଭ ହୁଏ । ୩ ( ତିନି) ରହିଲେ - ଶତ୍ରୁ କ୍ଷୟ ହୁଏ । ୪ (ଚାରି) ରହିଲେ ସକଳ କାର୍ଯ୍ୟ ସିଦ୍ଧି ହୁଏ । ୫ (ପାଞ୍ଚ) ରହିଲେ- କାର୍ଯ୍ୟରେ ସଂଶୟ ଜାତ ଓ ଅଳ୍ପ ଶୁଭ ହୁଏ । ୬ ( ଛଅ) ରହିଲେ -

ମରଣ ଦଶା ପଡେ । '୦' (ଶୂନ୍ୟ) ରହିଲେ - ବହୁତ ଦୁଃଖ ପଡ଼େ ।

(ବାରର ସଂଖ୍ୟା :- ରବିବାର-୧, ସୋମବାର-୨, ମଙ୍ଗଳବାର-୩, ବୁଧବାର- ୪ ଗୁରୁବାର-୫, ଶୁକ୍ରବାର-୬, ଶନିବାର-୭)

(ମାସର ସଂଖ୍ୟା :- ବୈଶାଖ-୧, ଜ୍ୟେଷ୍ଠ-୨, ଆଷାଢ-୩ , ଶ୍ରାବଣ-୪, ଭାଦ୍ରବ-୫, ଆଶ୍ୱିନ-୬, କାର୍ତ୍ତିକ-୭, ମାର୍ଗଶୀର-୮, ପୌଷ-୯, ମାଘ-୧୦, ଫାଲଗୁନ୍-୧୧, ଚୈତ୍ର-୧୨)

(ଜନ୍ମନକ୍ଷତ୍ର ସଂଖ୍ୟା :- ଅଶ୍ୱିନୀ - ୧, ଦ୍ୱିଜା-୨, କୃତ୍ତିକା-୩ , ରୋହିଣୀ-୪, ମୃଗଶିରା-୫, ଆଦ୍ରା-୬, ପୁନର୍ବସୁ-୭, ପୁଷ୍ୟା-୮, ଅଶ୍ଳେଷା-୯, ମଘା-୧୦, ପୂର୍ବାଫାଲ୍ଗୁନୀ-୧୧,ଉତ୍ତରାଫାଲଗୁନୀ-୧୨, ହସ୍ତା-୧୩, ଚିତ୍ରା-୧୪, ସ୍ୱତୀ-୧୫, ବିଶାଖା-୧୬, ଅନୁରାଧା-୧୭,ଜ୍ୟେଷ୍ଠା-୧୮, ମୂଳା-୧୯, ପୂର୍ବାଷାଢା-୨୦, ଉତ୍ତରାଷାଢା-୨୧, ଶ୍ରାବଣା-୨୨, ଧନିଷ୍ଠା-୨୩, ଶତଭିକ୍ଷା-୨୪, ପୂର୍ବଭାଦ୍ର-୨୫, ଉତ୍ତରଭାଦ୍ର-୨୬, ରେବତୀ-୨୭)

**(୯) ସୂର୍ଯ୍ୟ କିରଣ ଦ୍ୱାରା ସିଧା କାଠିର ଛାୟାରୁ ଯାତ୍ରାର ଶୁଭାଶୁଭ ସମୟ :**

ଭୂମି ଉପରେ ସଳଖ ଭାବରେ ୧୨ଆଙ୍ଗୁଳ କାଠି ପୋତିବ, ଯେପରି ସୂର୍ଯ୍ୟ କିରଣ ତା' ଉପରେ ପଡୁଥାଏ ।

''ରବିବାର'' ଦିନ -୨୦ ଆଙ୍ଗୁଳ; ''ସୋମବାର'' ଦିନ- ୧୬ ଆଙ୍ଗୁଳ; ''ମଙ୍ଗଳବାର'' ଦିନ- ୧୫ ଆଙ୍ଗୁଳ; ''ବୁଧବାର'' ଦିନ -୧୧ ଆଙ୍ଗୁଳ; ''ଗୁରୁବାର'' ଦିନ-୧୨ଆଙ୍ଗୁଳ; ''ଶୁକ୍ରବାର'' ଦିନ-୧୪ ଆଙ୍ଗୁଳ; ''ଶନିବାର'' ଦିନ-୧୩ ଆଙ୍ଗୁଳ; ଛାୟା ପଡ଼ିଲେ ଯାତ୍ରା ଶୁଭ ହୁଏ- ଧନ, ମାନ, ଯଶ ଆଦି ପ୍ରାପ୍ତ ହୁଏ । ଯାତ୍ରା ସମୟରେ ଯାତ୍ରାକାରୀର ଯଦି ଛିଙ୍କ ପଡ଼େ, କିମ୍ୱା ଉପରେ ତତ୍‌କ୍ଷଣାତ୍ ପଲ୍ଲୀ ପତନ (ଝିଟିପିଟି ପଡ଼େ) ହୁଏ, ତାହା ହେଲେ ଶୁଭ ଫଳ ସହିତ ଆଠଗୁଣ ଲାଭ ହୁଏ ।

## (୧୦) ପ୍ରଶ୍ନ ଦ୍ୱାରା ଯାତ୍ରାର ଶୁଭାଶୁଭ

(୧) ପ୍ରଶ୍ନ କର୍ତ୍ତାଙ୍କ (କେବଳ) ନାମର ଅକ୍ଷର ସଂଖ୍ୟା, (୨) ଉତ୍ତର କର୍ତ୍ତା (ଅର୍ଥାତ୍ ଗଣକ)ଙ୍କର (କେବଳ) ନାମର ଅକ୍ଷର ସଂଖ୍ୟା (୩) ପ୍ରଶ୍ନକର୍ତ୍ତା ଯେଉଁ ମାସରେ ପ୍ରଶ୍ନ କରୁଛନ୍ତି ସେଇ ମାସର ସଂଖ୍ୟା (୪) ଯେଉଁ ଦିନ ପ୍ରଶ୍ନ କରାଯାଉଛି ଉକ୍ତ ଦିନର ତିଥିର ସଂଖ୍ୟା (୫) ଯେଉଁ ଦିନ ପ୍ରଶ୍ନ କରାଯାଉଛି ଉକ୍ତ ଦିନର ନକ୍ଷତ୍ରର ସଂଖ୍ୟା (୬) ଯେଉଁଦିନ ପ୍ରଶ୍ନ କରାଯାଉଛି ଉକ୍ତ ଦିନ ଯେଉଁ ବାର ତାର ସଂଖ୍ୟା ।

ଏହି ଛଅ ପ୍ରକାର ସଂଖ୍ୟାକୁ ଏକତ୍ର ଯୋଗ କରି, ଯୋଗଫଳକୁ ୧୦ ଦ୍ୱାରା ଭାଗକର । ଭାଗଫଳରେ କିଛି ଆବଶ୍ୟକତା ନାହିଁ । ଭାଗଶେଷରୁ ହିଁ ଶୁଭାଶୁଭ ନିର୍ଣ୍ଣୟ ହେବ ଯଥା- ୧ (ଏକ) ରହିଲେ-ବିଶେଷ ଶୁଭ ଫଳ ହୁଏ । ୨ (ଦୁଇ)ରହିଲେ- କାର୍ଯ୍ୟ ନାଶହୁଏ । ୩ (ତିନି) ରହିଲେ- ଶୁଭ ସମାଚାର ପ୍ରାପ୍ତ ହୁଏ । ୪ (ଚାରି) ରହିଲେ- କାର୍ଯ୍ୟ ବିଫଳ ହୁଏ । ୫ (ପାଞ୍ଚ) ରହିଲେ - ଶୁଭ ସମାଚାର ପ୍ରାପ୍ତ ହୁଏ । ଛ (ଛଅ) ରହିଲେ-କାର୍ଯ୍ୟ ବିଫଳ ହୁଏ । ୭ (ସାତ) ରହିଲେ- ଶୁଭ ସମାଚାର ପ୍ରାପ୍ତ ହୁଏ । ୮ (ଆଠ) ରହିଲେ-କାର୍ଯ୍ୟ ନାଶ ହୁଏ । ୯ (ନଅ) ରହିଲେ- ବିଶେଷ ଶୁଭଫଳ ହୁଏ । '୦' (ଶୂନ୍ୟ)ରହିଲେ- ସର୍ବନାଶ ଘଟେ ।

## (୧୧) ଗ୍ରହ ମାନଙ୍କ ଅବସ୍ଥିତିରୁ ଶୁଭାଶୁଭ

(୧) ଏକ ରାଶିରେ ଚାରିଟି ଗ୍ରହ ଏକତ୍ର ରହିଲେ- ରାଜଯୋଗ ପ୍ରାପ୍ତି କରାଏ । ସମସ୍ତ କାର୍ଯ୍ୟକୁ ସିଦ୍ଧି କରାଏ । ବିଚକ୍ଷଣ ବୁଦ୍ଧି ହୁଏ । ଭାଗ୍ୟବନ୍ତ ହୋଇ ସର୍ବଦା ଶୁଭଫଳ ଭୋଗ କରେ ।

(୨) ଏକରାଶିରେ ତିନୋଟି ଗ୍ରହ ରହିଲେ ଓ ତନ୍ମଧ୍ୟରୁ ଗୋଟିଏ ଯେବେ ବୃହସ୍ପତି ହୁଏ- ରାଜତୁଲ୍ୟ ମତି ପ୍ରକଟିତ ହୁଏ । ଧନ ସମ୍ପଦ ଆପଣାଛାଏଁ ତା ପାଖକୁ ଆସେ ।

(୩) ମକରରେ "ମଙ୍ଗଳ", ସିଂହରେ "ଚନ୍ଦ୍ର" ରହିଲେ- ରାଜ ସମ୍ମାନ ଲାଭ କରେ । ସମସ୍ତ କାର୍ଯ୍ୟ ସିଦ୍ଧି ହୁଏ । ଆନନ୍ଦରେ ଚିରକାଳ ସୁଖ ଭୋଗ କରେ ।

(୪) ଦଶମରେ ''ବୃହସ୍ପତି'' ରହିଲେ- ବହୁ ପୂର୍ଣ୍ଣବନ୍ତ ହୁଏ । ଧନ ସମ୍ପଦ ସର୍ବଦା ପରିପୂର୍ଣ୍ଣ ଥାଏ । ମହାସୁଖ ଭୋଗ କରେ ।

(୫) ସପ୍ତମରେ ''ବୃହସ୍ପତି'' ରହିଲେ- ବାଲ୍ୟାବସ୍ଥାରୁ ଗୀତ, ନୃତ୍ୟ, ଓ ବାଦ୍ୟରେ ଅନୁରକ୍ତ ରହେ । ନାନା ବିଦ୍ୟାଭାସ କରେ । ଦୀର୍ଘାୟୁ ହୁଏ ।

(୬) ଦୁଇ ପାଖରେ ପାପ ଗ୍ରହ ତନ୍ମଧ୍ୟରେ ''ବୃହସ୍ପତି'' ରହିଲେ- ଭାଗ୍ୟଦୋଷରୁ ରାଜା ନହେଲେ ମଧ୍ୟ, ଧନ ସମ୍ପତି ପ୍ରାପ୍ତ ହୁଏ । ଲୋକଙ୍କ ଦ୍ୱାରା ପୂଜିତ ହୁଏ । ଜ୍ଞାନ ବଳରେ ସମସ୍ତଙ୍କୁ ବଶିଭୂତ କରିପାରେ । ଧର୍ମ କାର୍ଯ୍ୟରେ ସର୍ବଦା ମତିଥାଏ ।

(୭) ଷଷ୍ଠରେ ''ଶନି'' ରହିଲେ- ମହାଦୋଷ ଭୋଗାଏ । ସୁଖପ୍ରାପ୍ତ ହେଲେ ବି କ୍ଷଣସ୍ଥାୟୀ ହୁଏ । ନିଜ ସ୍ତ୍ରୀର ମୃତ୍ୟୁହୁଏ ।

(୮) ନବମରେ ''ରାହୁ'' ରହିଲେ- ପୁରୁଷ ମହା ଭାଗ୍ୟବନ୍ତ ହୁଏ ।

(୯) ମିଥୁନ କିମ୍ବା କନ୍ୟାରେ ''ରାହୁ'' ରହିଲେ- ପୁରୁଷ ସ୍ୱାଧୀନ ବୃତ୍ତିରେ ଜୀବନଯାପନ କରେ । ପରାଧୀନ ହୁଏନାହିଁ ସୁଖଭୋଗ କରେ ।

(୧୦) ''ଚନ୍ଦ୍ର'' ''ବୁଧ'' ଓ ''ଶୁକ୍ର'' ଗୋଟିଏ ଘରେ ରହିଲେ- ଆବାଲ୍ୟରୁ ବହୁ ପୂଣ୍ୟ କର୍ମ କରି ଯଶଲାଭ କରେ ।

(୧୧) ଜନ୍ମ ଦିନରୁ ମେଷରେ ''ରବି'' ରହିଲେ- ଧନ ସମ୍ପଦରେ ପରିପୂର୍ଣ୍ଣ ହୁଏ । ମାନ, ଯଶ ଲାଭହୁଏ ।

(୧୨) ଜନ୍ମଦିନରୁ ବୃଷରେ ''ଚନ୍ଦ୍ର'' ରହିଲେ- ମୂର୍ଖ ହେଲେ ମଧ୍ୟ ବୁଦ୍ଧିରେ ବଳବାନ ହୋଇ ଜଗତଜିତା ହୁଏ । ସମସ୍ତଙ୍କର ପୂଜ୍ୟ ହୁଏ । ଶାସ୍ତ୍ରବିତ୍ ହୁଏ ଓ ଯଶକୀର୍ତ୍ତି ଅର୍ଜନ କରେ ।

## (୧୨) ଲଗ୍ନରେ ଗ୍ରହର ଅବସ୍ଥିତିରୁ ଶୁଭାଶୁଭ ନିର୍ଣ୍ଣୟ

(୧) ''ରବି'' ରହିଲେ- ମନୁଷ୍ୟ କ୍ରୋଧବନ୍ତ ହୁଏ । ତାକୁ ଅଗ୍ନିଭୟ ଥାଏ ।

(୨) ''ଚନ୍ଦ୍ର'' ରହିଲେ- ଦେହ ତଥା ବଦନ ସୁନ୍ଦର ହୁଏ ।

(୩) ''ମଙ୍ଗଳ'' ରହିଲେ- ଅଙ୍ଗହାନି ଘଟେ । ମିଥ୍ୟାବାଦୀ ହୁଏ । ମନ୍ଦ କପାଳ ପାଇଁ ଚିରଦିନ ଦୁଃଖ ପାଏ ।

(୪) ''ବୁଧ'' ରହିଲେ- କବି, ପଣ୍ଡିତ, ଓଦୀର୍ଘାୟୁ ହୁଏ । ଯଶ ମାନ ଲାଭକରେ । ଶରୀର ଆରୋଗ୍ୟ ରହେ ।

(୧୩) **ଲଗ୍ନର ସପ୍ତମରେ ଗ୍ରହ ଅବସ୍ଥାନରୁ ଶୁଭାଶୁଭ**

''ଶନି'' ରହିଲେ-ମନୁଷ୍ୟ ଛୋଟା ହୁଏ । ''ଚନ୍ଦ୍ର'' ରହିଲେ- ରାଜଦଣ୍ଡ ଭୋଗାଏ । ''ମଙ୍ଗଳ'' ରହିଲେ- ଅସ୍ତ୍ରଦ୍ୱାରା କ୍ଷତ ବିକ୍ଷତ କରାଏ । ''ବୁଧ''- ଧନ ବୃଦ୍ଧି କରାଏ । ''ଗୁରୁ'' କିମ୍ବା ''ଶୁକ୍ର'' ରହିଲେ ବହୁଧନ ପ୍ରାପ୍ତ ହୁଏ । ''ରାହୁ'' ଓ ''କେତୁ''ରହିଲେ- ପିତା ମାତାଙ୍କୁ ପିଡ଼ା ଦିଏ ।

(୧୪) ଯଦା ମୁସ୍ତରୀ କର୍କଟେ ବା କମାଣେ
କଣା କୁଚ୍ଛା ଦୋନୋ ଅବା ମାଲଖାନେ ।
ତଦା ଜ୍ୟୋତିଷିାନେ ନଗଣ୍ୟେ ନ ମାନେ,
ତଦା ବାଲକେ ଉବେଦ୍ ରାଜମାନେ ।

(ଯଦି ବାଳକର ଯାତକରେ ବୃହସ୍ପତି କକଡା ବା ଧନୁ ରାଶିରେ ଥାଆନ୍ତି ଓ ଶୁକ୍ର ଏବଂ ମଙ୍ଗଳ, ଧନୁ ଗୃହରେ ରହନ୍ତି, ତେବେ ଉକ୍ତ ବାଳକ ରାଜାହୁଏ)

(୧୫) **ଲଗ୍ନରେ ଗ୍ରହର ଅବସ୍ଥିତିରୁ ଶୁଭାଶୁଭ**

(୧) 'ରବି' ରହିଲେ - ମନୁଷ୍ୟ କ୍ରୋଧବନ୍ତ ହୁଏ । ତାକୁ ଅଗ୍ନିଭୟ ଥାଏ ।

(୨) 'ଚନ୍ଦ୍ର' ରହିଲେ - ଦେହ ତଥା ବଦନ ସୁନ୍ଦର ହୁଏ ।

(୩) 'ମଙ୍ଗଳ' ରହିଲେ - ଅଙ୍ଗ ହାନି ଘଟେ । ମିଥ୍ୟାବାଦୀ ହୁଏ । ମନ୍ଦକପାଳ ପାଇଁ ଚିରଦିନ ଦୁଃଖ ପାଏ ।

(୪) 'ବୁଧ' ରହିଲେ - କବି, ପଣ୍ଡିତ ଓ ଦୀର୍ଘାୟୁ ହୁଏ । ଯଶମାନ ଲାଭ କରେ । ଶରୀର ଆରୋଗ୍ୟ ରହେ ।

(୫) 'ବୃହସ୍ପତି' ରହିଲେ - ଧନ, ମାନ, ଯଶ, ଆୟୁ ବର୍ଦ୍ଧିତ କରେ । ସକଳ ବିଦ୍ୟାରେ ପ୍ରବୀଣ ତଥା ପଣ୍ଡିତ ହୁଏ ।

(୬) 'ଶୁକ୍ର' ରହିଲେ - ଧନବାନ ହୁଏ । କବି ଭାବରେ ବିଖ୍ୟାତ ହୁଏ । କଥାର ଚାତୁରୀରେ ଅନ୍ୟର ମନ ମୋହିତ କରେ ।

(୭) 'ଶନି' ରହିଲେ - ମନୋଭାବ ଦୁର୍ବଳ ହୁଏ ।

(୮) 'ରାହୁ' ରହିଲେ - ଶାରୀରିକ ପୀଡ଼ା ହୁଏ ।

(୯) 'କେତୁ' ରହିଲେ - ମହୋଦର ମାନଙ୍କୁ କଷ୍ଟ ଦିଏ ।

(୧୦) 'ରବି' ଓ 'ମଙ୍ଗଳ' ଏକାଠି ରହିଲେ - ଦନ୍ତାଘାତ ଘଟେ ଅର୍ଥାତ ହିଂସ୍ରଜନ୍ତୁଙ୍କ ଦ୍ୱାରା ବିନାଶ ଘଟେ (ଦେବତାମାନେ ସୁଦ୍ଧା ରକ୍ଷା କରିପାରିବେ ନାହିଁ)

(୧୧) 'ଚନ୍ଦ୍ର' ଓ 'ରାହୁ' ଏକାଠି ରହିଲେ (ଶୁଭଗ୍ରହମାନେ ଯଦି ତାଙ୍କୁ ନ ଦେଖାନ୍ତି)
- ପ୍ରଥମରୁ ବହୁ ଯତ୍ନରେ ବଢ଼ିଥିଲେ ମଧ ନୀଚ ଅନ୍ନ ଓ ଅମେଧ୍ୟ ପଦାର୍ଥ ଖାଇ ବିନାତିପାତ କରେ ।

## (୧୬) ଗଙ୍ଗା ମୃତ୍ୟୁ ଯୋଗ

(୧) ଅଷ୍ଟମରେ 'ବୃହସ୍ପତି' ସହିତ 'ରବି' ଏବଂ ଲଗ୍ନରେ 'ଚନ୍ଦ୍ର' କିମ୍ବା 'ଶୁକ୍ର' ରହିଲେ - ବ୍ୟକ୍ତି ଗଙ୍ଗା ମୃତ୍ୟୁ ଯୋଗପାଏ ।

(କଳିଯୁଗରେ ଗଙ୍ଗାତୀର୍ଥରେ ମୃତ୍ୟୁ ମହାପୁଣ୍ୟ ବୋଲି ଗଣ୍ୟ)

(୨) ଜନ୍ମ ନକ୍ଷତ୍ରର ସଂଖ୍ୟା, ଜନ୍ମତିଥିର ସଂଖ୍ୟା, ଜନ୍ମବାରର ସଂଖ୍ୟାକୁ ଏକତ୍ର ମିଶାଇ ତହିଁରେ 'ପାଞ୍ଚ' ସଂଖ୍ୟାକୁ ମିଶାଇଲେ ଯେଉଁ ଯୋଗଫଳ ହେବ ତାକୁ 'ତିନି'ରେ ହରଣ କର । ଭାଗଫଳରେ ଆବଶ୍ୟକତା ନାହିଁ । ଭାଗଫଳରୁ ଗଙ୍ଗାମୃତ୍ୟୁ ଯୋଗ ନିର୍ଣ୍ଣୟ ହୁଏ ।

ଭାଗଫଳ ୨ (ଦୁଇ) ରହିଲେ - ଗଙ୍ଗାମୃତ୍ୟୁ ଯୋଗ ।

ଭାଗଫଳ ୧ (ଏକ) କିମ୍ବା '୦' (ଶୂନ୍ୟ) ରହିଲେ - ସରୋବର କୂଳରେ ମୃତ୍ୟୁ ଯୋଗ ।

## (୧୭) ଚନ୍ଦ୍ରଗ୍ରହଣ ନିରୂପଣ ଓ ଗ୍ରହଣ ଦର୍ଶନର ଶୁଭାଶୁଭ

ଯେ ଯେ ମାସେ ଯେ ରାଶି, ତାହାର ସପ୍ତମେ ଥିଲେ ଶଶୀ
ସେଦିନ ଯଦି ହୁଏ ପୌର୍ଣ୍ଣମାସୀ, ଅବଶ୍ୟ ରାହୁ ଗ୍ରାସେ ଶଶୀ
ଦୁଇ, ତିନି, ପାଞ୍ଚ, ଛଅ, ଏକାଦଶ ଦେଖିନିଅ''

(ଯେ କୌଣସି ମାସର ରାଶିକୁ ଧରି, ସେହି ରାଶିରୁ ସପ୍ତମ (ସାତ) ଗଣନା କରିବ । ସେଇ ସପ୍ତମଦିନ ଯଦି ପୂର୍ଣ୍ଣିମା ହୁଏ, ତାହାହେଲେ ଉକ୍ତଦିନ ଚନ୍ଦ୍ରଗ୍ରହଣ ହେବ ।

ନିଜ ରାଶିଠାରୁ, ଦ୍ୱିତୀୟ, ତୃତୀୟ, ପଞ୍ଚମ, ଷଷ୍ଠ ଓ ଏକାଦଶରେ ଗ୍ରହଣ ଦର୍ଶନୀୟ; ବାକି ଏକ, ଚତୁର୍ଥ, ସପ୍ତମ, ଅଷ୍ଟମ, ନବମ, ଦଶମ ଓ ଦ୍ୱାଦଶମାନଙ୍କରେ ଗ୍ରହଣ ଦର୍ଶନ ଅଶୁଭ ।)

☛ ବର୍ଷର ନିମ୍ନଲିଖିତ ଆଠଟି ନିର୍ଦ୍ଦିଷ୍ଟ ଓ ବିଶିଷ୍ଟ ଦିନମାନଙ୍କରେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଅତି ନିଷ୍ଠାର ସହିତ ରହିବେ । ଉପବାସ କରିବେ । ଉପବାସ କରି ଗର୍ବ କରିବେ ନାହିଁ । ଧର୍ମ ପଥରେ ମତିଦେବେ । ତାହାହେଲେ ଜରା, ବ୍ୟାଧି ସ୍ପର୍ଶ କରିପାରିବେ ନାହିଁ । ସୁଖଫଳ ପ୍ରାପ୍ତ ହେବ ।

(୧) ଦେବଶୟନ ପୂର୍ଣ୍ଣିମା, (୨) ଉତ୍ଥାନ ପୂର୍ଣ୍ଣିମା, (୩) କୃଷ୍ଣ ଜନ୍ମାଷ୍ଟମୀ, (୪) ରାମ ନବମୀ, (୫) ଶୀବ ଚତୁର୍ଦ୍ଦଶୀ, (୬) ଦୁର୍ଗା ମହାଷ୍ଟମୀ, (୭) ପାର୍ଶ୍ୱ-ବଡ ଏକାଦଶୀ, (୮) ଭୌମୀ-ବଡ ଏକାଦଶୀ ।

## (୧୮) ଛିଙ୍କ କିମ୍ୱା ପଲ୍ଲୀ (ଝିଟିପିଟି) ପତନର ଶୁଭାଶୁଭ

ନିମ୍ନଲିଖିତ ସାତଟି କର୍ମ ସମୟରେ ଛିଙ୍କ କିମ୍ୱା ଝିଟିପିଟି ପଡିଲେ ଶୁଭ ହୁଏ (୧) ଶୟନ, (୨) ଭୋଜନ, (୩) ଦାନ ଦେବା ସମୟରେ, (୪) ପ୍ରବେଶ କରିବା ସମୟରେ, (୫) ବିବାହ ସମୟରେ, (୬) ବିବାଦ କାଳରେ, (୭) ବସ୍ତ୍ର ପରିଧାନ ସମୟରେ ।

(୧) ବାଳକ, (୨) ବୃଦ୍ଧ, (୩) ରୋଗୀ ଏହି ତିନି ପ୍ରକାର ଲୋକ ଛିଙ୍କିଲେ ଶୁଭ ହୁଏ ।

ଗୋରୁ ଛିଙ୍କିଲେ କଳାକର୍ମରେ ଅମଙ୍ଗଳ ଘଟେ । ମୃତ୍ୟୁ ଜନିତ ସମସ୍ୟାର ସୂଚନା ମିଳିଥାଏ ।

(୧୯) **ଛିଙ୍କ କିମ୍ୱା ଝିଟିପିଟି ପଡିବା ଦିଗରୁ ଶୁଭାଶୁଭ**

(୧) ଊର୍ଦ୍ଧ୍ୱ ଭାଗରୁ - ଶୁଭଫଳ, (୨) ପୂର୍ବ ଦିଗରୁ - ମହାଭୟ, (୩) ପଶ୍ଚିମ ଦିଗରୁ ମହାଭାବ ଓ ହରଷିତ ମତି (୪) ଉତ୍ତର ଦିଗରୁ - ସ୍ତ୍ରୀ ବାନାରୀ ଲାଭ, (୫) ଦକ୍ଷିଣ ଦିଗରୁ - ମହାଭୟ, (୬) ଅଗ୍ନିକୋଣରୁ - ମହାଭୟ, (୭) ନୈଋତ କୋଣରୁ - କଳହ ହୁଏ, (୮) ବାୟୁ କୋଣରୁ - ନୂତନ ବସ୍ତ୍ର, ସୁଗନ୍ଧାଦି ଦ୍ରବ୍ୟ, ଧନ, ଜ୍ଞାନ ଓ ଯଶ ପ୍ରାପ୍ତି, (୯) ଐଶାନ କୋଣରୁ - ଦେବ ଆର୍ଶୀବାଦ ନଥିଲେ - ମୃତ୍ୟୁ ସୁନିଶ୍ଚିତ ।

(୨୦) **ଦେହରେ ଥିବା ତିଳ ଚିହ୍ନର ଶୁଭାଶୁଭ**

(୧) ଲଲାଟର ଦକ୍ଷିଣ ପାର୍ଶ୍ୱରେ ଓ ନାସିକାର ଉପରେ ଥିଲେ - ଧନସମ୍ପଦ ପ୍ରାପ୍ତ ହୁଏ, ଯଶମାନ ଆଦି ମିଳେ ।

(୨) ନେତ୍ର (ଚକ୍ଷୁ) ତଳେ ଥିଲେ - ଅଧ୍ୟବସାୟୀ ହୁଅନ୍ତି ।

(୩) ଗଣ୍ଡରେ ଥିଲେ - (ଦେଶ ବା ବିଦେଶ) କେଉଁଠାରେ ଧନ ମିଳେନାହିଁ ।

(୪) ଓଠର ନିମ୍ନଭାଗରେ କିମ୍ୱା ଉପର ଭାଗରେ ଥିଲେ - ପ୍ରେମିକର ଲକ୍ଷଣ ଏବଂ ବିଳାସ ପ୍ରିୟ ।

(୫) କଣ୍ଠରେ ଥିଲେ - ବିବାହ ପରେ ଧନ ସମ୍ପଦ ପ୍ରାପ୍ତ କରାଏ ।

(୬) ବକ୍ଷସ୍ଥଳରେ ଥିଲେ - ସୁସ୍ଥ ଶରୀର ଭୋଗ କରେ, ସର୍ବଦା ସୁଖ ଓ ସୌଭାଗ୍ୟ ମଧ୍ୟରେ ଜୀବନ କଟାଏ ।

(୭) ପଞ୍ଜରାର ଦକ୍ଷିଣ ଭାଗରେ ଥିଲେ - ବୁଦ୍ଧିମାନ ହୁଏ ।

(୮) ଉଦରରେ ଥିଲେ - ସର୍ବଦା ଖାଇବା ପ୍ରିୟ ହୁଏ, ପୋଷାକ ପରିଚ୍ଛଦ ପ୍ରିୟ ହୁଏ, ଏହି ବ୍ୟକ୍ତି ବିଶେଷକରି ସ୍ଥୂଳକାୟ ହୁଅନ୍ତି ।

(୯) ପୃଷ୍ଠରେ ଥିଲେ - ନୃଶଂସ ହୁଏ ।

(୧୦) ଦକ୍ଷିଣ ବାହୁରେ ଥିଲେ - ଶାନ୍ତଶୀଳ ଭାବ ଏବଂ ମହାଧୈର୍ଯ୍ୟବନ୍ତ ହୁଏ ।

(୧୧) କଣ୍ଠରେ ଥିଲେ - ଧୈର୍ଯ୍ୟଶୀଳ ଓ ଭକ୍ତି ପ୍ରିୟ ହୁଏ ।

(୧୨) ଭ୍ରୁରୁ ନିମ୍ନେ (ଆଖିପତାତଳେ) ଥିଲେ - ଚିରଦିନ ଦୁଃଖଅବସ୍ଥା ପ୍ରାପ୍ତ ହୁଏ ।

(୧୩) ଲଲାଟର ବାମ ପାଖ କେଶ ପାଖେ ଥିଲେ - ଦୁରାଚାରୀ ହୁଏ ।

(୧୪) ଲଲାଟର ବାମରେ ଥିଲେ - ଅପବ୍ୟୟୀ ହୁଏ, ନିନ୍ଦିତ ହୁଏ, ଉଦାସ ଭାବରେ ବିଚରଣ କରେ ।

(୧୫) ନାସା (ନାକ)ର ଦକ୍ଷିଣରେ ଥିଲେ - ଅଧ୍ୟବସାୟୀ ଓ ଦୀର୍ଘାୟୁ ହୁଏ । ଧନ ଧାନ୍ୟ ଭୋଗ କରେ ।

(୧୬) ନାସାର (ନାକ)ର ବାମ ଭାଗରେ ଥିଲେ- ଅପବ୍ୟୟୀ, କଟୁଭାଷୀ ଓ ନିର୍ଦ୍ଧନ ହୁଏ ।

(୧୭) ବକ୍ଷସ୍ଥଳରେ ଥିଲେ - ବିଦ୍ୟାବନ୍ତ ତଥା କବି ଓ ଲେଖକ ହୁଏ ।

(୧୮) କର୍ଣ୍ଣ ମଧ୍ୟରେ ଥିଲେ - ଧନ, ସମ୍ପଦ ଓ ଯଶ ପ୍ରଭୃତି ଶୁଭଫଳ ପ୍ରାପ୍ତ ହୁଏ ।

(୧୯) ଦକ୍ଷିଣ ପାଦରେ ଥିଲେ - ଜ୍ଞାନବନ୍ତ ଓ ଧର୍ମବନ୍ତ ହୁଏ ।

(୨୦) ବାମ ଗଣ୍ଡରେ ଥିଲେ - ଦାମ୍ପତ୍ୟ ଜୀବନ ଅମଙ୍ଗଳ କର ସୌଭାଗ୍ୟ ହୀନ ହୁଏ ।

### (୨୧) ଦେହରେ ଥିବା କଳା ଜାଇମନ୍ଦାର ଶୁଭାଶୁଭ

(୧) ବଦନର ବାମ ପାର୍ଶ୍ୱେ ଥିଲେ - ଚିର ସୁଖୀ, ଧୀରବନ୍ତ, ପରୋପକାରୀ ହୁଏ ।

(୨) ଦକ୍ଷିଣ ଭାଗରେ ଥିଲେ - ସମ୍ମାନ ମିଳେ, ଆନନ୍ଦରେ ଦିନକଟେ,

(୩) ବାମ ହସ୍ତର କହୁଣୀ ଉପରେ ଥିଲେ - ସର୍ବଦା ମନ ବିରସ ରୁହେ ।

(୪) ବାମ ହସ୍ତର କହୁଣୀ ତଳେ ଥିଲେ - ବହୁଭାଷୀ ହୁଏ, ନାନା ପ୍ରକାରର କଥା କହି ଜନମନ ତୋଷେ ।

(୫) ଦକ୍ଷିଣ ହସ୍ତର କହୁଣୀ ଉପରେ ଥିଲେ - ଚିରଦିନ ଖରାପ କାମରେ ମନ ରୁହେ ।

(୬) ଦକ୍ଷିଣ ହସ୍ତର କହୁଣୀ ତଳେ ଥିଲେ - ଅତ୍ୟନ୍ତ କାମାତୁର ହୁଏ ।

(୭) ଦକ୍ଷିର ବକ୍ଷରେ ଥିଲେ - ମୂର୍ଖ ହୁଏ, ଅଧର୍ମରେ ସର୍ବଦା ମତି ଦିଏ ।

(୮) ବାମ ବକ୍ଷରେ ଥିଲେ - ନିଜକୁ ଗର୍ବିତ ଭାବେ, ପରଧନରେ ଲୋଭ ରହେ ।

(୯) ନୟନରେ ଥିଲେ - ଦୃଷ୍ଟିଶକ୍ତି ବୃଦ୍ଧିପାଏ, ସଚତୁର୍ ବୁଦ୍ଧିମାନ, ଧର୍ମପରାୟଣ ଓ ଦାତାପଣରେ ବଳିୟାନ ହୁଏ ।

(୧୦) କରତଳେ ଥିଲେ - ସ୍ୱାଧୀନ ଭାବରେ ଜୀବନ ଯାପନ କରେ, ଅରଣୀ ଓ ଅପ୍ରବାସୀ ହୁଏ ।

(୧୧) ପାଦତଳେ ଥିଲେ - ଅଳ୍ପଶିକ୍ଷିତ କିମ୍ବା ଅଶିକ୍ଷିତ ହୁଅନ୍ତି, ଧନ ନାଶ କରାଏ, ଅଶିକ୍ଷିତ କିମ୍ବା ଅର୍ଦ୍ଧ ଶିକ୍ଷିତ ମାନଙ୍କ ସହିତ ବନ୍ଧୁତ୍ୱ କରେ ।

(୧୨) ଇନ୍ଦ୍ରିୟରେ ରହିଲେ - କାମୁକ ପ୍ରବୃତ୍ତି ପାଇଁ, ନଷ୍ଟ ଚରିତ୍ର ଜନିତ ନିନ୍ଦିତ ହୁଏ ।

(୧୩) ଗୁହ୍ୟ ସ୍ଥାନରେ ଥିଲେ - ଶରୀରକୁ ବହୁ କଷ୍ଟ ଦିଏ, ସାରାଜୀବନ ଅସୁଖୀ ରହେ ।

(୧୪) ବାମପାଦ ମୂଳରେ ଥିଲେ - ମୂର୍ଖ ଅଶିକ୍ଷିତ ହୁଏ ।

(୧୫) ଦକ୍ଷିଣ ପାଦ ମୂଳରେ ଥିଲେ - ସର୍ବଦା ଭ୍ରମଣ ଇଚ୍ଛୁ ହୁଏ ।

(୧୬) କର୍ଣ୍ଣରେ ଥିଲେ - ଅତ୍ୟନ୍ତ ଶ୍ରୁତିଧର, ମିଷ୍ଟଭାଷୀ ଓ ନ୍ୟାୟବନ୍ତ ହୁଏ ।

(୧୭) କଟିରେ ଥିଲେ - ଦୈହିକ ପୀଡା, ଏବଂ ସର୍ବଦା ଦୁଃଖ ଜର୍ଜ୍ଜରିତ ଚିତ୍ତ ।

(୧୮) ପୃଷ୍ଠରେ - ଧୀରବନ୍ତ ହୁଏ, ବହୁ ଦାନ ପୂଣ୍ୟ କରେ, ଚିରକାଳ ସୁଖଲାଭ କରେ ।

(୧୯) ନିତମ୍ବରେ ଥିଲେ - ଭୟଭ୍ରାନ୍ତି ନ କରି ଅସ୍ୱାଭାବିକ କ୍ରିୟାରେ ମନ ଦିଏ ।

(୨୦) ଜାନୁରେ ଥିଲେ - ପରଉପକାରୀ ହୁଏ, ଅତ୍ୟନ୍ତ ବଳିଷ୍ଠ ହୁଏ ଓ ଚିରକାଳ ସୁଖ ଭୋଗ କରେ ।

## (୨୨) ବର୍ଷା ଓ ଫସଲର ଶୁଭାଶୁଭ

(୧) ଆଷାଢ ମାସ ଆଦ୍ୟରେ ଦେଖିବ ନୟନେ,
ସୂର୍ଯ୍ୟ ଅସ୍ତବେଳେ ଯଦି ଅତ୍ୟନ୍ତ ପ୍ରଚ୍ଛନେ ।
ଖରାପଡୁ ଥାଇ ଦିଗ ନିର୍ମଳ ଦିଶଇ,
ପଶ୍ଚିମ ଅକାଶ ରକ୍ତ ବର୍ଣ୍ଣ ପ୍ରକାଶଇ ।
ସେ ବର୍ଷ ମହୀରେ ଶସ୍ୟ କେଉଁ ନ ହୋଇବ,
ଖନାର ବଚନ ଏହା ଅଟଇଟି ଧ୍ରୁବ ।

(୨) ମକର (ମାଘ) ମାସରେ ବକର (ବକ୍ରଗତି) ଶନି,
ଖନା କହେ ଏହା ଜାଣ ହେ ଜ୍ଞାନୀ ।
ରବି ସଙ୍ଗେ ଯେବେ ତା ଭେଟ ନାହିଁ,
ସବୁ ଦ୍ରବ୍ୟ ବିନାଶକୁପାଇ ।
ମଙ୍ଗଳ ଥିଲେ ସଙ୍ଗରେ ତାର,
ବରଷେ ମହୀ ଏକାକାର ।
ଶୁକ୍ର ଥିଲେ ଅଶାନ୍ତି ଦେଶ,
ରାହୁ, କେତୁରେ ସର୍ବନାଶ ।
ଚନ୍ଦ୍ର, ବୁଧ, ବୃହସ୍ପତି ଆଉ,
ପୃଥିବୀ ନ ସହେ ଶସ୍ୟର ଭାର ।

(୩) ଖନା କହି ଚଷା ପୁଅ, ଶରତ ଶେଷରେ ସୋରିଷ ରୁଅ,
ଫଳ ଫଳିବ ଅପ୍ରମିତ, ଖନା କଥା ରଖ ଚିତ୍ତ ।

(୪) ଶନିବାର ଦିନ ବର୍ଷା ହେଲେ, ସାତଦିନ ଯାଏ ବୃଷ୍ଟି ଲାଗିରହେ । ମଙ୍ଗଳବାର ଦିନ ବର୍ଷା ହେଲେ, ତିନି ଦିନ ପର୍ଯ୍ୟନ୍ତ ବୃଷ୍ଟି ଛାଡ଼େ ନାହିଁ । ବାକି ବାରମାନଙ୍କରେ ବର୍ଷା ଦିନୁଟିଏ ହୁଏ ।
(ଶନିର ସାତ, ମଙ୍ଗଳ ତିନି, ଆଉ ସବୁ ବାର ଦିନ୍ ଦିନ୍) ।

(୫) ପୌଷ ମାସରେ ଯେଉଁ ଦିନ କୁହୁଡ଼ି ହୁଏ । ବୈଶାଖ ମାସରେ ଉକ୍ତ ଦିନ ବୃଷ୍ଟି ହେବ ।
(ପୌଷର କୁହୁଡ଼ି ବୈଶାଖେ ଫଳ, ଯେଉଁଦିନ କୁହୁଡ଼ି ସେହି ଦିନ ଜଳ ।)

(୬) ଶ୍ରାବଣ ମାସରେ ବହୁଳ ବର୍ଷା ହେବ । ଭାଦ୍ରବ ମାସରେ ଅଳ୍ପ ବୃଷ୍ଟି ହେବ - ଯେପରି ଧାନଗଛ ମୂଳରୁ ପାଣି ଶୁଖିଯାଏ । ଆଶ୍ୱିନରେ ପୁଣି ବହୁତ ବୃଷ୍ଟି ହେବ ।କାର୍ତ୍ତିକ ମାସରେ ପବନ ନଥାଇ ଭୂମି ଭିଜିଲାପରି ଅଳ୍ପ ବର୍ଷାହେବ, ତାହାହେଲେ ଅପର୍ଯ୍ୟପ୍ତ ପରିମାଣରେ ଧାନ ହୁଏ ।

(କର୍କଟେ ଛରକଟ, ସିଂହେ ଶୁଖା, କନ୍ୟେ କାନେ କାନ ।
ବିନା ବାୟେ ତୁଳାରେ ବର୍ଷିଲେ କାହିଁରେ ରଖିବୁ ଧାନ)

(୭) ମାର୍ଗଶିର ମାସରେ ବର୍ଷା ହେଲେ, ଶସ୍ୟ ମାନଙ୍କରେ କୀଟ ଲାଗିଯାନ୍ତି । ଫସଲ ହାନୀ ହୁଏ ।

(୮) ପୌଷମାସରେ ବରଷିଲେ ଅମଙ୍ଗଳ ଘଟେ, ଶସ୍ୟ ଅଗାଡି ହୁଏ । ଫସଲ ନଷ୍ଟ ହୁଏ

(୯) ମାଘ ମାସରେ ବର୍ଷା ହେଲେ ରବି ଫସଲ ଭଲ ହୁଏ ।

(୧୦) ଫାଲଗୁନ ମାସରେ ବର୍ଷାହେଲେ, ଚିନା, ଲାଉ ଆଦି ଫସଲ ବିଶେଷ ହୁଏ ।

ନୁହେଁ ବର୍ଷେ ଅଗ୍ରାଣେ, ରାଜା ଯାଏ ମାର୍ଗଣେ ।
ବର୍ଷେ ଯଦି ପୌଷେ, କଉଡି ହୁଏ ତୁଷେ ।
ଯଦି ବର୍ଷେ ଫାଲଗୁନେ, ଚିନା ନାଉ ଫଳେ ଦ୍ୱିଗୁଣେ ।

(୧୧) ଜ୍ୟେଷ୍ଠ ମାସରେ ବର୍ଷା ନ ହୋଇ, ଆଷାଢ ମାସରେ ଘନ ଘନ ବର୍ଷା ହେଲେ, ସେ ବର୍ଷ ଧରଣୀ ଶସ୍ୟରେ ପରିପୂର୍ଣ୍ଣ ହୁଏ । (ଜ୍ୟେଷ୍ଠ ଶୁଷ୍କ ଆଷାଢେ ଧାରା, ଶସ୍ୟର ଭାର ନ ସହେ ଧରା)

(୧୨) କାର୍ତ୍ତିକ ମାସ ପୂର୍ଣ୍ଣିମା ରାତିରେ ଆକାଶ ନିର୍ମଳ ଓ ପବନ ବହୁ ନ ଥିଲେ ବିନ୍ଦୁମାତ୍ର ବର୍ଷା ହୁଏନାହିଁ, ତେବେ ରବି ଶସ୍ୟ ଅଧିକ ପରିମାଣରେ ପ୍ରାପ୍ତ ହୁଏ ।

(୧୩) ମାଘ ମାସେ ବର୍ଷା ହେବା, ରାଜା ଛାଡେ ପ୍ରଜାର ସେବା ।
(ଭଲଫସଲ ହେବାରୁ)
ବରଷିଲେ ମେଘ ମାଘରେ, ଧାନ ଫଳ ହୁଏ ଟେକରେ ।
(ଟେକ ଜମି ଅର୍ଥାତ୍ ଖାଲ, ଢିପ ଜମି)

(୧୪) ଯଦି ହୁଏ ଚୈତ୍ରେ ବୃଷ୍ଟି, ତେବେ ଏ ଧାନର ସୃଷ୍ଟି ।

(୧୫) ଜ୍ୟେଷ୍ଠ ମାସରେ ଟୋପାଏ ବର୍ଷା ନ ହୋଇ, ଆଷାଢ ମାସ ଆଦ୍ୟରୁ ପ୍ରବଳ ବର୍ଷା ହେଲେ, ରାଜ୍ୟକୁ ସୁମଙ୍ଗଳ ଅଟେ । ବହୁ ଶସ୍ୟରେ ଧରା ପରିପୂର୍ଣ୍ଣ ହୁଏ ।

(ଜ୍ୟେଷ୍ଠରେ ମରି ଆଷାଢେ ଭର, କାଟିମାଡି କରେ ଘର । )

(୧୬) ଚଇତ୍ର ମାସରେ ପ୍ରବଳ କୁହୁଡ଼ି ହେଲେ ଓ ଭାଦ୍ରବ ମାସରେ ନଈ ବଢ଼ିହେଲେ, ପ୍ରାଣୀମାନଙ୍କର ବିନାଶ ଘଟେ ।

(ଚଇତ୍ରେ କୁହୁଡ଼ି ଭାଦ୍ରବେ ବଢ଼ି, ମନୁଷ୍ୟ ମୁଣ୍ଡ ଯାଏ ଗଡ଼ାଗଡ଼ି)

## (୨୩) ମାସ, ଗ୍ରହ, ନକ୍ଷତ୍ର, ରାଶି, ତିଥିମାନଙ୍କରୁ ବର୍ଷା ଓ ଚାଷର ଶୁଭାଶୁଭ :

(୧) ଶନି ରାଜା ମଙ୍ଗଳ ପାତ୍ର, ଚାଷ ଚଷୁଥା କେବଳ ମାତ୍ର ।

(ଯେଉଁ ବର୍ଷ ଶନିଗ୍ରହ ରାଜା ଓ ତା' ସଙ୍ଗରେ ମନ୍ତ୍ରୀ ମଙ୍ଗଳଗ୍ରହ ହୁଏ, ଶସ୍ୟ ହାନି ନିଶ୍ଚୟ ହେବ)

(୨) ବୁଧ ରାଜା ଶୁକ୍ର ମନ୍ତ୍ରୀ, ଶସ୍ୟେ ପରିପୂର୍ଣ୍ଣ ହୁଏ ଧରିତ୍ରୀ ।

(ଯେଉଁ ବର୍ଷ ବୁଧ ରାଜା ହୋଇ ଶୁକ୍ର ଗ୍ରହ ମନ୍ତ୍ରୀ ହୁଏ, ଶସ୍ୟ ଆମଦାନୀ ଅଭୁତପୂର୍ବ ହୁଏ ।)

(୩) ସମୁଦ୍ର ବେଳାରେ କୁଆପଥର ବର୍ଷିଲେ, ସେହି ବର୍ଷ ମଙ୍ଗଳ ହୁଏ ଅର୍ଥାତ୍ ବହୁ ଶସ୍ୟ ଉତ୍ପାଦନ ହୁଏ ।

ଯେ ବାର ଗୁଟିକା ପାତ ସମୁଦ୍ରର ତୀରେ,
ସର୍ବଦା ମଙ୍ଗଳ ବୋଲି କହଇ ଶାସ୍ତ୍ରରେ ।

(୪) ଯେଉଁ ବର୍ଷ ଗୋଟାଏ ମାସରେ ପାଞ୍ଚଟା ରବିବାର ପଡ଼େ ତାହା ଅତ୍ୟନ୍ତ ଅମଙ୍ଗଳ ସୂଚକ । ପ୍ରବଳ ବର୍ଷା ପ୍ରଳୟ ଘଟାଏ, ନତୁବା ଅନାବୃଷ୍ଟି ଜନିତ ଦୁର୍ଭିକ୍ଷ ପଡ଼େ ।

(ମାସେ ପାଞ୍ଚ ରବି ପାଏ । ଝରା କିବା ଖରାରେ ଯାଏ ।)

(୫) ପାଞ୍ଚଗ୍ରହ ଏକତ୍ର ହେଲେ- ସେହିବର୍ଷ ଦୁର୍ଭିକ୍ଷ ହୁଏ । ଷଡ ସପ୍ତ ଅଷ୍ଟ ଗ୍ରହମାନ ଏକାଠି ହେଲେ- ରାଜ୍ୟ ନାଶ ଓ ବିଶୃଙ୍ଖଳା ଘଟେ ।

(୬) କନ୍ୟା ରାଶିରେ ଶନି ରହିଲେ- ଦୁର୍ଭିକ୍ଷ ପଡ଼େ ।

(୭) ମୀନ ରାଶିରେ ଶନି ରହିଲେ- ମହାକ୍ଳେଶ ହୁଏ ଶୁଭକାର୍ଯ୍ୟ ମାନ ହୋଇପାରେନା ।

(୮) ଚଇତ୍ର ମାସ ପ୍ରଥମଦିନ ରବିବାର ହେଲେ - ଅନାବୃଷ୍ଟି ହୁଏ ।

(୯) ଚଇତ୍ର ମାସ ପ୍ରଥମଦିନ ମଙ୍ଗଳବାର ପଡିଲେ - ବହୁତ ବର୍ଷା ହୁଏ ।

(୧୦) .ଚଇତ୍ର ମାସ ପ୍ରଥମଦିନ ବୁଧବାର ପଡ଼ିଲେ - ଶସ୍ୟହାନୀ ଜନିତ ଦୁର୍ଭିକ୍ଷ ପଡ଼େ ।

(୧୧) ଚଇତ୍ର ମାସ ପ୍ରଥମଦିନ ସୋମବାର, ଗୁରବାର, ଶୁକ୍ରବାର ପଡ଼ିଲେ- ଶୁଭଫଳ ମିଳେ ।

(୧୨) ଚଇତ୍ର ମାସ ପ୍ରଥମଦିନ ଶନିବାର ପଡ଼ିଲେ - ଶୁଭ ଫଳ ମିଳେ ନାହିଁ ।

(୧୩) ଚଇତ୍ର ମାସରେ ପାଞ୍ଚଟି ଶନିବାର ପଡ଼ିଲେ - ମଡ଼କ, ମହାମାରୀ, ଦୁର୍ଭିକ୍ଷ ପ୍ରଭୃତି ହୁଏ ।

(୧୪) ଚଇତ୍ର ମାସରେ ତେରଦିନ ଶନି ରହିଲେ- ଶସ୍ୟହାନୀ ଘଟେ, ପ୍ରାଣୀମାନେ ନାନା ବ୍ୟାଧିରେ ଆକ୍ରାନ୍ତ ହୁଅନ୍ତି ।

(୧୫) ଆଷାଢ଼ ମାସରେ ସୂର୍ଯ୍ୟ ହସି ହସି ଅସ୍ତ ହେଲେ- ସାରାବର୍ଷ ଶସ୍ୟହାନୀ ଘଟେ ।

(୧୬) କୌଣସି ମାସରେ ତେରଦିନରେ ଗୋଟିଏ ପକ୍ଷ ହେଲେ- ରାଜ୍ୟରେ ଅମଙ୍ଗଳ ହୁଏ, ନାନା ରୋଗରେ ପଡ଼ି ଲୋକମାନେ ହାହାକାର କରନ୍ତି ଓ ଦୁର୍ଭିକ୍ଷରେ ପଡ଼ି ସେମାନେ ବିନାଶପ୍ରାପ୍ତ ହୁଅନ୍ତି ।

(୧୭) ଭାଦ୍ରବ ମାସରେ ପ୍ରବଳ ବର୍ଷା ସହିତ ଭୂମିକମ୍ପ ହେଲେ - ବଡ଼ ବିପଦ ଘଟେ, ନଈବଢ଼ି ହୁଏ , ଲୋକମାନେ ନାନାଦି ରୋଗରେ ଆକ୍ରାନ୍ତ ହୁଅନ୍ତି । ଗୋ-ମଡ଼କ ଦୁର୍ଭିକ୍ଷ ପ୍ରଭୃତି ପଡ଼େ ।

(୧୮) ଫାଲ୍ଗୁନ ମାସ ସପ୍ତମୀ ଅଷ୍ଟମୀ ତିଥିରେ, ରୋହିଣୀ ନକ୍ଷତ୍ର ପଡିଲେ ଶସ୍ୟ ବହୁଳ ଭାବରେ ଉତ୍ପାଦିତ ହୁଏ ।

(୧୯) ଫାଲଗୁନ ମାସ ନବମୀ ତିଥିରେ ରୋହିଣୀ ନକ୍ଷତ୍ର ପଡ଼ିଲେ- ଶସ୍ୟ ନାଶହୁଏ, ନଈବଢ଼ି ହୁଏ ।

(୨୦) **ଧାନ ରୋପଣର ପ୍ରକୃଷ୍ଟ ସମୟ**

ଆଷାଢ଼ ମାସ ପାଞ୍ଚଦିନ ମଧରେ ରୋଇଲେ ଅଧିକ ଫଳ ପ୍ରାପ୍ତ ହୁଏ ।

ଆଷାଢ ମାସରେ ପାଞ୍ଚ ଦିବସେ, ଧାନ୍ୟ ରୋପଣ କର ହରଷେ

(୨୪) **ଧାନ ରୋପଣ କରିବାର ସମୟ**

ଶ୍ରାବଣ ଆଦ୍ୟରୁ ଭାଦ୍ରବ ବାରଦିନ ପର୍ଯ୍ୟନ୍ତ ଧାନ ରୋପିଲେ ଭଲଅମଳ ହୁଏ (ଶ୍ରାବଣେ ପୁର, ଭାଦ୍ରବେ ବାର, ଏହାର ମଧେ ଯେତେ ପାର ।)

(୨୫) **ଧାନ ବେଉଷଣର ସମୟ**

(୧) ଆଷାଢ ମାସ ବେଉଷଣରେ - କାଁ ଭାଁ ଫଳେ
(୨) ଶ୍ରାବଣ ମାସ ବେଉଷଣରେ - ପ୍ରଚୁର ଫଳେ
(୩) ଭାଦ୍ରବ ମାସ ବେଉଷଣରେ - ସାମାନ୍ୟ ଫଳେ
(୪) ଆଶ୍ୱିନ ମାସ ବେଉଷଣରେ - କିଛି ଫଳେ ନାହିଁ ।

(ଆଷାଢେ କଢ଼ାଣ ନାମକୁ, ଶ୍ରାବଣେ କଢ଼ାଣ ଧାନକୁ ।
ଭାଦ୍ରବେ କଢାଣ ନ୍ୟୁନ, ଆଶ୍ୱିନେ କଢାଣ ଶୂନ୍ୟ )

(୨୬) **ଧାନ ରୋପଣ ବିଧି**

ଫାଙ୍କ ଫାଙ୍କ କରି ରୋପଣ କଲେ, ଗଛ ମୋଟା ହୁଏ ଏବଂ ବହୁତ ଫଳେ ।

(୨୭) **ଧାନ କାଟିବା ମାସ**

(୧) ମାର୍ଗଶୀର ମାସରେ କାଟିଲେ - ଷୋଳପଣ ପାଇବ
(୨) ପୌଷ ମାସରେ କାଟିଲେ - ଛଅପଣ ପାଇବ
(୩) ମାଘ ମାସରେ କାଟିଲେ - କେବଳ ନଡ଼ା (କୁଟା) ମିଳିବ
(୪) ଫାଲ୍‌ଗୁନ ମାସରେ କାଟିଲେ - ଧାନ କି ନଡ଼ା (କୁଟା) କିଛି ମିଳିବନାହିଁ ।

(ମାର୍ଗଶୀରେ ପୌଚି, ପୌଷେ ଛଅଟି,
ମାଘରେ ନଡ଼ା, ଫଗୁଣେ ପାଇବ ଖଡ଼ା)

(୨୮) (କ) **ଧାନ କାଟିବାର ସମୟ**

(୧) ଧାନର ଥୋଡ଼ ହେବାଠାରୁ - ତିରିଶ ଦିନରେ ।

(୨) ଧାନ ଫୁଲ ଉଡ଼ାଇବାଠାରୁ - କୋଡ଼ିଏ ଦିନରେ ।
(ଅଥବା ଧାନ ଶିଁଷା ବାହାରିବାଠାରୁ)

(୩) ଧାନ ମୁଖ ନୁଆଁଇବାଠାରୁ- ତେର ଦିନରେ ।
(ଥୋଡ଼େ ତିରିଶ, ଫଳେ ବିଂଶ,
ଘୋଡ଼ାମୁଖା ହେଲେତେର ଦିବସ ।)

(ଖ) **ଭଲ ଧାନ ହେବାର ଲକ୍ଷଣ**

(୧) ବର୍ଷା କାଳେ ଦିନରେ ଖରା, ରାତିରେ ମୂଷଳ ଧାରାରେ ବର୍ଷା ହେଲେ
(ଦିବସେ ଖରା ରାତ୍ରେ ଜଳ, ଦିନୁ ଦିନୁ ବଢ଼େ ଧାନର ବଳ)

(୨) ବୈଶାଖ ପ୍ରଥମ ଦିନରେ ବର୍ଷା ହେଲେ, ବିଆଳି ଧାନ ବହୁତ ହୁଏ ।
(ବୈଶାଖ ପ୍ରଥମ ଦିନରେ ବୃଷ୍ଟି, ଆଉସ୍ ଧାନ୍ୟର ହୁଏ ସୃଷ୍ଟି )

(୩) ବିଆଳି ଧାନ ବାଲିଆ ଜମିରେ ଭଲ ହୁଏ ।

(୪) ବଡ଼ ଧାନ ମଟାଳ ଭୂମିରେ ଭଲ ହୁଏ ।

(୫) ଶାରଦ ଧାନ, ପାଟ ଜମି (ଜଳସ୍ଥିତ)ରେ ଭଲ ହୁଏ ।

(୬) ଆଡ଼ି ବନ୍ଧ ଦେଇ କ୍ଷେତରେ ଜଳ ରଖି ଶାଳି ଧାନ ରୋପିଲେ ପ୍ରବଳ ଧାନ ହୁଏ ।

(୭) ସୂର୍ଯ୍ୟ କିରଣ (ରୌଦ୍ର) ପଡୁଥିବା ସ୍ଥାନରେ ଧାନ ଭଲ ହୁଏ ।

(୨୯) **ପାନ ଲଗାଇବା ସମୟ ଓ ସ୍ଥାନ**

(୧) ଶ୍ରାବଣ ମାସରେ ପାନ ରୋପଣ କଲେ ଦୁଇ ଗୁଣ ଲାଭ ହୁଏ ।
(ପାନ ରୋପିଲେ ଶ୍ରାବଣେ, ଲାଭ ହୁଏ ଦୁଇଗୁଣେ)

(୨) ଛାୟାଯୁକ୍ତ ସ୍ଥାନରେ ପାନ ଭଲ ହୁଏ ।

(ଡାକି କରି ଖନା କହେ, ରୌଦ୍ରେ ଧାନ ପାନ ଛାଇଏ)

(୩୦) **ଧାନ ଓ ପାନ ଫଳିବାରେ ପ୍ରଭେଦ**

ଏକ ମାର୍ଗଶୀରରେ ଧାନ ଫଳେ । ତିନି ଶ୍ରାବଣରେ ପାନ ଭଲ ଫଳେ ।

(ଏକ ମାର୍ଗଶୀରରେ ଧାନ, ତିନି ଶ୍ରାବଣରେ ପାନ)

(୩୧) **ଆଳୁ, ସାରୁ ଓ ଓଲୁଅ ରୋପଣ କରିବାର ସ୍ଥାନ ଓ ବିଧି**

(୧) ବାଉଁଶ ବଣ ନିକଟରେ 'ଆଳୁ' ରୋପଣ କଲେ ଅଳ୍ପଦିନରେ ବହୁଳ ଭାବେ ଫଳେ ।

(୨) ନଦୀ କୂଳରେ ସାରୁଗଛ ରୋପଣ କରିବ । ଗଛ ତିନିହାତ ଉଚ୍ଚ ହେଲାପରେ, ତା ମୂଳରେ କଳା ପାଉଁଶ ଦେବ । ତେବେ ବହୁତ ପରିମାଣରେ ଫଳ ଫଳିବ ।

(୩) ଫାଲଗୁନ ମାସରେ ଛାଇ ଦେଖି ଓଲୁଅ ରୋପିଲେ ଭଲ ଫଳ ହୁଏ । ମାତ୍ର ଅନ୍ୟ ମାସରେ ଏହା ରୋପିଲେ ତାହା ଅକାରଣ ହୁଏ । ଓଲୁଅ ମୂଳରେ ଖତ ଦେଲେ ଅଧିକ ଫଳେ ।

(୩୨) **ବାଇଗଣ, ପୋଟଳ ଓ ମଟର ରୋପଣର ନିୟମ**

(୧) ଚୈତ୍ର, ବୈଶାଖ ଦୁଇମାସ ଛାଡ଼ି ବାକି ଦଶମାସ ବାଇଗଣ ରୋପଣ କରିବ, ପୋକ ଧରିଲେ ପାଉଁଶ ପକାଇବ, ମାଟି ଶୁଖିଗଲେ ତା ଉପରେ ଜଳ ଦେବ । ତେବେ ସାରା ବର୍ଷ ବହୁ ସଂଖ୍ୟାରେ ବାଇଗଣ ଫଳିବ ।

(୨) ବାଲିମିଶା ମାଟି କିମ୍ବା ଭଲ ମାଟିରେ ପଟୁମାଟି ଦେଇ ଫାଲଗୁନ ମାସରେ ପୋଟଳ ରୋପିଲେ ବହୁତ ଫଳ ମିଳେ ।

(୩୩) **ଆମ୍ବ ଓ ପଣସ ରୋପଣର ନିୟମ**

କୋଡ଼ିଏ ହାତ ଛଡ଼ାରେ ଆମ୍ବ ଓ ପଣସ ଗଛ ଲଗାଇବ । ଗଛକୁ ଗଛ ଲାଗିଗଲେ ଭଲ ଫଳ ଫଳେ ନାହିଁ । ମାର୍ଗଶୀର ମାସରେ ବର୍ଷା ନ ହେଲେ ପଣସ ଫଳେ ନାହିଁ ।

(ମାର୍ଗଶୀରେ ଯେବେ ନହୁଏ ବୃଷ୍ଟି, ଜାଣିବ ନହେବ ପଣସ ସୃଷ୍ଟି )

## (୩୪) କଦଳୀ ଓ ତାଳ

ଡାକ ଛାଡ଼ି କହେ ରାବଣ, କଦଳୀ ଲଗା ଆଷାଢ଼ ଶ୍ରାବଣ
ତିନିଶ ଷାଠିଏ କଦଳୀ ରୁଅ, ଘରେ ଯାଇ ସୁଖେ ଶୁଅ ।

(୧) ଭାଦ୍ରବ ଓ ଚୈତ୍ର ମାସରେ କଦଳୀ ଲଗାଇଲେ ସବୁ ବିନାଶ ପ୍ରାପ୍ତ ହୁଏ । କାରଣ ଉଇରା ବା କଦଳୀ ପାଇଁ ବଡ ମନ୍ଦ ।

(୨) ତାଳଗଛ ଆଜି ଲଗାଇଲେ ୧୨ବର୍ଷ ପରେ ନିଶ୍ଚୟ ଫଳିବ । ଗୋରୁ ଯେପରି ତାଳଗଛ ମୂଳରେ ମୁହଁ ନ ଲଗାଏ ।

## (୩୫) ନଡ଼ିଆ ଓ ଗୁଆ ଗଛ ରୋପଣର ନିୟମ

(୧) ନଡ଼ିଆ ଗଛ ମୂଳରେ ଲବଣ ମାଟିଦେଲେ ଓ ଅଗାଡ଼ି ଦେଲେ ଗଛ ସବଳ ସତେଜ ହୋଇ ବହୁ ଫଳ ଫଳେ ।

(୨) ନଡ଼ିଆ ଗଛରେ ଅନ୍ୟ ଗଛର ଛାଇ ଯେପରି ନପଡ଼େ ସେଥି ପ୍ରତି ସର୍ବଦା ସଜାଗ ଥିବ । ମୂଳରେ ମଳା ଅଂଶ ରଖିବ ନାହିଁ । ଅଫଳନ୍ତି ନଡ଼ିଆ ଗଛର ଚେରକୁ କାଟିବ ।

(୩) ନଡ଼ିଆ ଓ ଗୁଆ ଗଛ କ୍ଷୁଦ୍ର ଥିଲାବେଳେ, ସେଗୁଡ଼ିକୁ ବାରମ୍ବାର ଉତ୍ପାଟନ କଲେ ପୁଷ୍ଟ ହୁଏ । (ଆମ୍ବ ଓ ପଣସ ଗଛକୁ ବାରମ୍ବାର ଉତ୍ପାଟନ କଲେ ସେମାନଙ୍କର ବିନାଶ ହୁଏ)

(୪) ଗୁଆ ଗଛ ଅତି ଯତ୍ନରେ ରୋପଣ କରିବ ଓ ମୂଳରେ ଗୋବର ଦେବ । ଗଛ ମଝିରେ ମନ୍ଦାର ଗଛ ଲଗାଇବ ଯେପରି ପତ୍ରଝଡ଼ି ଗୁଆଗଛ ମୂଳରେ ପଡ଼ିବ ।

## (୩୬) ସୋରିଷ, ବିରି ଓ ମୁଗ ରୋପଣର ନିୟମ

(୧) ଶରତ ଋତୁ ଶେଷରେ ସୋରିଷ ବହଳ କରି ବୁଣିଲେ ଭଲ ଫଳ ଫଳେ । ରାଇ ସୋରିଷକୁ ପାତଳ କରି ବୁଣିବ । ତତ୍‌ସହିତ ବିରି, ମୁଗ ଏକା ସଂଗରେ ଓ ଏକ କ୍ଷେତ୍ରରେ ବୁଣିଲେ ଏକାବେଳେକେ ତିନି ଶସ୍ୟ ମିଳେ । ଅନ୍ୟ ଦିନେ ବୁଣିଲେ ଭଲ ଫଳ ମିଳେ ନାହିଁ ।

(୨) ଭାଦ୍ରବ ମାସ ଶେଷ ହେବାକୁ ୪ଦିନ ଥିବ । ଆଶ୍ୱିନ ମାସର ପ୍ରଥମ ଚାରିଦିନ ମଧ୍ୟରେ ବିରି ରୋପଣ କରିବା ବିଧେୟ । ଆଶାତୀତ ଫଳ ପ୍ରାପ୍ତ ହୁଏ ।

## (୩୭) ତିଳ ରୋପଣ ନିୟମ

ଫାଲଗୁନ ମାସ ଶେଷ ଆଠଦିନରୁ ଚୈତ୍ର ମାସ ଆଦ୍ୟ ଆଠଦିନ ମଧ୍ୟରେ ତିଳ ବୁଣିଲେ ବହୁ ଫଳ ଲାଭ ହୁଏ ।

(ଫାଲଗୁନ ଆଠକୁ ଚୈତ୍ର ଆଠ, ସେହି ତିଳକୁ ଦାଆରେ କାଟ)

## (୩୮) ହରିଦ୍ରା ରୋପଣ ନିୟମ

(୧) ବୈଶାଖ, ଜ୍ୟେଷ୍ଠ ମାସରେ ହରିଦ୍ରା ରୋପଣ କରିବ । କ୍ଷେତକୁ ଜଳମୁକ୍ତ କରିବା ପାଇଁ ବ୍ୟବସ୍ଥା କରିବ । ଆଷାଢ଼, ଶ୍ରାବଣ ଓ ଭାଦ୍ରବ ମାସ ମାନଙ୍କରେ ଗଛ ମୂଳରେ ମାଟି ଭଲ କରିଦେବ । ବହୁ ଫଳ ଫଳିବ । ଅନ୍ୟ ମାସ ମାନଙ୍କରେ ଏହା ରୋପିଲେ ବା ବେଉଷଣ କଲେ ଭଲ ଫଳ ମିଳେ ନାହିଁ ।

ବୈଶାଖ, ଜ୍ୟେଷ୍ଠରେ ହରିଦ୍ରା ରୁଅ, ପଶାଖେଳ ଆଦି ବାହାରେ ଥୁଅ,
ଅଷାଢ, ଶ୍ରାବଣେ ପୋଡିବ ମାଟି, ଭାଦ୍ର ନିଗଡ଼ାରେ କରିବ ଖାଣ୍ଡି ।
ଅନ୍ୟ ମାସରେ ପୋତିଲେ ପୁଣ, ପୃଥୀ କହେ ଫଳ ନ ଦେବି ଜାଣ ।

## (୩୯) ମୂଳା ରୋପଣ ନିୟମ

(୧) ଶରତ ଋତୁ ଶେଷରେ, ଜମିକୁ ଭଲକରି ଚାଷକରି ମାଟିକୁ ନରମ ତଥା ଧୂଳି ପ୍ରାୟକରି, ତହିଁରେ ଗୋଟି ଗୋଟି କରି ମୂଳା ବପନ କରିବ । ତାହା ହେଲେ ଭଲ ଫଳ ଫଳେ ।

ମୂଳାର ଭୂମି ତୁଳା ।
ଖନା ବୋଲେ ଚଷା ଶୁଣ, ଶରତ ଶେଷରେ ମୂଳା ବୁଣ ।

## (୪୦) ଲଙ୍କାମରିଚ ରୋପଣ ନିୟମ

ଭାଦ୍ରବ, ଆଶ୍ୱିନ ମାସରେ ଲଙ୍କା ମରିଚ ଢ଼ିପ ଭୂମିରେ ଲଗାଇ ଓ ଗଛ ମୂଳରେ ଧାନ ପଟାଳକ ଦେଲେ ଭଲ ଫଳେ । କାର୍ତ୍ତିକ ମାର୍ଗଶୀରରେ ଲଗାଇଲେ ପୋକଲାଗି ଗଛ ମରିଯାଏ ।

(ଭାଦ୍ରବ ଆଶ୍ୱିନେ ନ ରୋଇ ଝାଲ,     ଯେ ପ୍ରାଣୀ ଆଳସ୍ୟେ କାଟଇ କାଳ ।
ରୋପେ କାର୍ତ୍ତିକ ମାର୍ଗଶୀର ମାସେ,     ପୋକଧରି ଗଛ ମରଇ ଶେଷେ ।)

## (୪୧) ଲାଉ ଗଛ ବୃଦ୍ଧିର ନିୟମ

(୧) ଲାଉ ଗଛ ମୂଳରେ ମଳା କରିଦେବ । ମାଛ ଧୁଆ ପାଣି ତହିଁରେ ଢାଳିବ । ଦିନକୁ ଦିନ ଗଛ ବଢ଼ିବ ଓ ବହୁ ଫଳ ଫଳିବ । ଲାଉ ଗଛ ଯଦି ପାଉଁଶରୁ ଯାତ ହୁଏ- ତାହାହେଲେ ଆଶ୍ଚର୍ଯ୍ୟଜନକ ଭାବରେ ଅସଂଖ୍ୟ ଫଳ ହୁଏ ।

ମାଛର ଜଳେ ଲାଉ ବଢ଼େ । ଧାନପଚା ଜଳେ ଝାଲ(ଲଙ୍କା) ବଢ଼େ

## (୪୨) ଗଛର କଲମ ରୋପଣ ନିୟମ

ଶ୍ରାବଣ ମାସରେ ବହୁ ବୃଷ୍ଟି ହେବା ସମୟରେ କଲମ ରୋପିଲେ; ଅଳ୍ପ ଦିନରେ ବହୁଫଳ ପ୍ରାପ୍ତ ହୁଏ ।

## (୪୩) ମଟର ବପନ କରିବା ନିୟମ

ଆଶ୍ୱିନ ମାସର ୧୯ଦିନ ଛାଡ଼ି ଓ କାର୍ତ୍ତିକ ମାସ ୧୯ଦିନ ମଧ୍ୟରେ ମଟର ଲଗାଇଲେ ବହୁତ ଫଳ ମିଳିଥାଏ ।

(୪୪) ଉତ୍ତମ କର୍ଷିତ ଭୂମିରେ ଆଶ୍ୱିନ, କାର୍ତ୍ତିକ ମାସରେ ଶ୍ୱେତ ତିଳ ବୁଣିଲେ; ଏବଂ ମାଘ ଫାଲ୍‌ଗୁନ ମାସରେ କୃଷ୍ଣତିଳ ବୁଣିଲେ ବହୁତ ଫଳ ପ୍ରାପ୍ତ ହୁଏ ।

## (୪୫) ମକା ରୋପଣ ନିୟମ

ଚଇତ୍ର ମାସରେ ମକା ରୋପଣ କଲେ, ପ୍ରଚୁର ଫଳ ହୁଏ ।
ଟଙ୍କା ଦରକାର ଥିଲେରେ ପୁଅ,     ଚଇତ୍ର ମାସରେ ମକା ରୁଅ ।

## (୪୬) ବାଉଁଶ ଗଛ ବୃଦ୍ଧିର ନିୟମ

ଅଗାଡ଼ି ଧାନ ଓ ଛିଣ୍ଡା ପାଳ (କୁଟା) ବାଉଁଶ ଗଛ ଗଜା ମୂଳରେ ଦେଲେ; ଫାଲଗୁନ ମାସରେ ବାଉଁଶ ଗଛ ମୂଳରେ ପଡିଥିବା ପତ୍ରକୁ ଗୋଟିଏ ବାଦ୍ ନଦେଇ ପୋଡ଼ି ପାଉଁଶ କରିବ ଓ ଚଇତ୍ର ମାସରେ ଗଛ ମୂଳରେ ପିନ୍ଧାଇ ଦେଲେ-ବାଉଁଶ ଆଶ୍ଚର୍ଯ୍ୟ ପ୍ରକାରେ ବଢ଼େ ।

## (୪୭) ଗଛ ଲଗାଇବା ଓ ବଢିବାର ନିୟମ

ମନୁଷ୍ୟ ମରେ ଯହିଁରେ, ଗଛ ଲଗା ଭାଇ ତହିଁରେ ।
ପଚା ସଢ଼ାରେ ଗଛବଢ଼େ, ଗଛବାଢ଼ି ମନୁଷ୍ୟ ମରେ ।

## (୪୮) ହଳ ଚାଳନା ନିୟମ

(୧) ଶୁଭବେଳା ଦେଖି ହଳ ଧରି ଯାତ୍ରା ଆରମ୍ଭ କରିବ ।
(୨) ପଥ ମଧ୍ୟରେ ଅମଙ୍ଗଳ ବାଚକ ପଦାର୍ଥ ତଥା ଦ୍ରବ୍ୟ ଦେଖିବ ନାହିଁ ।
(୩) ଅମଙ୍ଗଳ ଜନିତ ପଦାର୍ଥ ଦେଖିଲେ ଫେରି ଆସି ପୁଣି ଯାତ୍ରା କରିବ ।
(୪) ଜମିର ଚାରିଦିଗ ନିର୍ଣ୍ଣୟ କରି ପୂର୍ବଦିଗରୁ ହଳ ଚାଳନା କରିବ ।
(୫) ପୂର୍ଣ୍ଣମୀ ଓ ଅମାବାସ୍ୟାରେ ହଳ କରିବା ନିଷେଧ ।

## (୪୯) ରାଜ୍ୟର ଶୁଭଲକ୍ଷଣ

ଶୁକ୍ଳପକ୍ଷ ପ୍ରଥମ ଦିନ ଚନ୍ଦ୍ର ଉଦୟ ସମୟରେ - ଚନ୍ଦ୍ରମଣ୍ଡଳ କେତେକାଂଶ ଧଳା ଓ କେତେକାଂଶ କଳା ପରି ପ୍ରତୀୟମାନ ହେଉଥିବ । ଚନ୍ଦ୍ରମଣ୍ଡଳର ଉତ୍ତର ଭାଗ ଉଚ୍ଚ ଓ ଦକ୍ଷିଣ ଭାଗ ନୀଚ ପ୍ରାୟ ଦେଖାଯିବ । ତେବେ ସେହି ବର୍ଷ ରାଜ୍ୟର ପ୍ରଚୁର ପରିମାଣରେ ଶସ୍ୟ ହେବ ।

(ଅନ୍ଧାର ପରେ ଚନ୍ଦ୍ରର କଳା, କେତେକ କଳା କେତେକ ଧଳା ।
ଉତ୍ତରେ ଉଚ୍ଚ ଦକ୍ଷିଣେ ନୀଚ, ଧରାରେ ହୁଅଇ ଧାନ୍ୟର ଜାତ ।)

## (୫୦) ଚାଷର ଶୁଭାଶୁଭ

ପିତା ପୁତ୍ର ମିଳି କରିବ ଚାଷ, ପର ଆଶରାରେ ସର୍ବନାଶ ।
ଭାଇ ଭାଇ ମିଳି କରିଲେ କୃଷି, ଅବଶ୍ୟ ବହୁତ ପ୍ରାଣୀଙ୍କି ପୋଷି ।

## (୫୧) ଧନୀ ଦରିଦ୍ର ହେବାର ଲକ୍ଷଣ

ଖଟି ଖଟାଏ ଲାଭ ପାଏ । ତା'ର ଅର୍ଦ୍ଧେକ ଯେ ନିତି ଧାଏଁ ।
ଘରେ ବସି କହେ ବାତ୍ । ତା'ର ଘରେ ହା ଭାତ୍ ।
ଯେଉଁ କାମ ଆପେ କରି କରାଇବ - ଶତକଡ଼ା ୧୦୦ ଭାଗ ଲାଭ ହୁଏ ।

ଯେଉଁ କାମ ଅନ୍ୟ ହାତ ଦ୍ୱାରା କରାଇବ- ଶତକଡ଼ା ୫୦ ଭାଗ ଲାଭ ହୁଏ ।

ଯିଏ କାମ ନିଜେ କରେନି ବା ଅନ୍ୟ ଦ୍ୱାରା କରାଏ ନାହିଁ କେବଳ ବସି ରହି ବଡ଼ ବଡ଼ କଥା କହୁଥାଏ, ତାକୁ ଅନ୍ନ ମିଳେ ନାହିଁ । ଅର୍ଥାତ୍ ଖାଇବାକୁ ମିଳେ ନାହିଁ ।

## (୫୨) ବୃଷ୍ଟି ଲକ୍ଷଣ

(୧) କାର୍ତ୍ତିକରେ ବୃଷ୍ଟି ହେଲେ ଊଣା, ଧାନ ଫଳଇ ଦୁଇଗୁଣା ।
(୨) ପଶ୍ଚିମ ଧନୁ ନିତ୍ୟ ଖରା, ପୂର୍ବ ଧନୁ ବର୍ଷେ ଝରା ।
(୩) ଚୈତ୍ର ମାସେ ଥରହର, ବୈଶାଖରେ ଝଡ ପଥର
ଜ୍ୟେଷ୍ଠ ମାସରେ ତାରା ଫୁଟେ, ମହୀରେ ଅଧିକ ବର୍ଷା ଘଟେ ।
(୪) ରାମଧନୁ ପୂର୍ବେ ଉଠିଲେ, ବର୍ଷଇ ମହୀ ଏକାକାରେ ।
(୫) ପୌଷେ ଗରମ ବୈଶାଖେ ଜାଡ, ପହିଲି ଆଷାଢେ ବରଷେ ଝଡ
ଅନ୍ୟଥା ନୁହଁଇ ଖନାର ବାଣୀ, ଶ୍ରାବଣେ ଭାଦ୍ରବେ ନ ହୁଏ ପାଣି
(୬) ଦିବସେ ବରଷା ରାତିରେ ତାରା, ସେ ବରଷାଧାରା ଦୁଃଖରେ ଭରା
(୭) ବେଙ୍ଗ ଡାକିଲେ ଘନ ଘନ, ଶୀଘ୍ର ବୃଷ୍ଟି ହେବ ଜାଣ ।
(୮) ଚନ୍ଦ୍ରମଣ୍ଡଳ ମଧ୍ୟରେ ତାରା, ଜଳ ବରଷେ ମୂଷଳ ଧାରା ।
(୯) ଦୂର ସଭା ନିକଟେ ଜଳ, ନିକଟ ସଭା ରସାତଳ ।
(୧୦) ଭାଦ୍ରବ ମେଘେ ବିପରୀତ ବାୟୁ, ସେଦିନ ବୃଷ୍ଟି ଯେ ପଡିବ କାହୁଁ।
(୧୧) ଅଦିନ କୁହୁଡି ଦୁଇ ପ୍ରହରେ, ଦେଖାଯାଏ ଯେବେ କେଉଁ ଦିନରେ
ଆଠଦିନ ମଧ୍ୟେ ବରଷେ ଜଳ, ପ୍ରାଣୀଙ୍କୁ କାହିଁ ନ ମିଳଇ ସ୍ଥଳ ।
(୧୨) ବର୍ଷର ପ୍ରଥମ ଈଶାନ ଯେବେ, ବାୟୁ ବହଇ ଅବିଚ୍ଛନ୍ନ ଭାବେ ।
ଉଚିତ ବରଷା ହୁଅଇ ତେବେ ଖନା କହଇ ମିଛ ନୁହଁଇ କେବେ
(୧୩) ମେଘ ପାଣ୍ଡୁର ବର୍ଣ୍ଣ ଧାରଣ କଲେ, ବର୍ଷା ବହୁତ ହୁଏ ।
(୧୪) ମେଘ ଯେତେବେଳେ, କୋଦାଳରେ ମାଟି କୋଡିଲା ପରି ଦେଖାଯାଏ, ସେତେବେଳେ ବର୍ଷା ବହୁତ ହୁଏ ।
(୧୫) ଜ୍ୟେଷ୍ଠ ଶେଷେ ବର୍ଷିଲେ ଜଳ, ଦେଶେ ହୁଅଇ ସୁମଙ୍ଗଳ ।
ଆଷାଢେ ଜଳ ଶସ୍ୟେ ଭରା, ଶ୍ରାବଣେ ଭରା ନ ସହେ ଧରା
ଭାଦ୍ରବ ମେଘ ନୁହେଁ ଭଲ, ଆଶ୍ୱିନ ଜଳରେ ସୁଫଳ ।
କାର୍ତ୍ତିକ ବରଷା ହୀନମାନ, ଅଗ୍ରହଣେ ବରଷା ଲୋକସାନ
ପୌଷେ ଶସ୍ୟ ଯାଇ ନାଶ, ଖନା କହେ ସର୍ବଶେଷ ।

## (୫୩) ବନ୍ୟା ହେବା ଲକ୍ଷଣ

ପୂର୍ଣ୍ଣ ଆଷାଢେ ଦକ୍ଷିଣା ବହେ, ସେହି ବରଷଟି ବନ୍ୟା ହୁଏ ।
(ବ୍ରାହ୍ମଣ, ନାୟକ) ବର୍ଷା, ବଢି, ଦକ୍ଷିଣା ପାଇଲେ ଯାଆନ୍ତି ଛାଡି
ଅଧିକ ଆମ୍ବ, ଅଧିକ ଧାନ ଅଧିକ ତେନ୍ତୁଳି ବନ୍ୟା ପ୍ରମାଣ ।



# ପୁରାଣ ବଚନ

(୧) ପରଶିରୀ, ପରନାରୀ, ପରଭୂମି ହରି,
କେଡ଼େ କେଡ଼େ ଲୋକ ଗଲେଣିତ ମରି । (ନୃସିଂହ ପୁରାଣ)

(୨) ପର ଶିରୀ, ପରନାରୀ, ହରଣେ ଯେ ଦୋଷ,
ବଂଶକ୍ଷୟ କରିଣ ଯେ ନର୍କେ ହୁଏ ବାସ । (ନୃସିଂହ ପୁରାଣ)

(୩) ଶକଟା ଯୂତ ଗଣିକା ନଟକାରୀ ମୂଳେ,
ଏ ମାର୍ଗେ ଚିତ୍ତ ବୁଦ୍ଧି ନ ଦେବୁ କେତେବେଳେ । ( ନୃସିଂହ ପୁରାଣ )

(୪) ଲାଙ୍ଗୁଡ଼ା ତାରା (ଲଞ୍ଜାତାରା) ପଡ଼ିବ ଯେବେ ନିଶାକାଳେ,
ଏ କଥାଟି ବଡ଼ ଦୋଷ ଜାଣ ଭୂମଣ୍ଡଳେ । (ନୃସିଂହ ପୁରାଣ)

(୫) ମଣୋହି କରିବୁ ବାପୁ ସାତ ଘଡ଼ି ଠାରେ,
ତେବେଟି ବ୍ୟାଧି ପ୍ରବଳ ନୁହଇ ଶରୀରେ । (ନୃସିଂହ ପୁରାଣ)

(୬) ସ୍ତିରୀଙ୍କ ମାୟା ବଡ଼ିପାଣି, ବ୍ରହ୍ମା ନ ପାରେ ତାହା ଜାଣି ।
(ରସବିନୋଦ)

(୭) ଉଚ୍ଚ ଲୋକ ଯେବେ ନୀଚ ସଙ୍ଗତେ ଖେଳଇ,
କହିଛି ପୁରାଣେ ସେ ଯେ ଅବଶ୍ୟ ହାରଇ ।(ନୃସିଂହ ପୁରାଣ)

(୮) ନାରୀ ସଙ୍ଗ ଓ ରତୁମତେ; କେବଳ ପୁତ୍ର ଜନ୍ମ ଅର୍ଥେ । (ଭାଗବତ)
ନାରୀ ସଙ୍ଗମେ ଯାର ମନ, ସେ ହୁଏ ମୋହ ହତଜ୍ଞାନ । (ଭାଗବତ)
ନିୟତେ ଥିବ ଯତ ସତେ, ବୀର୍ଯ୍ୟ (ଇନ୍ଦ୍ରି) ନ ଦେବ ଯୋନି ଗାତ୍ରେ ।(ଭାଗବତ)

(୯) ମାତ ଣନ୍ତି ସିନା ପୁତ୍ରର କିଏ ବାପ,
ମନ ସିନା ଜାଣଇ ଯେ କଳାକୃତ ପାପ । (ନୃସିଂହ ପୁରାଣ)

(୧୦) ଯେ ପୁଣ୍ୟ ଆପତେ କରିବ, କେବେ ହେଁ ପରେ ନ କହିବ ।
ଯଦି କହିବ ପତ୍ନୀପାଶ, ସକଳ ଧର୍ମ ଯିବ ନାଶ । (ଭାଗବତ )

(୧୧) ମଙ୍ଗଳ ଉତ୍ସବ, ବିଭାଘର, ଯଜ୍ଞସ୍ଥାନେ,
ପୂଜା, ବୈଶ୍ୱଦେବ, ସ୍ନାନ, ଆବର ଭୋଜନେ ।
ଏତେ ସ୍ଥାନେ ଦେଖିଲେ ଯୋଗୀଙ୍କର ମୂର୍ତ୍ତି,
କାର୍ଯ୍ୟ ନାଶ ଯାଇ ପୁଣି ହୁଏ ଅପକୀର୍ତ୍ତି । (ନୃସିଂହପୁରାଣ)

(୧୨) ଅଦୋଷିକୁ ଦଣ୍ଡ ଯେହୁ ଦିଏ ଅକାରଣେ,
ଆପେ ସେ ଦଣ୍ଡର ଭୋଗ କରେ ଶତଗୁଣେ । (ମାର୍କଣ୍ଡେୟ ପୁରାଣ)

(୧୩) ଅତି ଲୋଭ କଲେ ନ ରହଇ ଚିର କାଳ,
ଅତି ରସ ଭୁଞ୍ଜିଲେଟି ହୁଏ ବ୍ୟାଧିମୂଳ ।
ଅତି ସ୍ନେହ କଲେ ଦୁଃଖ ଅବଶ୍ୟ ଘଟଇ,
ଅତି ଲାଭ ବାଣିଜ୍ୟରେ ପାପ ଜାତ ହୋଇ ।
ଅତି ବୁଦ୍ଧି ହେଲେ ବୁଡ଼େ ଅଳପକେ ହେତୁ,
ଅତି ଶୋଭାବନ୍ତକୁ ଯେ ଅଳ୍ପେ ହୁଏ ମୃତ୍ୟୁ । (ନୃସିଂହ ପୁରାଣ)

(୧୪) ଯେଉଁ ଜନ ସଂସାରରେ ପାତକ ଅର୍ଜଇ,
ହରିହର ଗଙ୍ଗା ସେବା କଲେ ସେ ତରଇ । (ପଦ୍ମ ପୁରାଣ)

(୧୫) ଯେଉଁଜନ ବୃକ୍ଷ ରାଜ ଅଶ୍ୱତ୍‌ଥ ସେବଇ,
ଗୋରୁହତ୍ୟା, ବ୍ରହ୍ମହତ୍ୟା, ସ୍ତ୍ରୀ ହତ୍ୟା ତରଇ । (ପଦ୍ମପୁରାଣ)

(୧୬) ଗୋରୁ, ବ୍ରାହ୍ମଣ, ମୁନି, ରବି; ଗଗନ, ପବନ, ପୃଥିବୀ,
ଜଳ, ବୈଷ୍ଣବ, ହୁତାଶନେ; ବିଷ୍ଣୁ ପୂଜିବ ଏତେ ସ୍ଥାନେ । (ଭାଗବତ)

(୧୭) ବ୍ରାହ୍ମଣର ପଦରଜ ଘେନେ ଯେ ଶରୀରେ,
ମୃତ୍ୟୁନାଶିସ୍ନାନ କରେ ସକଳ ତୀର୍ଥରେ । (ପଦ୍ମପୁରାଣ)

(୧୮) ବ୍ରାହ୍ମଣ ମୁଖେ ମୋର ଆହାର, ବିପଦ ଖଣ୍ଡଇ ତାହାର । (ଭାଗବତ)

(୧୯) ବୈଶାଖର ପରି ପୁଣ୍ୟ ମାସ ଆଉ ନାହିଁ,
ଯେ ଯାହା କରେ ସୁକୃତ ତା ଅକ୍ଷୟ ହୋଇ । (ପଦ୍ମ ପୁରାଣ)

(୨୦) ଶୁକଳ ଦଶମୀ ହେଲେ ଗୁରୁବାର ଦିନ,
ହୁଅଇ ସୁଦଶା ବ୍ରତ ଶୁଣ ଦେଇ ମନ । (ଲକ୍ଷ୍ମୀ ପୁରାଣ)

(୨୧) ଗୃହକୁ ଭାରିଜା ସୁତ ବିର ସିନା ଶିରୀ,
ଏ ତିନି ଯାହାର ନାହିଁ ଦରିଦ୍ର ସେ ପୁରୀ । (ନୃସିଂହ ପୁରାଣ)

(୨୨) ଯଦ୍ୟପି ଭାରିଯାଠାରେ କର୍ତ୍ତା ସ୍ନେହ ଥାଇ,
କିସ କରିବେ କୁଟୁମ୍ବଯାକ ଖଳ ହୋଇ ।
ଦିଅର ନଣନ୍ଦ ଶାଶୁ ଶ୍ୱଶୁର ଗଞ୍ଜିଲେ,
ଏ ତାପ ନ କାଟେଁ କେଭେଁ କାନ୍ତ ଦୟା ଥିଲେ । (ନୃସିଂହ ପୁରାଣ)

(୨୩) ଜଗତେ ବୋଲନ୍ତି ତୋତେ ବାଇ ଠାକୁରାଣୀ,
ବାଇ ପ୍ରାୟେ ବୁଲୁଥାଉ ହୋଇ ମୋ ଘରଣୀ ।
ଏକ ଘର କରାଉ ସହସ୍ର ଘର ଭାଙ୍ଗି,
ସହସ୍ର ଘର କରାଉ ଏକ ଘର ଭାଙ୍ଗି । (ଲକ୍ଷ୍ମୀ ପୁରାଣ)
(ଲକ୍ଷ୍ମୀଙ୍କୁ ଭଗବାନଙ୍କର ଉକ୍ତି)

(୨୪) ସାରଦା, ପାର୍ବତୀ, ଅନୁସୂୟା, ଅରୁନ୍ଧତୀ,
ମହାଲକ୍ଷ୍ମୀ ମିଶି ସଂସାରେ ଯେ ପାଞ୍ଚ ସତୀ ।(ନୃସିଂହ ପୁରାଣ)

(୨୫) ଅହିଅ ମଣ୍ଡଳେ ଜାଣ ଯେଉଁ ସ୍ତ୍ରୀରୀ ଥାଇ,
ତାହାଠାରୁ ସୁଲକ୍ଷଣୀ ବ୍ରହ୍ମାଣ୍ଡରେ ନାହିଁ । (ନୃସିଂହ ପୁରାଣ)

(୨୬) ଆଦ୍ୟ ପ୍ରୀତିଭାବ ପ୍ରାନ୍ତ କାଳ ଯାଏ ଥିଲେ ।
ସେହି ସଉଭାଗୀ ସ୍ୱାମୀ ସଙ୍ଗେ ଦିନ ଗଲେ । (ନୃସିଂହ ପୁରାଣ)

(୨୭) ସ୍ତିରୀ ଗୃହଲକ୍ଷ୍ମୀ ପୁଣି କରେ କୁଳୋଦ୍ଧାର,
ପିତୃଏ କହନ୍ତି ସ୍ତିରୀ ଲାଗି ପିଣ୍ଡାହାର । (ନୃସିଂହ ପୁରାଣ)

(୨୮) ସ୍ତିରୀ ସର୍ବ ଧର୍ମ ହେତୁ ସ୍ତିରୀ ପୁଣ୍ୟଦାତା,
ସ୍ତିରୀ ଘେନି ନବ ସୃଷ୍ଟି ସର୍ଜିଲା ବିଧାତା । (ନୃସିଂହ ପୁରାଣ)

(୨୯) ସ୍ୱଭାବେ ସ୍ତ୍ରୀ ଜନ୍ମ ହୋଇ, ଧର୍ମ ଅଧର୍ମ ନ ଜାଣଇ । (ଭାଗବତ)

(୩୦) ଦୁଷ୍ଟ ଭାରିଯା ଦୋଷ ଦେଖି, ଯେ ଗୃହେ କାମ ଲୋଭେ ରଖି
ସକଳ ଧର୍ମ ଯାଇ ନାଶ, ନରକେ ତାର ଗୃହବାସ । (ଭାଗବତ)

(୩୧) ଗୃହସ୍ଥ ନଥିବା ସ୍ତିରୀ ବଡ଼ ନିରିମାଖୀ,
ବିଧବା ହେଲେ ସଂସାରେ ସ୍ତିରୀ ବଡ଼ ଦୁଃଖୀ । (ନୃସିଂହ ପୁରାଣ )

(୩୨) ସ୍ୱାମୀର ମନକୁ ଯେହୁ କରଇ ବିରକ୍ତ
ପତିର ନୋହେ ତାଠାରେ କେବେ ସୁଖ ଜାତ । (ନୃସିଂହ ପୁରାଣ)

(୩୩) ସ୍ୱଭାବେ ସ୍ୱାମୀ ମୋର ନାହିଁ, କୁଳଟା ବାଦ ମୋର ତହିଁ ।
ଅସତୀ ନାରୀର ସ୍ୱଭାବ, କେ ଅବା ବିଶ୍ୱାସେ ଭଜିବ ।(ଭାଗବତ)

(୩୪) ସ୍ତ୍ରୀ ସଙ୍ଗ ସ୍ତ୍ରୀସଙ୍ଗୀଙ୍କ ସଙ୍ଗ, ଦୂରୁ କରିବ ପରିତ୍ୟାଗ ।( ଭାଗବତ )

(୩୫) **ରଜସ୍ୱଳା ସ୍ତ୍ରୀକୁ ଛୁଇଁବା (ନିଷେଧ) ବିଧି**

ଯୁବତୀ ରମଣୀ ମାନେ ହେଲେ ରଜୋବତୀ,
ପ୍ରଥମୁଁ ଚତୁର୍ଥ ଯାଏ ନ ଛୁଇଁବେ ପତି ।
ସହଜେ ଅଶୁଦ୍ଧ ସ୍ତିରୀ ପ୍ରଥମୁଁ ନ ଛୁଇଁ,
ଦ୍ୱିତୀୟ ଦିନେ ଛୁଇଁଲେ ଆୟୁ ହାନି ହୋଇ ।
ତୃତୀୟେ ଛୁଇଁଲେ ହରେ ବାରବ୍ରତ ଯାକ,
ଚତୁର୍ଥେ ପାଣି ନ ପାନ୍ତି ତାର ପିତୃ ଲୋକ ।
ପଞ୍ଚମ ରାତ୍ରରେ ପ୍ରିୟା ପାଶେ ଚଳିଗଲେ,
ତହିଁ କିଛି ଦୋଷ ନାହିଁ ପୃଥିବୀ କହିଲେ । (ନୃସିଂହ ପୁରାଣ)

(୩୬) ଗର୍ଭିଣୀ ସ୍ତ୍ରୀ ଯେବେ ଶୁଏ ହୋଇ ଚିତି,
ଅବଶ୍ୟ ପ୍ରମାଦ ତାକୁ ପଡ଼େ ଜାଣିବଟି । (ନୃସିଂହ ପୁରାଣ)

(୩୭) ସ୍ତିରୀ ନ ଥିଲା ପୁଂସକୁ କାହିଁରେ ନ ଗଣି,
ସ୍ତିରୀ ଲାଗି ସଂସାରରେ ଜନମନ୍ତି ପ୍ରାଣୀ । (ନୃସିଂହ ପୁରାଣ)

(୩୮) ଭୋ ନାଥ ତୋର ମାୟାବଳେ, ମୋହିତ ଜନ ଏ ଶୟଳେ ।
ଅନର୍ଥ ଅର୍ଥ ପ୍ରାୟେ ମଣେ, ନ ଭଜେ ତୋହର ଚରଣେ ।
ଦୁଃଖ ଗହଳେ ସୁଖ ଆଶେ, ପଡ଼ଇ ଦାରା ମୋହ ପାଶେ ।
ମୈଥୁନ ସୁଖେ କାଳ ବଞ୍ଚେ, ନ ବୁଝି ଧନ ନିତ୍ୟେ ସଞ୍ଚେ ।
ଅନେକ ଜନ୍ମ ପୁଣ୍ୟଫଳେ, ମନୁଷ୍ୟ ଦେହ ରଚିତଳେ ।
(ଭାଗବତ)

(୩୯) ଆପେ ଢାଇଁ ରହିଥିଲେ ସବୁ ଅର୍ଜି ପାରି ।
ଗୃହ ଦାରା କୁଟୁମ୍ବାଦି ମିତ୍ର ସୁଖ-ଶିରୀ । (ନୃସିଂହ ପୁରାଣ)

(୪୦) ସଂସାର ଯାକକୁ ପୁତ୍ରପ୍ରାୟେ ଯେ ମଣଇ,
ଧନ ପୁତ୍ର ଆୟୁ ଯଶ ପ୍ରତିଷ୍ଠା ବଢ଼ଇ । (ଭାଗବତ)

(୪୧) କୋପଟି ପ୍ରାଣୀଙ୍କ ଦେହେ ଅଟେ ମହାକାଳ,
କୋପଟି ଅଟଇ ଏକା ପରମ ଚଣ୍ଡାଳ । (ମାର୍କଣ୍ଡ ପୁରାଣ )

(୪୨) ଶ୍ୱଶୁର ଘରେ ଜୁଆଇଁ ଯେବେ ରହେ ଯାଇ,
ଦିନକୁ ଦିନ ଆଦର ତା'ର ଊଣା ହୋଇ;
କି ରୂପେ ଖସିବି ବୋଲି ହୁଏ ଛଟ ପଟ,
କତରା ଖଣ୍ଡେ ଧରିଣ ଖୋଜେ ଦାଣ୍ଡବାଟ । (ନୃସିଂହ ପୁରାଣ)

(୪୩) ଧନବନ୍ତ ଲୋକ ଯେବେ ଗର୍ବିତ ନୁହଇ
ତାହାକୁଟି ଭାଗ୍ୟବନ୍ତ ସଂସାରରେ ଯେ କହି । (ନୃସିଂହ ପୁରାଣ)

(୪୪) ଦାରା ତନୟ ଧନରେ ଯେ ହୁଅନ୍ତି ମୋହି,
ଚାକୁଣ୍ଡା ବୋଲି ତାହାକୁ ସଂସାରରେ କହି । (ନୃସିଂହ ପୁରାଣ)

(୪୫) ସମସ୍ତେ ଧନ ଦରବ ପଦାର୍ଥରେ ବଶ,
ଏକ ଦୁଇ ହେଲେ ସର୍ବେ ଲୋଡ଼ନ୍ତି ପଚାଶ ।
ପଚାଶରୁ ଶତେ ଶତୁଁ ସହସ୍ରେକ ପାଞ୍ଚ,
ସହସ୍ରେକ ହେଲେ ପୁଣି ଲକ୍ଷେ ମନେ ପାଞ୍ଚ ।
ଲକ୍ଷରୁ କୋଟି ହୋଇଲେ ପୁଣି କ୍ରୋଡେ ପାଞ୍ଚେ;
କ୍ରୋଡେ ଯାଏ ହେଲେ ପୁଣି ଇନ୍ଦ୍ରପଦ ଇଚ୍ଛେ ।
ଏହି ରୂପେ ପ୍ରାଣିଙ୍କି ସେ କରାଏ ପ୍ରବଳ,
ତହିଁରେ ଭୁଲିଣ ଲୋକ ଧନେହୁଏ ଭୋଳ । (ନୃସିଂହ ପୁରାଣ)

(୪୬) ଧନ ଅର୍ଜି ସଞ୍ଚେ ଯେହୁ ନ ଖାଇ ନ ଦେଇ,
ଇହ ପର ଲୋକେ ସେହୁ ନାନା ଦୁଃଖ ପାଇ । (ପଦ୍ମ ପୁରାଣ)

(୪୭) ଧନ ସଞ୍ଚଇ ରାତ୍ର ଦିନ, ନ କରେ ସୁଖ-ଭୋଗଦାନ (ଭାଗବତ)

(୪୮) ଯୁଆ ଶକଟା ଯେ ପଶା ଖେଳେ ଯେବେ ବସି,
ସେ ପଡ଼ଇ, ଲକ୍ଷ୍ମୀ ତାର କନ୍ଧୁ ପଡ଼େ ଖସି । (ନୃସିଂହ ପୁରାଣ)

(୪୯) ଯେତେ ଧନ ଦ୍ରବ୍ୟ ଥିବ, କାହା ଆଗରେ ନ କହିବ । (ରସବିନୋଦ)

(୫୦) ଥୋକାଏ ଦିଅଇ ଯେହୁ ଥୋକାଏ ସଞ୍ଚଇ,
ଇହ ପର ଲୋକ ସବୁ ସୁଖ ସେ ଲଭଇ । (ପଦ୍ମ ପୁରାଣ )

(୫୧) ଦେବା ଦେଇବାକୁ (ଦ୍ୟାଇବାକୁ) ହରି,
କରତା ଅଟେ ସବୁରି । (ଦାର୍ଢ୍ୟତାଭକ୍ତି)

(୫୨) ଧନ ଅର୍ଜ୍ଜନେ ଯାର ଆଶ, ନିରତେ ଦୁଃଖେ ସୁଖେ ପ୍ରାଣ ।(ଭାଗବତ)

(୫୩) ଧନର ଲୋଭରେ ପ୍ରାଣୀ ନ ବସନ୍ତି ସ୍ଥିରେ,
ଧନ ଲାଗି ଅଳପକେ ମରୁଛନ୍ତି ନରେ । (ନୃସିଂହ ପୁରାଣ)

(୫୪) ଧନ ହୋଇଲେ ପ୍ରାଣୀ ମତିହୁଏ ବଣା,
ଧନଥିଲା ଠାବରେ ତ ପଡ଼େ ରାତିହଣା । (ନୃସିଂହ ପୁରାଣ)

**ଖାଦ୍ୟର ନାମ ଓ ଭୋଜନ ବିଧି**

(୫୫) ବ୍ୟାଧି ଶେଷ ଋଣ ଶେଷ ଶତ୍ରୁ ଶେଷ ପୁଣି,
ରଖିଲେ କାଳାନ୍ତେ ଏହି ବଢ଼େ ପ୍ରଳେ ପାଣି । (ନୃସିଂହ ପୁରାଣ)

(୫୬) ପଦାର୍ଥ ଅର୍ଜି ନୁହଇ ଯେବେ ଦାନଶୀଳ,
ସେମାନଙ୍କୁ ଦରିଦ୍ର ବୋଲିଟି କେବଳ । (ନୃସିଂହ ପୁରାଣ)

(୫୭) ଦାନ ହିଁ ଦେଉଥିବ ନିତ୍ୟେ, ଲୋଭ ନ କରି କଦାଚିତେ । (ଭାଗବତ)

(୫୮) ଭିକ୍ଷା ମାଗିଲେ ଯେ ଷଡ଼ ନିଶ୍ୱାସେ ତା ଦେବ,
ନୋହିଲେ ତ ମୂଳ ଲାଗି ନେବା ପ୍ରାୟ ହେବ । (ନୃସିଂହ ପୂରାଣ)

(୫୯) ବୁଝିଲେଟି ଏହି ଦେହ ଅଟେ ମାୟା ପାଶ,
କୁଟୁମ୍ବ ସମ୍ପତ୍ତି ପୁତ୍ର ବନ୍ଧୁ ଦାରା ବାସ ।
ସମସ୍ତଙ୍କୁ ବୋଲଇ ମୁଁ ମୋହର ମୋହର,
ବୁଝିଲେ ଗଲାବେଳକୁ ନୁହେଁ କେ କାହାର । (ନୃସିଂହ ପୁରାଣ)

(୬୦) ଯାବତ ଥାଇ ଅର୍ଥଲାଭ,   ତାବତ ଥାଇ ପ୍ରିୟ ଭାବ ।
ଯାବତ ଦେହେ ପ୍ରାଣ ଥିବ, ତାବତ ସନ୍ତୋଷେ ବଞ୍ଚିବ ।
ଯାବତ ନ ପୁରେ ଉଦର,  ତାବତ ଜ୍ଞାନ ନାହିଁ ମୋର । (ଭାଗବତ)

(୬୧) ଦୃଢ଼ ନ ଥାଇ  କର୍ମ ଯେତେ, ଫଳ ନ  ଫଳେ କଦାଚିତେ ।
(ଧାର୍ଯ୍ୟତା ଭକ୍ତି)

(୬୨) ଜୟ କଲା ସ୍ଥାନେ କେଭେଁ ନ ରହିବ କ୍ଷଣେ,
ଏକଥା ମୁନିଏ ଲେଖି ଅଛନ୍ତି ପୁରାଣେ । (ନୃସିଂହ ପୁରାଣ)

(୬୩) ଯେବେ ମିଳିବ ନୂତନ ବସ୍ତ୍ର ଅଳଙ୍କାର,
ଏଥେଁ ହେଳା ନ କରିଣ ପିନ୍ଧିବ ତତ୍‌କାଳ । (ନୃସିଂହ ପୁରାଣ)

(୬୪) ଯେଉଁ ପଦାର୍ଥ ଲୋଚନ ପଥେ ନ ଦେଖିବ,
ତହିଁର ବାରଣ କେଭେଁ ପରତେ ନ ଯିବ । (ମାର୍କଣ୍ଡ ପୁରାଣ)

(୬୫) ଯେତେ ପ୍ରକାର କହିବ ବାବୁ, କହିବା କଥାକୁ (ତୁ) ପରତେ ନଯିବୁ ।
(ରସବିନୋଦ)

ଜଳ, ବୈଷ୍ଣବ, ହୁତାଶନେ; ବିଷ୍ଣୁ ପୂଜିବ ଏତେ ସ୍ଥାନେ । (ଭାଗବତ)

(୬୬) ଯେ ହିତ କରେ ପର ହୋଇ, ତା ତହୁଁ ବନ୍ଧୁ ଅନ୍ୟନାହିଁ । (ଭାଗବତ)

(୬୭) କୁଟୁମ୍ବ ଜଞ୍ଜାଳ ଦେହକୁ ଯେ କାଳ ପାଶ,
ଏତେ ଜଞ୍ଜାଳେ ରହି କେ କରେ  ଜ୍ଞାନରସ । (ନୃସିଂହ ପୁରାଣ )

(୬୮) ଭଲ ହେଲେ ବୋଲନ୍ତି ଯେ ଆୟୁ ମୋର ଥିଲା,
ମୃତ୍ୟୁ ହୋଇଲେ ବୋଲନ୍ତି ବଳେ ନାଶ ଗଲା । (ନୃସିଂହ ପୂରାଣ)

(୬୯) ତା ଜନ୍ମ ଧନ୍ୟ ଏ ସଂସାରେ,ଯେ ରହେ ପର ଉପକାରେ ।(ଭାଗବତ)

(୭୦) ବାଳ ବୃଦ୍ଧ ଯେ ତରୁଣ,   ଅବଶ୍ୟ ହୋଇବ ମରଣ । (ଭାଗବତ)

(୭୧) ବାଳକ ବୃଦ୍ଧ ତରୁଣ ଧରି ତିନି ରୂପ,
ଭୁଞ୍ଜଇ ଅର୍ଜିଲା ଦୁଃଖ ସୁଖ ପୁଣ୍ୟ ପାପ । (ମାର୍କଣ୍ଡ ପୂରାଣ)

(୭୨) ଘର ବୋଲି ବୋଲୁଛୁ ଯେତେ ପଦାର୍ଥ,
ଘଟ ଛୁଟିଲେ ତତେ ବୋଲିବେ ଭୂତ ।
ଘର ଘରଣୀ ଦେହ କିଛାଇ ଥିବେ,
ଘେନି ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବରେ ? (ମନବୋଧ ଚଉତିଶା)

(୭୩) ପୁଲି, ନାଡ଼ି ମନୋହର ଅପମାଲୁ କାନ୍ତି;
ଖଣ୍ଡ ଗଜା ପରେ କର୍ପୂର ଗୁଣ୍ଡ ସିଞ୍ଚି,
ଶିଙ୍ଗଡ଼ା ଖାଇରେ ଲବଣୀ ଯେ ମେଞ୍ଚି, ମେଞ୍ଚି;
ଶାଚିପଣା, ଦୁଧସର, କ୍ଷୀରି, ସିଂହାର ଖଇ, କାକରା, ଛତୁଆ,
ଚନ୍ଦ୍ରକାନ୍ତି, ରସକୋରା, ଖଜା, ଗଜା ପରିପାକ, ସାକର,
ଆରିଷା, ନାନମାନ, ଚକୁଳି, ଏଣ୍ଡୁରି, ଛୁଞ୍ଚିପତ୍ର, ଚିଟଉ ।

(୭୪) ଦକ୍ଷିଣ ପଶ୍ଚିମ ମୁଖେ ଯେ ବସି ଭୁଞ୍ଜଇ ।
ଏମାନଙ୍କ ପାଶୁ ଯାନ୍ତି ଲକ୍ଷ୍ମୀ ଦୂର ହୋଇ । (ଲକ୍ଷ୍ମୀ ପୁରାଣ)

### ବାଦ୍ୟଯନ୍ତ୍ରର ନାମ

(୭୫) ବାଜଇ ଯେ ବିଜି ଘୋଷ ଝାଞ୍ଜ କରତାଳ,
ଢୋଲ ଦମା ଟମକ ଯେ ଦୁନ୍ଦୁଭି କଂସାଳ ।
ଡାକ ଡମ୍ବରୁ ମୃଦଙ୍ଗ ବୀଣା ଭେରି ବାଦ୍ୟ,
ଘୁମୁ ଘୁମୁ ଦୋଷରି ଚାଙ୍ଗୁ ନାଦ ।
ଶଙ୍ଖ କାହାଳି ଡିଣ୍ଡିମ ବାଜେ ଡିବିଡ଼ିବି,
ସିତାର ଡମ୍ବରୁ ବଂଶୀ ମିଷ୍ଟ ସ୍ୱରେ ଶୁଭି ।
କାହାଳି କମ ଭୂତୁଙ୍ଗ ଦମା ଶଙ୍ଖ କଳା,
ଘଣ୍ଟି ଘଣ୍ଟା ଘାଗୁଡି ଯେ ବାଜେ ଯୋଡ଼ା ଯୋଡ଼ା । (ନୃସିଂହ ପୁରାଣ)



# ପ୍ରବାଦ ବଚନ

(୧) କାହାର ଗୁଣ କେଉଁଠୁ ଜାଣିବ

ଗାଁ ପରିଗୁଣ କେମନ୍ତେ ଜାଣିବ ? ଧୋବା ତୁଠରୁ ଦିଶେ;
ବନ୍ଧୁ ପରିଗୁଣ କେମନ୍ତ ଜାଣିବ ? ଅଧବାଟରୁ ହସେ
(ବା)ଦୁଃଖ ବେଳେ ଯେବେ ଆସେ ।
ଭାରିଯା ପରିଗୁଣ କେମନ୍ତେ ଜାଣିବ ? ନିତି ପତି ଘଷେ;
ସ୍ୱାମୀ ପରିଗୁଣ କେମନ୍ତେ ଜାଣିବ ? ବୁଢ଼ୀ ଦିନେ ଯେବେ ରସେ;
ଭାଇ ପରିଗୁଣ କେମନ୍ତେ ଜାଣିବ ? କଳି ବେଳେ ସଙ୍ଗେ ମିଶେ;
ବୁଢ଼ା ପରିଗୁଣ କେମନ୍ତେ ଜାଣିବ ? ନିତି ନାମ ଘୋଷେ;
ଧନି ପରିଗୁଣ କେମନ୍ତେ ଜାଣିବ ? ଲକ୍ଷେ ଜୀବଙ୍କୁ ପୋଷେ;
ସାହୁ ପରିଗୁଣ କେମନ୍ତେ ଜାଣିବ ? ମଧୁର ବଚନ ଭାଷେ;
ରୋଗ ପରିଗୁଣ କେମନ୍ତେ ଜାଣିବ ? ପଥି ଔଷଦରେ ଖସେ;
ଭୃତ୍ୟ ପଡିଗୁଣ କେମନ୍ତେ ଜାଣିବ ? ମନ ଜାଣିକରି ଆସେ;
ଫୁଲ ପରିଗୁଣ କେମନ୍ତେ ଜାଣିବ ? ଦୂରରୁ ଯେବେ ବାସେ
(ବା) ମହମହ ହୋଇ ବାସେ ।
ପୁଅ ପରିଗୁଣ କେମନ୍ତେ ଜାଣିବ ? ବୁଢ଼ା ଦିନେ ଯେବେ ପୋଷେ;
ଶାଶୁ ପରିଗୁଣ କେମନ୍ତେ ଜାଣିବ ? ପାଞ୍ଚ ମାଇପିରେ ବସେ;
ବୋହୂ ପରିଗୁଣ କେମନ୍ତେ ଜାଣିବ ? ନିତି ଭାତ ପରସେ;
ଗଭା ପରିଗୁଣ କେମନ୍ତେ ଜାଣିବ ? ଯୁଦ୍ଧାରେ ଯେବେ ଖୋସେ ।

(୨) କ୍ୱଚିତ ଦାନ୍ତୁରା ମୂର୍ଖ
କ୍ୱଚିତ ଦାନ୍ତରୀ ସତୀ

(୩) ଦଶ, ନାହିଁ ଦୋଷ
(ଦଶଲୋକ ମିଶି ଯେଉଁ କାର୍ଯ୍ୟ କରନ୍ତି, ତାହା ଦୋଷ ଶୂନ୍ୟ ହେବା ସ୍ୱାଭାବିକ)

(୪) ମଞ୍ଜା, ଭଣ୍ଡା ରାଇତା, ପିତୃଲୋକ ଖାଇଥା ।
(ଶ୍ରାଦ୍ଧ ପତ୍ରରେ କଦଳୀ ମଞ୍ଜା ଆସିଲ, ଭଣ୍ଡାର ରାଇତା ତରକାରି ବଢ଼ା ହେବା ବିଧି)

(୫) ଦାରୀ (ବେଶ୍ୟା), କୁକୁର, ଯୋଗୀ, ଘୋଡ଼ା, କେବେ ନୁହନ୍ତି ଯୋଡ଼ା ଯୋଡ଼ା, ଯେବେ ହୁଅନ୍ତି ଯୋଡ଼ା ଯୋଡ଼ା, ତେବେ ହୁଅନ୍ତି କାମୁଡ଼ା କାମୁଡ଼ା ।

(୬) ଭାଡୁଆ(ଗଣ୍ଡିଆ) କାହାର ଘଇତା ? ଦାରୀ(ବେଶ୍ୟା) କାହାର ମାଇପ ?

(୭) ଗଉଡ଼ ବୁଡ଼ିଲେ ଦିନେ, ଚାଷି ବୁଡ଼ିଲେ ବରଷେ, ଗେରସ୍ତ ବୁଡ଼ିଲେ ପୁରଷେ ।

(୮) ବିଦ୍ୟା, ବପୁ, ବଚନ, ବସ୍ତ୍ର, ବିଭବ
ଏହି ପାଞ୍ଚଟି 'ବ' ଅକ୍ଷର ପଦାର୍ଥ ଦ୍ୱାରା ଲୋକ ସମାଜରେ ଆଦୃତ ହୁଏ ।

(୯) ଜୀବନସାରା ନିରପେକ୍ଷ ଅଟନ୍ତି- 'ବ୍ରାହ୍ମଣ', 'ବାଘ', 'ବିରାଡ଼ି'
ହାଡ଼ରୁ ମାଉଁସ ରେକେଟି ଖାଆନ୍ତି- 'କରଣ', 'କୁକୁର', ହାଡ଼ି ।

(୧୦) କାଠି କଠାର କାଠି (ଗଣିବା) ହଦ୍ ।
(ସଂଖ୍ୟା ଗଣନା- ଏକ, ଦଶ, ଶତ, ସହସ୍ର, ଅଯୁତ, ଲକ୍ଷ, ନିଯୁତ, କୋଟି, ଅର୍ବୁଦ, ବୃନ୍ଦ, ଖର୍ବ, ନିଖର୍ବ, ଶଙ୍ଖ, ପଦ୍ମ, ସାଗର, ଅନ୍ତ୍ୟ, ମଧ୍ୟ, ପରାର୍ଦ୍ଧ, ଅଙ୍କୁଶ, କାଠି; ଏଠାରୁ ଗଣନା ଶେଷ ।)

(୧୧) **କାହାକୁ କେଉଁଟା ଅଣ୍ଟେ ନାହିଁ**

କାନକୁ ନ ଅଣ୍ଟେ ଗୀତ,

ଆଖିକୁ ନ ଅଣ୍ଟେ ଚିତ୍ର,

ମାଆକୁ ନ ଅଣ୍ଟେ ସୁତ (ପୁଅ)

(୧୨) **ଗୋରୁ ଗାଈଙ୍କର ବିଭିନ୍ନ ଅବସ୍ଥାର ନାମ**
(ଷଣ୍ଢ ବା ବୃଷଭ, ଗାଈ, ବଳଦ, ଛଡ଼ା, ଦାମୁଡ଼ୀ, ବାଛୁରୀ, ହଡ଼ା, ବୁଢ଼ା, ଅଧାବଳଦ, ଅଧୂଆଣୀ ଗାଈ, କାଣ୍ଡ ଷେଣ୍ଢୁଆ, ଧରା ଅଧରା ଅଣ୍ଡିରା ।)

(୧୩) **ମାଡ଼ର ପ୍ରକାର ଭେଦ ବର୍ଣ୍ଣନା**

କେଶାକର୍ଷଣ, ହାବୁକା, ଗଡ଼ଗଡ଼ା, ଚାପୋଡ଼ା, ବିଧା, କଡ଼ି ।
ନଡ଼ (ଲେଡ଼ା), କାନମୋଡ଼ା, କହୁଣୀ କୋରଡ଼ା, ପାଣ୍ଡେଇ ଠେଙ୍ଗା ହଡ଼ି,
ଝଙ୍କା, ବାହୁଛଟା, ସମର୍ଥ, ଗୋଇଠା, ଚେଙ୍ଗା, ମୁଖ୍ୟ, ଚେଙ୍ଗିବା ।
ଖାଙ୍କୋଳି, ତଉକାନ୍ତି, ଚାବୁକ, ଡିହ, ତୋଟ୍ୟାଧିକନ୍ୟାଧିକ ।।

(୧୪) **ସୁନ୍ଦରୀ ସ୍ତ୍ରୀର ଭିନ୍ନ ଭିନ୍ନ ଅଙ୍ଗସଙ୍ଗେ ବିଭିନ୍ନ ଫୁଲର ତୁଳନା**

(୧) ମୁଖ- ପଦ୍ମ (୨) ନାସା- ତିଳ (୩) ଦେହ- ଶିରୀଷ
(୪) ଚକ୍ଷୁ- ପଳାଶ (୫) ସ୍ତନ- ଅଶୋକ ଗୁଚ୍ଛ (୬) ଆଙ୍ଗୁଠି- ଚମ୍ପାକଢ଼ି
(୭) ଅଧର- ଜବା (୮) ଦାନ୍ତ- କୁନ୍ଦ (୯) କାନ- ଅପରାଜିତା
(୧୦) ବାହୁ-ମୃଣାଳ (୧୧) ପାଦ-ପଦ୍ମ ।

(୧୫) ଜୀବନ ଯିବା ପରିଯନ୍ତେ, ସ୍ତିରିଙ୍କି ନ ଯିବ ପରତେ ।
(ଦୀନକୃଷ୍ଣ- ରସ ବିନୋଦ)

(୧୬) ଦେଲାନାରୀ, ହେଲା ପାରି ।

(୧୭) କନ୍ୟାଦାୟ ମହାଦାୟ, କନ୍ୟା ଦାନ ମହା ଦାନ ।

(୧୮) କଳି ନଥିଲେ ଦି (ଦୁଇ) ମାଇପ କର,
କଉଡ଼ି ନ ସରିଲେ ଦୋ ଘରା (ଦୁଇଟା ଘର) କର ।

(୧୯) ମାଆ, ମାଇପ, ମାଟି- ଏ ତିନିଏ ଖାଇବେ ବାଣ୍ଟି
(ବାଲ୍ୟାବସ୍ଥାରେ ମା' ପୁଅ ଉପରେ ଦୃଷ୍ଟି ପକାଇ ଶିଶୁର ଶରୀରକୁ ଡାହାଣୀ ସ୍ୱରୂପ ଶୋଷେ, ଯୌବନରେ ଭାର୍ଯ୍ୟା (ସ୍ତ୍ରୀ) ପୁରୁଷ ଶରୀରର ବଳଯାକ ଖାଏ, ମୃତ୍ୟୁ ହେଲେ ଶରୀରକୁ ମାଟିଖାଏ ।)

(୨୦) ରାଣ୍ଡ, ଭାଣ୍ଡ, ମୃଷା, ମଶା, କଲିକତାରେ ଏ ଚାରିଙ୍କ ବସା ।

(୨୧) ଚୋରକୁ ଧରିବ ଗଣ୍ଠିରେ, ନାରୀକୁ ଧରିବ ଖଟରେ ।

(୨୨) ଚେତିଲା ନାରୀ ଘର କରେ,ଚେତିଲା ରାଣ୍ଡ ଘର କରେ ।
ଚେତିଲା ନାରୀ ସୁଖ ଯାଏ, ନ ଚେତିଲା ନାରୀ ଘରୁ (ଦାଣ୍ଡକୁ) ଯାଏ ।

(୨୩) କଟକ ସହରରେ- ବାବନ ବଜାର, ତେପନ ଗଳି ।
ପୁରୀ ସହର- ସାତ ସାହି, ବୟାଳିଶି କନ୍ଦି ।

(୨୪) ଜଳରେ ଜଳ ପ୍ରତିଷ୍ଠା- ଜଳାଶୟ, ଗଙ୍ଗାଜଳ ଦ୍ୱାରା ପ୍ରତିଷ୍ଠା କରାଯାଏ ।
ମଳରେ ପ୍ରତିଷ୍ଠା- ଝାଡାଫେରିବା ପରେ ମଳ ଲାଗିଥିବା ହାତକୁ ଗୋବର (ଗାଈମଳା)ମାଟିରେ ଶୁଦ୍ଧ କରାଯାଏ ।
ବ୍ରାହ୍ମଣ ଖାଆନ୍ତି ଶୂଦ୍ର ଅଇଁଠା- ବ୍ରାହ୍ମଣମାନେ ଶୂଦ୍ରଙ୍କ ଶ୍ରାଦ୍ଧରେ ଉତ୍ସର୍ଗ ହେବା ଚାଉଳ ଖାଆନ୍ତି (ଅଇଁଠା ଚାଉଳ) ।
ଶିବ ଖାଆନ୍ତି ବାଛୁରୀ ନାଳ- ବାଛୁରୀ ପିଇବା ପରେ ଦୁହାଁଦୁଧ ମହାଦେବଙ୍କୁ ଭୋଗ ହୁଏ (ବାଛୁରୀର ନାଳଯୁକ୍ତ ଦୁଧ) ।
ଶ୍ରୀକୃଷ୍ଣ ମୁଣ୍ଡରେ ଶିଖଣ୍ଡିଚୂଳ- ଶ୍ରୀକୃଷ୍ଣ ମୁକୁଟ (ଶିଖାରେ) ମୟୂରଚୂଳ ଦିଆଯାଏ ।

(୨୫) ଉପବାସଠାରୁ ବିପତ୍ତି ନାହିଁ, ଘୋଡ଼ାଚଢ଼ାଠାରୁ ସମ୍ପତ୍ତି ନାହିଁ ।

(୨୬) ଗାଁ ଧୋଓରା, ସାଇ ବେହେରା,
ନମିଳେ ଋଣ, ପିତା ତିଅଣ,
ସରସ ଲୁଣ, ଝିଅ ମରଣ,
ଆଗେ ଦୁଃଖ ପଛେ ସୁଖ ।

(୨୭) ଗାଳି ଦେବା ଲୋକ ବଡ ନୁହେଁ, ଗାଳି ସହିବା ଲୋକ ବଡ ।

(୨୮) ଦେଲା ପୁଅ, ଗେହ୍ଲା ।
(ଅର୍ଜନ କରୁଥିବା ପୁଅକୁ ପିତା ମାତା ସ୍ନେହ କରନ୍ତି )
(ଅବିବାହିତା କନ୍ୟାକୁ ବିବାହ ଦେବା ପରେ କନ୍ୟାପିତା ମୁକ୍ତି ପାଏ)

(୨୯) ଏହି ପେଟ,
ଏହି ପେଟ ଲାଗି ବଙ୍କା ବାଟ,
ଏହି ପେଟ ଲାଗି ଛଟ ପଟ,
ଏହି ପେଟ ଲାଗି ଧାନ କୁଟ,
ଏହି ପେଟ ଲାଗି ନଟ ଘଟ,
ଏହି ପେଟ ଲାଗି ନିତି (ବସିଚି) ହାଟ,

ଏହି ପେଟ ଲାଗି ପିଠିରେ ଛାଟ,

ଏହି ପେଟ ଲାଗି ବଦନ ହେଟ,

ଏହି ପେଟ ଲାଗି ଦେଖ ସୁକୁଟ,

ଏହି ପେଟ ଲାଗି ଯମର ଭେଟ ।

(୩୦) କାର୍ତ୍ତିକି, ଶୀତ କରେ ରାତିକି;
ମଗୁଶିର(ରି), ଶୀତ କରେ ଶିର୍ ଶିର୍ (ଶିର ଶିର);
ପୁଷ, ଶୀତ କରେ ଭୁଷ୍ ଭୁଷ୍;
ମାଘ, ଶୀତର ବଡ ରାଗ;
ଫଗୁଣ, ଶୀତ କରେ ଦି ଗୁଣ;
ଚଇତ, ଶୀତ ଯାଏ ବୋଇତ ।

(୩୧) ତପା, ଜପା, ଭୋପା, ଗେଫା- ଯାଙ୍କ ଦେହି ପାଠ ନୁହେଁରେ ବୋପା !
(ଯେ [illegible]ରେ, ଯେ ମାଳି ଜପେ, ଯେ ଆସ୍ଫାଳନ କରେ, ଯେ ପେଟୁ,
ସେମାନେ ପାଠ ପଢ଼ି କୃତ କାର୍ଯ୍ୟ ହୋଇ ପାରନ୍ତି ନାହିଁ)

(୩୨) ବଡ଼ ବଡୁଆ ହୋ;
ଅନ୍ଧାରରେ ଆସ, ଆଲୁଅରେ ଯାଅ ।
ବାଇଶି ପାହାଚରେ ମହାର୍ଦ୍ଧ ଖାଇ, ଗଡ଼ଗଡ଼ଉ ଥାଅ ।।
(କାର୍ତ୍ତିକ ମାସରେ ବା ଦୀପାବଳୀ ଅମାବାସ୍ୟାରେ ଲୋକେ ପିତୃ ଲୋକଙ୍କୁ
ଶ୍ରାଦ୍ଧ ଦେଇ ସାରି ଦୀପ ଦାନ କରି, ଗୋଛାଏ କାଉଁରିଆ କାଠିରେ ନିଆଁ
ଜାଳି ଉପରକୁ ଦେଖାଇ ପିତୃ ପୁରୁଷଙ୍କୁ ଏହି ପଦ ବୋଲି ଡାକନ୍ତି)

(୩୩) ନ ଖାଇବୁ ବାବୁ ଡୁରେ, ସଭାରେ କାକରା,
ଲକ୍ଷେ ଲକ୍ଷେ ଶଳା ଥାଇ ମାରିବେ ଠା (ଟା)କରା ।
ନ ଖାଇବୁ ବାବୁ ଡୁରେ, କଳକଳା ଗୁଆ,
ପୁରୁଷ ପଣରେ ହେବୁ ମାଇପି ଚାଟୁଆ ।
ନ ଖାଇବୁ ବାବୁ ଡୁରେ, ହୁମ (ହୋମ) ତଳ ଘିଅ,
ଜାଣି ଶୁଣି ବିଭା ହେବୁ ଜନକର ଝିଅ

ନ ଖାଇବୁ ବାବୁ ତୁରେ, ସାତ ଦିନେ ମଣ୍ଡା,
ଗୁହାଳ କଣରେ ତତେ କରିଦେବେ ମେଣ୍ଢା ।
(ଶଶୁର ଘରକୁ ଯାଉଥିବା ପୁଅକୁ ମା'ର ଉପଦେଶାତ୍ମକ ବଚନ)

(୩୪) ଖା ଖା (ଖାଆ ଖାଆ) ବୋଇଲେ କି ଦିନ ସରେ (ପେଟ ପୂରେ) ?
ଦେବି ଦେବି ବୋଇଲେ କି ଦୁଃଖ ହରେ ?

(୩୫) ଜଗତଯାକରେ ଭଗତି ମିଠା, ଶାହାସ୍ତ୍ର ମିଠା ଗୀତା;
କୁଟୁମ୍ବ ଯାକରେ ଜନନୀ ମିଠା, ବାନ୍ଧବ ମିଠା ପିତା ।
ଅରୂପଯାକରେ ସ୍ୱରୂପ ମିଠା, ମନୁଷ୍ୟ ମିଠା ଗୋରା;
ଦେବତା ଯାକରେ କାଳିଆ ମିଠା, ସବୁଠୁଁ ମିଠା କୋରା ।
ପାଣି ଯାକରେ ପଇଡ ମିଠା, ପରେ ମିଠା ପାନ ।
ସ୍ତୀରୀ ଶୋଭାବନ ରାଧିକା ମିଠା, ପୁରୁଷରେ ଭଗବାନ ।

(୩୬) (କ) ଷଡ଼ ଋତୁ- ହିମ, ଶିଶିର, ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ
(ଖ) ଷଡ଼ ଗାୟକ- କୋକିଳ, କେକୀ, କେକା, ସାରସ, ଜୀମୂତ, ଡାହୁକ ।

(୩୭) (କ) ସଂକୀର୍ତ୍ତନ ମନ୍ତ୍ର-
ହରେ କୃଷ୍ଣ ହରେ ରାମ,
ନିତାଇ ଗଉର୍ ରାଧେ ଶ୍ୟାମ୍ ।

(ଖ) କଳି ଯୁଗର ମହାମନ୍ତ୍ର-
ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ,
ହରେ ରାମ, ହରେ ରାମ, ରାମ ରାମ ହରେ ହରେ ।



# ସଂସ୍କୃତ ବଚନ

## (୧) କଷ୍ଟ ଓ ଦୁଃଖଦାୟକ ଓ ମୃତ୍ୟୁର ସ୍ୱରୂପ

(କ) ପରାଧୀନବୃତ୍ତି, ନିରାଶ୍ରୟ ହୋଇ ବସିରହିବା, ଧନ ନ ଥାଇ ବ୍ୟବସାୟ କରିବା କଷ୍ଟ ଦାୟକ । ସବୁ ପ୍ରକାର କଷ୍ଟର ମୂଳ କାରଣ ଦରିଦ୍ରତା ।

(ଖ) ସ୍ୱେଚ୍ଛାଚାରୀ ଚାକର, ଶଠମିତ୍ର, ଅଦାତା ମାଲିକ, ଉଦ୍ଧତ ଭାର୍ଯ୍ୟା, ଏମାନେ ଦୁଃଖଦାୟକ ।

## (୨) ସୁଖୀଗୃହ ଓ ସୁଖୀ ବ୍ୟକ୍ତି

ଆବଶ୍ୟକତା ଅନୁସାରେ ଆୟ ହେଉଥିବ ଏବଂ ଅର୍ଥକାରୀ ବିଦ୍ୟା ଥିବ, ସ୍ୱାସ୍ଥ୍ୟଭଲ ରହୁଥିବ, ଭାର୍ଯ୍ୟା/ସ୍ତ୍ରୀ ପ୍ରିୟ ହେବା ସଂଗେ ପ୍ରିୟ ଭାଷିନୀ ହୋଇଥିବ, ପୁତ୍ର ବିବେକବାନ ହୋଇଥିବ, ସଦ୍ ମିତ୍ରମାନେ ଥିବେ, ଚାକର/ସେବକ ଆଜ୍ଞାଧୀନ ଥିବ । ପ୍ରତ୍ୟହ ଅତିଥି ସତ୍କାରହେବା ସଙ୍ଗେ ସଙ୍ଗେ ମିଷ୍ଟାନ୍ନ ଭୋଜନ ଥିବ, ନିତ୍ୟ ସାଧୁସଙ୍ଗ ଓ ଭଗବଦ୍ ଆରାଧନା ଥିବ । ଏପରି ଲୋକ ସଂସାରେ ସୁଖୀ ଏବଂ ଏପରି ବ୍ୟକ୍ତିର ଗୃହ ଧନ୍ୟ ଅଟେ ।

## (୩) ଅତ୍ୟନ୍ତ ସୁଖ ଦାୟକ

ଶୀତ ସମୟରେ ଅଗ୍ନି, କ୍ଷୀର ଭୋଜନ, ରାଜସମ୍ମାନ ଲାଭ, ପ୍ରିୟ ଲୋକ ସହିତ ମିଳନ ଅମୃତ ତୁଲ୍ୟ ।

## (୪) ମିତ୍ର କିଏ କେତେବେଳେ

ବିଦ୍ୟା ବିଦେଶରେ ମିତ୍ର । ଘରେ ଭାର୍ଯ୍ୟା/ସ୍ତ୍ରୀ ମିତ୍ର । ରୋଗୀର ଔଷଧ ମିତ୍ର । ମୃତ ବ୍ୟକ୍ତିକର ଧର୍ମ ହିଁ ମିତ୍ର ।

## (୫) ସୁଦୃଢ଼ ମିତ୍ରତା ରକ୍ଷାର କବଚ

ସୁଦୃଢ଼ ମିତ୍ରତା ରକ୍ଷା କରିବାକୁ ହେଲେ, ଉକ୍ତ ମିତ୍ର ସହିତ ବାଦ ବିବାଦ ଏବଂ ଅର୍ଥ ସମ୍ପର୍କ ରଖିବା ଉଚିତ ନୁହେଁ । ପୁଣି ତାର ସ୍ତ୍ରୀ ସହିତ ବସି ଆଳାପ କରିବା ଉଚିତ ନହେଁ ।

## (୬) ପ୍ରକୃତ ମିତ୍ରର ଲକ୍ଷଣ

ଶୁଦ୍ଧଭାବ, ତ୍ୟାଗ, ବୀରତ୍ୱ, ସୁଖ ଓ ଦୁଃଖରେ ସମାନ ଅନୁଭୂତି, ବିନୟ, ଅନୁରାଗ, ସଚ୍ଚାଭାବ, ବିନାସ୍ୱାର୍ଥରେ ବିନା ଅନୁରୋଧରେ ଯେ କର୍ମ ସମ୍ପାଦନା କରିଥାଏ; ଉତ୍ସବ, ବ୍ୟସନ, ଅନାଟନ, ଶତ୍ରୁ ସଙ୍କଟ, ରାଜ ବିପଦ, ଯମଦଣ୍ଡ ସମୟରେ ଯେ ଉପସ୍ଥିତ ହୋଇ ସହାୟକ ହୁଏ, ଯେ ପ୍ରତ୍ୟକ୍ଷରେ ଓ ପରୋକ୍ଷରେ ହିତ କରିବାକୁ ତତ୍ପର, ଯେ କ୍ରୋଧ କଲେ ମଧ ବିଚଳିତ ହୁଏ ନାହିଁ ସେମାନେ ପ୍ରକୃତ ମିତ୍ର ଅଟନ୍ତି । (ଭାଗ୍ୟରେ ଥିଲେ ଏପରି ମିତ୍ର ଲାଭ ହୋଇଥାଏ)

## (୭) କେତେବେଳେ ଅବିଶ୍ୱାସ ଭାଜନ ହୋଇଥାଏ

ମିତ୍ର ଯେତେ ଘନିଷ୍ଠ ହେଲେ ମଧ୍ୟ ଯା ସହିତ ଥରେ ଶତ୍ରୁତା ସୃଷ୍ଟି ହୋଇଛି ତାକୁ କଦାପି ବିଶ୍ୱାସକରିବ ନାହିଁ । କାରଣ କାଠ ଭିତରେ ନିଆଁ ଲୁଚିରହିଥିଲା-ପରି ତା ଠାରେ ଶତ୍ରୁଭାବ ଲୁଚିରହିଥାଏ ।

## (୮) ମିତ୍ରତା ଓ ବୈବାହିକ ସମ୍ପର୍କ ସ୍ଥାପନ କରିବା କ୍ଷେତ୍ର

ଯେଉଁ ଦୁଇ ବ୍ୟକ୍ତିଙ୍କର ସମାନ ଧନ ଓ ସମାନ ବଂଶ, ସେ ଦୁହିଁଙ୍କ ମଧ୍ୟରେ ମିତ୍ରତା ଓ ବୈବାହିକ ସମ୍ପର୍କ ସ୍ଥାପନ କରିବା ଉଚିତ । ଏଥିରୁ ଊଣାଅଧିକ ହେଲେ ଏପରି ସମ୍ପର୍କ ବର୍ଜନୀୟ ।

## (୯) ଦୁର୍ଜନ, ଅଜ୍ଞ, ଅବାଧ୍ୟ, ଅଚେତନ ବ୍ୟକ୍ତି

ଦୁର୍ଜନ ବ୍ୟକ୍ତିର ଶତଶତ ଉପକାର କଲେ ମଧ୍ୟ ତାହା ମୂଲ୍ୟହୀନ । ଅଜ୍ଞକୁ ଶହ ଶହ ମୂଲ୍ୟବାନ କଥା ଶୁଣାଇବା ବୃଥା । ଅବାଧ୍ୟକୁ ଶହେ କଥା କହି ବୁଝାଇବା ବୃଥା । ଅଚେତନକୁ ଶହ ଶହ ବୁଦ୍ଧି ବତେଇଲେ ମଧ କିଛି ଲାଭ ହୁଏ ନାହିଁ ।

## (୧୦) କେଉଁମାନଙ୍କୁ କାହିଁକି ସଂପଦ ଛାଡ଼ି ଚାଲିଯାଏ

ଅତି ବିନୟୀ ବ୍ୟକ୍ତି, ପଦେ ପଦେ ଶଙ୍କିତ ହୋଇ ଚଳୁଥିବା ବ୍ୟକ୍ତି, ଲୋକ ଅପବାଦକୁ ଭୟ କରୁଥିବା ବ୍ୟକ୍ତି, ଏମାନଙ୍କୁ ସମ୍ପଦ ବହୁ ଦୂରରୁ ଛାଡ଼ି ଚାଲିଯାଏ ।

(୧୧) **ଲକ୍ଷ୍ମୀ କାହା ପାଖରେ ଅବସ୍ଥାନ କରିବେ**

ଯେ ଉତ୍ସାହ ସମ୍ପନ୍ନ, ଯେ ଦୀର୍ଘସୂତ୍ରୀ ନୁହେଁ, ଯେ କ୍ରିୟା ସମ୍ପାଦନର ବିଧି ଜାଣେ, ଯେ ବାସନାସକ୍ତ ନୁହେଁ, ଯେ ତେଜସ୍ୱୀ, କୃତଜ୍ଞ, ଏବଂ ମିତ୍ରବାନ, ତା ପାଖରେ ଲକ୍ଷ୍ମୀ ସ୍ୱୟଂ ନିବାସ କରନ୍ତି ।

(୧୨) **(ଅନ୍ୟାୟ ଧନ) ଅର୍ଥ ନାମଧାରୀ ଅନର୍ଥ**

ଚୋରି, ହିଂସା, ମିଥ୍ୟା, ଦମ୍ଭ, କାମ, କ୍ରୋଧ, ଗର୍ବ, ଅହଂକାର, ଭେଦବୁଦ୍ଧି, ବୈର, ଅବିଶ୍ୱାସ, ସ୍ପର୍ଦ୍ଧା, ଲମ୍ପଟତା, ଯୁଆ ଓ ମଦ୍ୟପାନ- ଏହି ପନ୍ଦର ପ୍ରକାର ଅନର୍ଥ ଧନ ମନୁଷ୍ୟ ପାଖକୁ ଆସିଥାଏ । ଏଣୁ ଏମାନଙ୍କୁ ଦୂରରୁ ତ୍ୟାଗ କରିବା ଉଚିତ ।

(୧୩) **ଅନର୍ଥର କାରଣ କେଉଁମାନେ**

ଯୌବନ, ଧ ସମ୍ପଦ, ପ୍ରଭୁତ୍ୱ ଏବଂ ବିବେକହୀନତା ପ୍ରତ୍ୟେକଟି ଅନର୍ଥର କାରଣ । ଯା ପାଖରେ ଚାରୋଟି ଅନର୍ଥ ବିକଶିତ ହୁଏ ତା' କଥା କ'ଣ କହିବା ?

(୧୪) **ସମ୍ପଦ ଓ ବିପଦର ଭେଦ**

ସମ୍ପଦ ସମ୍ପଦ ନୁହେଁ କି ବିପଦ ବିପଦ ନୁହେଁ ।
ଭଗବତ୍ ସ୍ମୃତି ହିଁ ସମ୍ପଦ ଏବଂ ଭଗବତ୍ ବିସ୍ମରଣ ହିଁ ବିପଦ ଅଟେ ।

(୧୫) **ସଦ୍ୟ ପ୍ରାଣଦାୟକ ପଦାର୍ଥ**

ସଦ୍ୟ ମାଂସ, ନୂତନ ଅନ୍ନ, ବାଳା ସ୍ତ୍ରୀ, କ୍ଷୀର ଭୋଜନ, ଘୃତ ଓ ଗରମ ପାଣି ଏହି ଛ'ଟି ପଦାର୍ଥ ସଦ୍ୟ ପ୍ରାଣଦାୟକ ।

(୧୬) **ଜଳ ପାନର ଉପକାରିତା ଓ ଅପକାରିତା**

(କ) ଅଜୀର୍ଣ୍ଣରେ ଜଳପାନ ଔଷଧ ପରି ।
(ଖ) ଖାଦ୍ୟ ଜୀର୍ଣ୍ଣ ହେଲାପରେ ଜଳପାନ ବଳ କାରକ ।
(ଗ) ଖାଇବା ମଧ୍ୟରେ ଅଳ୍ପ ଅଳ୍ପ ଜଳପାନ ଅମୃତ ତୁଲ୍ୟ ।
(ଘ) ଖାଇସାରିବା ପରେ ତତ୍କ୍ଷଣାତ୍ ଜଳପାନ ବିଷତୁଲ୍ୟ ।

(୧୭) **କେଉଁ ପଦାର୍ଥ ଶରୀର ପକ୍ଷରେ ହିତକର, ଆୟୁଷ ବର୍ଦ୍ଧକ ଏବଂ ବର୍ଜନୀୟ**

(କ) ଦିନର ଶେଷ ଭାଗରେ ଦୁଗ୍‌ଧ, ରାତ୍ରି ପାହିବା ପରେ ଜଳ, ଭୋଜନ ଶେଷରେ ଘୋଳ ଦହି ପିଇବା, ଉପବାସ ଅପେକ୍ଷା ଲଘୁ ଭୋଜନ କରିବା, ସ୍ୱାସ୍ଥ୍ୟପକ୍ଷରେ ହିତକର

(ଖ) ଉଦୟ କାଳୀନ ସୂର୍ଯ୍ୟ କିରଣ, ଯଜ୍ଞଧୂମ/ହୋମର ଧୂଆଁ, ବାଳା ସ୍ତ୍ରୀ, ଝରଣା ପାଣି, ରାତିରେ ଦୁଗ୍‌ଧ ସହିତ ଅନ୍ନ ଭୋଜନ; ଆୟୁଷ ବର୍ଦ୍ଧକ ।

(ଗ) କଅଁଳ ବାଇଗଣ ପଥ୍ୟ, ବରକୋଳି ସର୍ବଦା ଅପଥ୍ୟ, ଅଦା ସର୍ବଦା ପଥ୍ୟ, କଷି ପାଣିକଖାରୁ ବିଷତୁଲ୍ୟ, ଗ୍ରୀଷ୍ମକାଳ ବ୍ୟତୀତ ଅନ୍ୟ ଦିନମାନଙ୍କରେ ଶୋଇବା- ଏସବୁ ବର୍ଜନୀୟ ।

(୧୮) **ପ୍ରୀତିର ଲକ୍ଷଣ**

ଦେବା ଓ ନେବା, ଗୁପ୍ତକଥା କହିବା ଓ ପଚାରିବା, ଖାଇବା ଓ ଖୁଆଇବା ଏ ଛଅଟି ପ୍ରୀତିର ଲକ୍ଷଣ ଅଟେ ।

(୧୯) **ଧନର ମାହାତ୍ମ୍ୟ**

(କ) ନିଜ ଅର୍ଜିତ ଧନ ଭୋଗକରିବା ଉତ୍ତମ;
ପିତା ଅର୍ଜିତ ଧନ ଭୋଗକରିବା ମଧ୍ୟମ;
ଭାଇ ଅର୍ଜିତ ଧନ ଭୋଗକରିବା ନିକୃଷ୍ଟ;
ସ୍ତ୍ରୀ ଅର୍ଜିତ ଧନ ଭୋଗକରିବା ଅଧମରୁ ଅଧମ ଅଟେ ।

**(ଖ) ଧନ ହୀନ ଲୋକକୁ**

(୧) ମା' ନିନ୍ଦା କରେ,
(୨) ପିତା ଅଭିନନ୍ଦନ କରେ ନାହିଁ,
(୩) ଭାଇ କଥା କହେନାହିଁ,
(୪) ଚାକର/ସେବକ କ୍ରୋଧ କରେ,
(୫) ପୁଅ କଥା ମାନେନାହିଁ,

(୬) ସ୍ତ୍ରୀ ଆଲିଙ୍ଗନ କରେନାହିଁ,

(୭) ବନ୍ଧୁବାନ୍ଧବ କଥାବାର୍ତ୍ତା କରନ୍ତିନାହିଁ (ଟଙ୍କା ମାଗିବା ଭୟରେ)

ପୁଣି ଧନହୀନ ଲୋକକୁ ବନ୍ଧୁ, ମିତ୍ର, ପୁତ୍ର, ପତ୍ନୀ ଆଦି ସମସ୍ତେ ତ୍ୟାଗକରନ୍ତି ଏବଂ ଧନବାନ ଲୋକକୁ ଆଶ୍ରୟ କରନ୍ତି । ପୁଣି ଧନହୀନ ହେଲେ ଧନଶାଳୀ ଅବସ୍ଥାର ଅକ୍ଷୁର୍ଣ୍ଣ ଇନ୍ଦ୍ରିୟ, ନାମ, ଗାରିମା ତୀକ୍ଷ୍ଣ ବୁଦ୍ଧି, ଗୁରୁବଚନ ପ୍ରଭୃତି ଆଶ୍ଚର୍ଯ୍ୟ ଜନକ ଭାବେ କ୍ଷଣକ ମଧ୍ୟରେ ଅନ୍ୟ ପ୍ରକାର ରୂପ ଧାରଣ କରେ । ମନୁଷ୍ୟର ଧନ ହିଁ ଏକମାତ୍ର ବନ୍ଧୁ ଅଟେ । ତେଣୁ ଧନ ଉପାର୍ଜ୍ଜନ କର । ସମସ୍ତେ ଧନର ଅଧୀନ ଅଟନ୍ତି ।

## (୨୦) ଧନର ତିନି ପ୍ରକାର ଗତି

ଦାନ, ଭୋଗ, ନାଶ । ଯେ ଦାନ କରେ ନାହିଁ ବା ଭୋଗ କରେ ନାହିଁ ତାର ଧନର ତୃତୀୟ ଗତିହୁଏ, ଅର୍ଥାତ୍ ନାଶ ହୁଏ ।

କ୍ଷୁଧାର୍ତ୍ତ ବ୍ୟାକରଣ ଖାଇ ବଞ୍ଚେ ନାହିଁ ।

ତୃଷାର୍ତ୍ତ କାବ୍ୟରସ ପାନକରି ତୃପ୍ତ ହୁଏ ନାହିଁ ।

ଛନ୍ଦଦ୍ୱାରା କୁଳ ସମୃଦ୍ଧ ହୁଏ ନାହିଁ ।

କେବଳ ଧନ ଉପାର୍ଜ୍ଜନ ଛଡା ଅନ୍ୟ ଗୁଣ ସବୁ ନିଷ୍ଫଳ ।

## (୨୧) ଧନ ଲାଭର ମାର୍ଗ

ବାଣିଜ୍ୟ ଦ୍ୱାରା ଲକ୍ଷ୍ମୀଙ୍କୁ ଲାଭ କରାଯାଏ ।

କୃଷିକର୍ମ ଦ୍ୱାରା ତା'ର ଅଧା ଲାଭ ହୁଏ ।

ରାଜସେବା (ବେତନଭୋଗୀ)ଦ୍ୱାରା ତା'ର ଅଧା ଧନ ଉପାର୍ଜ୍ଜିତ ହୋଇଥାଏ ।

ଭିକ୍ଷା ପରି ଅଧମ ବୃତ୍ତି କଦାପି କରିବା ଉଚିତ ନୁହେଁ ।

## (୨୨) ଅନ୍ୟାୟ ଧନ

(କ) ଅନ୍ୟାୟରେ ଉପାର୍ଜ୍ଜିତ ଧନ ଦଶବର୍ଷ ରହେ । ଏକା ଦଶ ବର୍ଷରେ ତାହା ସମୂଳେ ବିନଷ୍ଟ ହୁଏ ।

(ଖ) ଧନ ସଞ୍ଚୟ ଦ୍ୱାରା ଗୌରବ ମିଳେ ନାହିଁ; କିନ୍ତୁ ଦାନ ଦ୍ୱାରା ମିଳେ ।

(ଗ) ଜଳ ଦାନ କରୁଥିବାରୁ ମେଘର ସ୍ଥାନ ଉଚ୍ଚରେ ।
କିନ୍ତୁ ସମୁଦ୍ର ଜଳ ସଂଚୟ କରୁଥିବାରୁ ତା'ର ସ୍ଥାନ ନିମ୍ନରେ ।

(ଘ) ଯାହା ପାଖରେ ଧନ ଅଛି ସେହି ଲୋକ କୁଳୀନ, ବିଦ୍ୱାନ, ଶାସ୍ତ୍ରଜ୍ଞ, ଗୁଣଜ୍ଞ, ବକ୍ତା, ଏବଂ ଦର୍ଶନୀୟ ବୋଲି ଗୃହୀତ ହୋଇଥାଏ । ତେଣୁ ସମସ୍ତ ଗୁଣ, ଧନରେ ହିଁ ବାସ କରନ୍ତି ।

## (୨୩) କୃପଣ ଲୋକ ନପୁଂସକ ସଙ୍ଗେ ସମାନ

(କ) ନପୁଂସକ ଯେପରି ସ୍ତ୍ରୀକୁ କେବଳ ସ୍ପର୍ଶ କରିଥାଏ ମାତ୍ର ସଂଭୋଗ/ ଉପଭୋଗ କରିପାରେ ନାହିଁ । ସେହିପରି କୃପଣ ଧନକୁ ସ୍ପର୍ଶ କରିବା ବ୍ୟତୀତ ଦାନ ବା ଉପଭୋଗ କରି ପାରେ ନାହିଁ ।

(ଖ) ଭିକ୍ଷୁକ ନିଜ ହାତକୁ ପାତ୍ରପରି କରି, ଦ୍ୱାର ଦ୍ୱାର ବୁଲି ରଡ଼ିଛାଡ଼ି ଭିକ ମାଗୁଛି । ଏହା ଦ୍ୱାରା ସେମାନେ ଲୋକଙ୍କୁ ଦେଖାଉଛନ୍ତି, ଦାନ ନ କଲେ ଏହିପରି ଫଳ ମିଳେବୋଲି ।

## (୨୪) କେଉଁ ଦିଗକୁ ମୁହଁ କରି ଭୋଜନ କରିବା ଉଚିତ ।

(କ) (୧) ଆୟୁବୃଦ୍ଧି ପାଇଁ - ପୂର୍ବକୁ
(୨) ଯଶ ବୃଦ୍ଧି ପାଇଁ - ଦକ୍ଷିଣକୁ
(୩) ଶ୍ରୀ ବୃଦ୍ଧି ପାଇଁ - ପଶ୍ଚିମକୁ
(୪) ସତ୍ୟ ପାଇଁ - ଉତ୍ତରକୁ

(ଖ) କାର୍ଯ୍ୟରେ ପ୍ରତିକାର୍ଯ୍ୟ, ହିଂସାରେ ପ୍ରତିହିଂସା ଓ ଦୁଷ୍ଟ ସଙ୍ଗରେ ଦୁଷ୍ଟ ଆଚରଣ କରିବା ଉଚିତ । ଏଥିରେ କୌଣସି ଦୋଷ ନାହିଁ ।

(ଗ) ସକଳ ପ୍ରକାର ଉପାୟ ଦ୍ୱାରା ଏପରିକି ନୀଚ ଅତି ନୀଚ ଉପାୟ ପ୍ରୟୋଗକରି ମଧ୍ୟ ଫଳ ଲାଭକରିବା ଉଚିତ । ଏହିପରି କର୍ମର ସିଦ୍ଧି ପାଇଁ ଭଗବାନ ବିଷ୍ଣୁଙ୍କୁ ବାମନ, ଶୂକର ଓ ନୃସିଂହ ଇତ୍ୟାଦି ରୂପ ଧାରଣ କରିବାକୁ ପଡ଼ିଥିଲା ।

(୨୫) କେଉଁ କାର୍ଯ୍ୟ ଏକୁଟିଆ କରିବ ନାହିଁ

(କ) ସ୍ୱାଦୁ ପଦାର୍ଥ ଏକୁଟିଆ ଖାଇବ ନାହିଁ ।

(ଖ) ଶୋଇଥିବା ଲୋକଙ୍କ ଭିତରେ ଏକୁଟିଆ ଜାଗ୍ରତ ହେବ ନାହିଁ ।

(ଗ) ପର ଗୃହ ବ୍ୟତୀତ କୌଣସି ସ୍ଥାନକୁ ଏକାକୀ ଯିବ ନାହିଁ ।

(ଘ) ଏକାକୀ ଅର୍ଥ ଚିନ୍ତା କରିବ ନାହିଁ ।

(୨୬) କାର୍ଯ୍ୟର ଗୁରୁତ୍ୱ ବିଚାର

(କ) (୧) ଶହେ କାମ ଛାଡ଼ି ଆଗେ ଖାଇବା ଉଚିତ ।

(୨) ହଜାରେ କାମ ଛାଡ଼ି ସ୍ନାନ କରିବା ଉଚିତ ।

(୩) ଲକ୍ଷେ କାମ ଛାଡ଼ି ଆଗ ଝାଡ଼ା ଯିବା ଉଚିତ ।

(୪) କୋଟିଏ କାମ ଛାଡ଼ି ହରି ଭଜନ କରିବା ଉଚିତ ।

(ଖ) ମାତା, ଭଗିନୀ ଓ କନ୍ୟାସହିତ ଏକ ଆସନରେ ବସିବା ଉଚିତ ନୁହେଁ । କାରଣ ବଳବାନ ଇନ୍ଦ୍ରିୟମାନେ ବିଦ୍ୱାନ ପୁରୁଷକୁ ମଧ ବିଚଳିତ କରାଇ ଥାଆନ୍ତି ।

(୨୭) କେଉଁ କ୍ଷେତ୍ରରେ ଯାତ୍ରା ନିଷେଧ

(କ) ପିତା ଓ ପୁତ୍ର ମିଶି କୌଣସି ସ୍ଥାନକୁ ଯାତ୍ରା କରିବା ଉଚିତ ନୁହେଁ ।

(ଖ) ଦୁଇଟି ଭାଇ ମିଶି କୌଣସି ସ୍ଥାନକୁ ଯାତ୍ରା କରିବା ଉଚିତ ନୁହେଁ ।

(ଗ) ନଅଜଣ ସ୍ତ୍ରୀ ମିଶି କୌଣସି ସ୍ଥାନକୁ ଯାତ୍ରା କରିବା ଉଚିତ ନୁହେଁ ।

(ଘ) ତିନିଜଣ ବ୍ରାହ୍ମଣ ମିଶି କୌଣସି ସ୍ଥାନକୁ ଯାତ୍ରା କରିବା ଉଚିତ ନୁହେଁ ।

(୨୮) କେତେବେଳେ କେଉଁମାନଙ୍କୁ ପ୍ରଶଂସା କରିବ

(କ) ଖାଦ୍ୟ ଜୀର୍ଣ୍ଣ ହେଲାପରେ, ପ୍ରଶଂସା କରିବ ।

(ଖ) ସ୍ତ୍ରୀ ଗତଯୌବନା ହୋଇ ସାରିବା ପରେ, ପ୍ରଶଂସା କରିବ ।

(ଗ) ବୀର ଯୁଦ୍ଧ କ୍ଷେତ୍ରରୁ ଫେରି ଆସିବା ପରେ, ପ୍ରଶଂସା କରିବ ।

(୨୯) କେଉଁ ପାଞ୍ଚଜଣ ମାତା ରୂପେ ପରିଗଣିତ ହୁଅନ୍ତି

ରାଜରାଣୀ, ଗୁରୁପତ୍ନୀ, ଭାଉଜ, ଶାଶୁ ଏବଂ ନିଜର ମାଆ ।
(ବଡ ଭଉଣୀ ଓ ସାବତମା ମାତୃତୁଲ୍ୟ ଅଟେ)

## (୩୦) କେଉଁ ପାଞ୍ଚଜଣ ପିତା ରୂପେ ପରିଗଣିତ ହୋଇଥାନ୍ତି

ଜନ୍ମଦାତା, ଉପନୟନ କରାଇଥିବା ବ୍ୟକ୍ତି, ବିଦ୍ୟାଦାତା, ଅନ୍ନଦାତା, ଏବଂ ବିପଦରୁ ରକ୍ଷାକରିଥିବା ପୁରୁଷ । (ବଡଭାଇ ପିତୃତୁଲ୍ୟ ଅଟେ)

## (୩୧) କେଉଁମାନଙ୍କୁ ଉତ୍ତର ଦେବ ନାହିଁ

ରାଜା, ଧନୀଲୋକ, ବାଳକ, ବୃଦ୍ଧ, ତପସ୍ୱୀ, ବିଦ୍ୱାନ, ସ୍ତ୍ରୀ, ମୂର୍ଖ ଓ ଗୁରୁଜନମାନଙ୍କୁ ।

## (୩୨) କାହା ସହିତ କିପରି ବ୍ୟବହାର କରିବ

(୧) ଯେଉଁ ମନୁଷ୍ୟ ଯାହା ସହିତ ଯେପରି ବ୍ୟବହାର କରେ, ତାହା ସହିତ ସେପରି ବ୍ୟବହାର କରିବା ଉଚିତ । ମାୟାପୂର୍ଣ୍ଣ ଆଚରଣକୁ ମାୟା ଦ୍ୱାରା ଖଣ୍ଡନ କରିବା ଉଚିତ ଏବଂ ସାଧୁମାନଙ୍କ ପ୍ରତି ସାଧୁ ଆଚରଣ କରିବା ଉଚିତ ।

(୨) ମନୁଷ୍ୟ ଯାହାଙ୍କଠାରୁ ଲୌକିକ,ବୈଦିକ ବା ଆଧ୍ୟାତ୍ମିକ ଜ୍ଞାନ ପାଇଥିବ, ତାଙ୍କୁ ସର୍ବ ପ୍ରଥମେ ଅଭିବାଦନ କରିବା ଉଚିତ ।

(୩) ଯେ ଗୋଟିଏ ହସ୍ତରେ ନମସ୍କାର କରେ, ସେ ଜନ୍ମକାଳରୁ ଯାହାକିଛି ଧର୍ମ ଆଚରଣ କରିଥାଏ, ସେ ସବୁ ବିଫଳ ହୁଏ ।

(୪) ଯେ ଗୁରୁଜନମାନଙ୍କୁ, ବୃଦ୍ଧମାନଙ୍କୁ ପ୍ରତ୍ୟହ ଅଭିବାଦନ ଓ ସେବାକରେ ତାଁର ଆୟୁ, ବିଦ୍ୟା, ଯଶ ଏବଂ ବଳ ବୃଦ୍ଧିଲାଭ କରେ ।

(୫) ସ୍ୱଜନମାନଙ୍କ ଠାରେ ଉଦାରତା, ସେବକ/ଚାକରମାନଙ୍କ ଠାରେ ଦୟା, ସଜ୍ଜନମାନଙ୍କ ସହିତ ପ୍ରେମ, ଦୁର୍ଜ୍ଜନମାନଙ୍କ ସହିତ ଶଠତା, ରାଜ ପୁରୁଷ/କର୍ମଚାରୀମାନଙ୍କ ଠାରେ ନୀତି ଓ ବିନୟ, ବିଦ୍ୱାନମାନଙ୍କ ସହିତ ସରଳତା, ଶତ୍ରୁମାନଙ୍କ ସହିତ ବୀରତ୍ୱ, ଗୁରୁଜନମାନଙ୍କ ସହିତ ସହନଶୀଳତା, ସ୍ତ୍ରୀମାନଙ୍କ ସହିତ ଧୃଷ୍ଟତା ଏ ପ୍ରକାର କଳାରେ ଯେଉଁମାନେ ପାରଙ୍ଗମ ନିପୁଣ ସେମାନେ ଏ ସଂସାରକୁ ରକ୍ଷା କରିବାରେ ସମର୍ଥ ଅଟନ୍ତି ।

(୬) ରାଜା, କୁଳବଧୂ, ବ୍ରାହ୍ମଣ, ମନ୍ତ୍ରୀ, ସ୍ତନ, ଦନ୍ତ, କେଶ, ନର ଏବଂ ନଖ, ଏମାନେ ସ୍ଥାନଭ୍ରଷ୍ଟ ହେଲେ ଶୋଭା ପାଆନ୍ତି ନାହିଁ ।

(୭) କାର୍ଯ୍ୟସିଦ୍ଧି ପାଇଁ ମନସ୍ୱୀ ପୁରୁଷ ସୁଖ ବା ଦୁଃଖକୁ ଖାତିର କରେ ନାହିଁ । କେତେବେଳେ ଭୂମି ଉପରେ ଶୟନକରେ ତ କେତେବେଳେ ପଲଙ୍କ ଉପରେ ଶୟନ କରେ; କେତେବେଳେ ଶାଗପତ୍ର ଖାଏ ତ, କେତେବେଳେ ଶାଲ୍ୟାନ୍ନ ଭୋଜନ କରେ; କେତେବେଳେ ଛିଣ୍ଡା କନା ପିନ୍ଧେ ତ କେତେବେଳେ ପାଟ ମଧ୍ୟ ପରିଧାନ କରେ ।

(୮) ଯେଉଁମାନଙ୍କର ହୃଦୟକୁ ସୁନ୍ଦରୀମାନଙ୍କର କଟାକ୍ଷ ବାଣ ବିଦୀର୍ଣ୍ଣ କରିପାର ନାହିଁ, କ୍ରୋଧ ରୂପୀ ଅଗ୍ନିତାପ ଜ୍ୱାଳା ଦେଇପାରେ ନାହିଁ, ବିଷୟ ବାସନାର ଲୋକ ପାଶ ଯାହାକୁ ବାନ୍ଧିପାରେ ନାହିଁ; ସେହି ଧୈର୍ଯ୍ୟଶୀଳ ପୁରୁଷ ଏହି ତ୍ରିଭୁବନକୁ ଜିଣିବାକୁ ସମର୍ଥ ହୋଇଥାଏ ।

(୯) ସ୍ୱପତ୍ନୀ, ଭୋଜନ, ଏବଂ ଧନ ।
ଏହି ତିନୋଟିରେ ସର୍ବଦା ସନ୍ତୁଷ୍ଟ ରହିବ ।

(୧୦) ଦାନ, ତପସ୍ୟା ଏବଂ ଅଧ୍ୟୟନ ।
ଏହି ତିନୋଟିରେ ସନ୍ତୁଷ୍ଟ ହେବ ନାହିଁ ।

(୧୧) ଦ୍ୟୁତକ୍ରୀଡ଼ା, ସଙ୍ଗୀତବାଦ୍ୟ, ନାଟକ, ସ୍ତ୍ରୀ, ତନ୍ଦ୍ରା ଓ ନିଦ୍ରା ।
ଏହି ଛଅଟି ବିଦ୍ୟା ଉପାର୍ଜନରେ ବିଘ୍ନ ଅଟେ ।

(୧୨) ଯେଉଁମାନେ ଆଶାର ଦାସ, ସେମାନେ ସଂସାରର ସମସ୍ତଙ୍କର ଦାସ । କିନ୍ତୁ ଆଶାକୁ ଯେ ଦାସୀ କରିପାରିଛି, ସମସ୍ତ ଜଗତ୍ ତା'ର ଦାସ ।

(୧୩) ପୁରାଣ ଶୁଣିସାରିବା ପରେ, ମୃତ ବ୍ୟକ୍ତିର ଦାହ ସଂସ୍କାର କରି ସାରିବା ପରେ ଏବଂ ସ୍ତ୍ରୀ ସମ୍ଭୋଗ କରିସାରିବା ପରେ, ମନରେ ଯେଉଁ ବୈରାଗ୍ୟ ଜାତ ହୁଏ, ସେହିପରି ବୈରାଗ୍ୟ ଯଦି ସର୍ବଦା ରହନ୍ତା ତେବେ କିଏ ସଂସାର ବନ୍ଧନରୁ ମୁକ୍ତିଲାଭ ନ କରନ୍ତା ?

(୧୪) ମନୁଷ୍ୟର ଆୟୁଷ ଶହେ ବର୍ଷ ବୋଲି ଧରାଗଲେ ତାର ଅଧା (ପଚାଶ ବର୍ଷ) ରାତିରେ ଚାଲିଗଲା । ତାର ଅଧାର ଅଧା (ପଚିଶ ବର୍ଷ) ବାଲ୍ୟକାଳ ଓ ବାର୍ଦ୍ଧକ୍ୟ କାଳରେ ବିତିଗଲା । ବାକି ପଚିଶ ବର୍ଷ ସମୟ ରୋଗ, ଆତ୍ମୀୟ ସ୍ୱଜନଙ୍କ ବିୟୋଗ, ଧନର ବିଚ୍ଛେଦରେ ଉତ୍ପନ୍ନ ଦୁଃଖ, ଜୀବିକା ପାଇଁ ଧନୀକମାନଙ୍କର ସେବାରେ ବିତିଗଲା । ତେଣୁ ମନୁଷ୍ୟର ଜୀବନରେ ସୁଖ କେଉଁଠାରୁ ମିଳିବ ?

(୧୫) ଦୈବ ଯାହାକୁ ପ୍ରତିକୂଳ ହୁଏ, ତାକୁ ତାର ମିତ୍ରମାନେ, ଜ୍ଞାତିବର୍ଗ, ପୁତ୍ରମାନେ, ଭାଇମାନେ, ଏପରିକି ପିତା ମାତା ମଧ୍ୟ ଟିକିଏ ହେଲେ ସ୍ମରଣ କରନ୍ତି ନାହିଁ ।

(୧୬) ଜାମାତା, ଜଠର(ଉଦର ପେଟ), ଜାୟା(ସ୍ତ୍ରୀ), ଜାତବେଦ(ଅଗ୍ନି) ଏବଂ ଜଳାଶୟ -ଏହି ପାଞ୍ଚ 'ଜ' କାର ସର୍ବଦା ଅପୂରଣୀୟ । ଅର୍ଥାତ୍ ଏମାନେ କେତେବେଳେ ତୃପ୍ତ ହୁଅନ୍ତି ନାହିଁ ।

(୧୭) ଜନନୀ, ଜନ୍ମଭୂମି, ଜାହ୍ନବୀ, ଜନାର୍ଦ୍ଦନ, ଜନକ- ଏହି ପାଞ୍ଚ 'ଜ'କାର ଅତ୍ୟନ୍ତ ଦୁର୍ଲଭ ।

(୧୮) କଲମ, ପୁସ୍ତକ ଓ ନାରୀ ଏମାନେ ପରହସ୍ତକୁ ଗଲେ ଗଲା, ଯଦି ଫେରିଆସନ୍ତି ତେବେ ନଷ୍ଟ, ଭ୍ରଷ୍ଟ ଓ ଧର୍ଷିତା ହୋଇ ଫେରନ୍ତି ।

(୧୯) ସ୍ତ୍ରୀ, ମଦ୍ୟ ଓ ଧନ ଏହାକୁ ତିନ ପ୍ରକାରର ମଦ୍ୟ ବୋଲି କୁହାଯାଏ । ଏଥିମଧ୍ୟରୁ ଗୋଟିକୁ ଅତି ମାତ୍ରାରେ ସଞ୍ଚୟ କାରିବା ଦ୍ୱାରା ଉନ୍ମାଦ ଜାତ ହୋଇଥାଏ ।

(୨୦) କାମଠାରୁ ବ୍ୟାଧି ନାହଁ ।

ମୋହ ପରି ଶତ୍ରୁ ନାହିଁ ।

କ୍ରୋଧ ପରି ଅଗ୍ନି ନାହିଁ ।

ଜ୍ଞାନଠାରୁ ଉତ୍କୃଷ୍ଟ ସୁଖମଧ ନାହିଁ ।

(୨୧) ପୁତ୍ର ଠାରୁ ବଳି ଲାଭ ନାହିଁ ।

ଭାର୍ଯ୍ୟାଠାରୁ ବଳି ସୁଖ ନାହିଁ ।

(୨୨) ଧର୍ମଠାରୁ ବଳି ମିତ୍ର ନାହିଁ ।
ମିଥ୍ୟାଠାରୁ ବଳି ପାପ ନାହିଁ ।

(୨୩) ଶଠତାଦ୍ୱାରା ଧର୍ମ ଉପାର୍ଜ୍ଜନ କରିବା, କପଟଭାବରେ ମିତ୍ରତା ଉପାର୍ଜ୍ଜନ କରିବା, ପରପୀଡନ ଦ୍ୱାରା ସମୃଦ୍ଧି ଲାଭ କରିବା, ବିନା କ୍ଳେଶରେ ବିଦ୍ୟା ଅର୍ଜ୍ଜନ କରିବା, କଠୋରତା ଦ୍ୱାରା ନାରୀକୁ ଆୟତ କରିବା ସମ୍ପୂର୍ଣ୍ଣ ଅସମ୍ଭବ ।

(୨୪) ପତିବ୍ରତାର ସ୍ତନ, ବାଘର ନଖ, ବୀରର ଶସ୍ତ୍ର, କୃପଣର ଧନ- ଏଗୁଡ଼ିକ ସେମାନଙ୍କର ଜୀବିତାବସ୍ଥାରେ ମିଳିବା ଅସମ୍ଭବ ।

(୨୫) ବାର୍ଦ୍ଧକ୍ୟ ରୂପକୁ, ଆଶା ଧୈର୍ଯ୍ୟକୁ, ମୃତ୍ୟୁ ପ୍ରାଣକୁ, ଦୋଷ ଦର୍ଶନ ଧର୍ମକୁ, କାମ ଲଜ୍ଜାକୁ, ଅନାର୍ଯ୍ୟ ସେବା ଚରିତ୍ରକୁ, କ୍ରୋଧ ଶ୍ରୀକୁ ଏବଂ ଅଭିମାନ- ମନୁଷ୍ୟର ସମସ୍ତ ସଦ୍‌ବୃତ୍ତିକୁ ନଷ୍ଟ କରିଦିଏ ।

(୨୬) ଯଜ୍ଞ, ବିବାହ, ବିପଦ, ଶତ୍ରୁନାଶ, କୀର୍ତ୍ତିକର କାର୍ଯ୍ୟ, ମିତ୍ରସଂଗ୍ରହ, ପ୍ରିୟା ସ୍ତ୍ରୀ, ଧନ ହୀନ ବନ୍ଧୁ-
ଏହି ସବୁ ଉଦ୍ଦେଶ୍ୟରେ ଧନ ବ୍ୟୟ କରାଯିବା ଉଚିତ ।

(୨୭) ଉଦ୍ୟମ, ସାହସ, ଧୈର୍ଯ୍ୟ, ବୁଦ୍ଧି, ଶକ୍ତି ଓ ପରାକ୍ରମ-
ଏହି ଛଅଟି ଯାହାଠାରେ ଥାଏ, ଦେବତା ତା'ର ସହାୟକ ହୋଇଥାନ୍ତି ।

(୨୮) ପଶୁ, ପତ୍ନୀ, ପୁତ୍ରକନ୍ୟା, ଗୃହ ପ୍ରଭୃତି ଋଣ ସ୍ୱରୂପ ମିଳନ୍ତି । ଋଣର ଆରମ୍ଭରେ ସେମାନେ ଆସନ୍ତି ଏବଂ ଶେଷ ହୋଇଗଲେ ସେମାନେ ଦୂର ହୋଇଯାଆନ୍ତି ।

(୨୯) ପିତା ଧର୍ମଃ ପିତା ସ୍ୱର୍ଗଃ ପିତା ହିଁ ପରମଂ ତପଃ
ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତାଃ ।

(୩୦) ମୁଖରତା ଅଧୋଗତିର କାରଣ ଏବଂ ମୌନ ଉନ୍ନତିର କାରଣ । ମୁଖରତା ଫଳରେ ନୂପୁରର ସ୍ଥାନ ପାଦରେ କିନ୍ତୁ ମୌନତା ଯୋଗୁଁ ହାର କଣ୍ଠରେ ସ୍ଥାନ ଲାଭ କରେ ।

(୩୧) ମନୁଷ୍ୟର ଭୂଷଣ ରୂପ, ରୂପର ଭୂଷଣ ଗୁଣ, ଗୁଣର ଭୂଷଣ ଜ୍ଞାନ, ଜ୍ଞାନର ଭୂଷଣ କ୍ଷମା ।

(୩୨) ବସନ୍ତ ପବନ ବାଜିଲେ ଶିଶିରର ଶ୍ରୀ ଯେପରି ନଷ୍ଟ ହୁଏ, ସେହିପରି କୁଟୁମ୍ବ ପାଳନ ଚିନ୍ତାଦ୍ୱାରା ବୁଦ୍ଧିମାନମାନଙ୍କର ବୁଦ୍ଧି ଦିନକୁ ଦିନ ନଷ୍ଟ ହେବାକୁ ଲାଗେ ।

(୩୩) ପୁତ୍ରଲାଭ ପର୍ଯ୍ୟନ୍ତ ପତ୍ନୀ, ଷୋହଳ ବର୍ଷ ହେବା ପର୍ଯ୍ୟନ୍ତ ପୁଅ, ବିବାହ ହେବା ପର୍ଯ୍ୟନ୍ତ ଝିଅ, ପୁତ୍ରର ଅଧିନତା ସ୍ୱୀକାର କରୁଥିବା ପର୍ଯ୍ୟନ୍ତ ପୁତ୍ରବଧୂ, ଧନ ପାଉଥିବା ପର୍ଯ୍ୟନ୍ତ ଜାମାତା, ମିଷ୍ଟ ଆଳାପ କରୁଥିବା ପର୍ଯ୍ୟନ୍ତ ସଖା, ଗୋପନୀୟ ଜ୍ଞାନ ପାଇବା ପର୍ଯ୍ୟନ୍ତ ଶିଷ୍ୟ, ଧନଥିବା ପର୍ଯ୍ୟନ୍ତ ଅନ୍ୟ ସମସ୍ତେ ନିଜର ବଶତା ସ୍ୱୀକାର କରନ୍ତି । ଏହାପରେ ଆଉ କେହି ବଶ ହୋଇ ରହନ୍ତି ନାହିଁ ।

(୩୪) କଳାର ଶେଷସୀମା କାବ୍ୟ, ଗୁଣର ଶେଷସୀମା ଦାନ, ଭୟର ଶେଷ ସୀମା ମୃତ୍ୟୁ, ସୁଖର ଶେଷସୀମା ସୁନ୍ଦରୀ ସ୍ତ୍ରୀ, ତପସ୍ୟାର ଶେଷସୀମା ମୁକ୍ତି, କାର୍ଯ୍ୟର ଶେଷସୀମା ଆଶ୍ରିତ ପାଳନ, ପ୍ରିୟର ଶେଷସୀମା ଆହ୍ଲାଦ ଏବଂ ଶ୍ରବଣ ସୁଖର ଶେଷସୀମା ହରିକଥା ।

(୩୫) ଦେଶ ଭ୍ରମଣ, ପଣ୍ଡିତ ସଙ୍ଗେ ମିତ୍ରତା, ବେଶ୍ୟା ସଙ୍ଗ, ରାଜସଭାରେ ପ୍ରବେଶ, ନାନା ଶାସ୍ତ୍ରର ଅର୍ଥ ନିର୍ଣ୍ଣୟ- ଏହି ପାଞ୍ଚଟି ମନୁଷ୍ୟ ଚାତୁର୍ଯ୍ୟ ଦ୍ୱାରା ଲାଭ କରିଥାଏ ।

## (୩୩) ଧର୍ମ, ଅଧର୍ମର ଲକ୍ଷଣ

(୧) ଧୈର୍ଯ୍ୟ, କ୍ଷମା, ମନର ସଂଯମ, ଇନ୍ଦ୍ରିୟ ସଂଯମ, ଚୋରି ନ କରିବା, ଶୌଚ, ଜ୍ଞାନ, ବିଦ୍ୟା, ସତ୍ୟ ଓ କ୍ରୋଧହୀନତା- ଧର୍ମର ଲକ୍ଷଣ

(୨) ଧର୍ମ ବଳରେ ରୋଗ, ଗ୍ରହଦୋଷ ଓ ଶତ୍ରୁମାନଙ୍କ ବିନାଶ ସାଧିତ ହୋଇଥାଏ । ଧର୍ମ ହିଁ ବିଜୟର ମୂଳ କାରଣ ।

(୩) ଅଧର୍ମ ଦ୍ୱାରା ମନୁଷ୍ୟର ପ୍ରଥମେ ସୁଖ ସମ୍ପଦ ବୃଦ୍ଧି ହୁଏ । ତାର ସକଳ ପ୍ରକାର ଉନ୍ନତି ଦେଖାଯାଏ । ସେ ଶତ୍ରୁମାନଙ୍କୁ ଜୟ କରେ । କିନ୍ତୁ ଶେଷରେ ସକଳ ପ୍ରକାର ସୁଖ ସୌଭାଗ୍ୟ ସହିତ ତାର ବିନାଶ ଘଟେ ।

(୪) ବିଦ୍ୟା ନହେଲେ ମନୁଷ୍ୟ ଚଳି ପାରିବ । ମାତ୍ର ବୁଦ୍ଧି ବିନା ଚଳି ପାରିବ ନାହିଁ । ବିଦ୍ୟାଠାରୁ ବୁଦ୍ଧି ଶ୍ରେୟସ୍କର । ପୁଣି (ଶାରୀରିକ) ବଳଠାରୁ ବୁଦ୍ଧି ବଡ଼ ।

(୫) ଶସ୍ତ୍ର ଜଣେ ବ୍ୟକ୍ତିର ଶରୀରକୁ ନାଶ କରିପାରେ; କିନ୍ତୁ ବୁଦ୍ଧି ତାର କୁଳ, ବିଭବ, ଯଶ ପ୍ରଭୃତି ସମସ୍ତଙ୍କୁ ନାଶ କରିଥାଏ । ତେଣୁ ବୁଦ୍ଧି ବଳରେ ଶତ୍ରୁମାନଙ୍କର ପ୍ରକୃତ ବିନାଶ କରାଯାଇଥାଏ ।

(୬) ବୁଦ୍ଧିମାନ୍, ଧନବାନ, ଶାସ୍ତ୍ରଜ୍ଞ ପଣ୍ଡିତ, ସୈନ୍ୟବଳ ଓ ମିତ୍ର ବଳରେ ବଳୀୟାନ ବ୍ୟକ୍ତି ମାନଙ୍କଠାରୁ ଅଧିକତର ବଳବାନ ।

(୭) ପ୍ରସନ୍ନ ଚିତ୍ତ ବ୍ୟକ୍ତିର ବୁଦ୍ଧି ଶୀଘ୍ର ସ୍ଥିରତା ଲାଭ କରେ । ଚିତ୍ତ ପ୍ରସାଦ ଜନ୍ମିଲେ ତାର ସମସ୍ତ ଦୁଃଖର ନିବୃତ୍ତି ହୁଏ ।

(୮) ନିଜ ବୁଦ୍ଧିରେ କାର୍ଯ୍ୟ କଲେ ସୁଖ ମିଳେ ।

(୯) ଗୁରୁଙ୍କ ବୁଦ୍ଧିରେ କାର୍ଯ୍ୟ କଲେ ହିତ ସାଧିତ ହୁଏ ।

(୧୦) ପର ବୁଦ୍ଧିରେ କାର୍ଯ୍ୟ କଲେ ବିନାଶ ହୁଏ ।

(୧୧) ସ୍ତ୍ରୀ ବୁଦ୍ଧିରେ କାର୍ଯ୍ୟ କଲେ ପ୍ରଳୟ ସୃଷ୍ଟି ହୁଏ ।

(୧୨) ସୂର୍ଯ୍ୟ ଯେପରି ରାତ୍ରିର ଅନ୍ଧକାର ଦୂର କରିବାକୁ ସମର୍ଥ, ସେହିପରି 'ବିବେକ' ହିଁ ଲୋକମାନଙ୍କର ବିପଦ ଦୂର କରିବାକୁ ସମର୍ଥ ।

(୧୩) ଉତ୍ତମ ବାଣୀର ରସ ଆସ୍ୱାଦନ, ପ୍ରବୀଣା ସ୍ତ୍ରୀର ସଙ୍ଗ, ବିବେକି ରାଜାର ସେବା- ଏହି ତିନୋଟି ମନୁଷ୍ୟର ଦୁଃଖ ଦୂରକରିଥାଏ ।

(୧୪) ଈର୍ଷା କରୁଥିବା ଲୋକ, ଘୃଣା କରୁଥିବା ଲୋକ, ଅସନ୍ତୁଷ୍ଟ, କ୍ରୋଧୀ, ଭୟାଳୁ, ପର ଉପରେ ନିର୍ଭର କରି ଜୀବନ ଯାପନ କରିବା ବ୍ୟକ୍ତି- ଏହି ଛଅଜଣ ଦୁଃଖ ଭୋଗ କରନ୍ତି ।

(୧୫) ଭାର୍ଯ୍ୟା, ଚାକର/ସେବକ, ପୁଅ, ଯାହାର ବଶବର୍ତ୍ତୀ ଏବଂ ଯେ ଅଭାବରେ ମଧ୍ୟ ସନ୍ତୋଷରେ ଜୀବନଯାପନ କରେ- ସେ ପୃଥିବୀରେ ବାସକରି ସ୍ୱର୍ଗ ସୁଖ ପାଇଥାଏ ।

(୧୬) ଯେଉଁ ଭାର୍ଯ୍ୟା-

ରୂପରେ ଅତି କୁତ୍ସିତ, ସବୁ ପ୍ରକାର ପାପ କରିବାକୁ ପ୍ରସ୍ତୁତ, କଳହରେ ଧୁରନ୍ଧର, ସ୍ୱାମୀର ପ୍ରତିକୂଳ ଆଚରଣ ପ୍ରିୟ, ଉଗ୍ର ସ୍ୱଭାବ ସଂପନ୍ନା- ସେଇ ହିଁ ପ୍ରକୃତ ବାର୍ଦ୍ଧକ୍ୟ । ବୃଦ୍ଧା ବୟସ ତା'ପାଇଁ ବାର୍ଦ୍ଧକ୍ୟ ନୁହେଁ ।

(୧୭) ଧନହୀନ ଲୋକ ଦୁଃଖୀ ଅଟେ । ଋଣଗ୍ରସ୍ତ ଲୋକ ତା'ଠାରୁ ଦୁଃଖୀ । ଚିର ରୋଗୀ ଏ ଦୁହିଁଙ୍କଠାରୁ ଅଧିକ ଦୁଃଖୀ ।

ଯାହାର ଦୁଷ୍ଟା ଭାର୍ଯ୍ୟା ସେ ଏ ସମସ୍ତଙ୍କ ଠାରୁ ଦୁଃଖୀ ଅଟେ ।

(୩୪) **ସ୍ତ୍ରୀମାନଙ୍କର ଛଅଟି ଗର୍ହିତ ଦୋଷ**

(୧) ମଦ୍ୟପାନ, ଦୁଷ୍ଟସଙ୍ଗ, ସ୍ୱାମୀଠାରୁ ଅଲଗା ରହିବା, ଯୁଆଡ଼େ ଇଚ୍ଛା ସିଆଡେ ବୁଲିବା, ଅନ୍ୟଘରେ ରହିବା, ଅସମୟରେ ଶୋଇବା ।

(୨) ମାଆପରି ଶରୀର ପୋଷଣକାରୀ,

(୩) ଚିନ୍ତାପରି ଶରୀର ,ଶୋଷଣକାରୀ,

(୪) ଭାର୍ଯ୍ୟାପରି ଶରୀର ତୋଷଣକାରୀ,

(୫) ବିଦ୍ୟାପରି ଶରୀର ଭୂଷଣକାରୀ, ଏହାଠାରୁ ଆଉ କିଛି ନାହିଁ ।

(୩୫) **ସୁ-ଗୃହିଣୀର ଆଚରଣ**

(କ) (୧) ସ୍ୱାମୀ ଗୃହକୁ ଯାଇ ଗୁରୁଜନମାନଙ୍କ ସେବାରେ ବ୍ରତୀ ହେବା ।

(୨) ସପତ୍ନୀ (ସଉତୁଣୀ) ମାନଙ୍କୁ ପ୍ରିୟସଖୀ ବୋଲି ଗ୍ରହଣ କରିବା ।

(୩) ସ୍ୱାମୀଙ୍କଠାରୁ ତିରସ୍କୃତ ହେଲେ ମଧ ତାଙ୍କ ପ୍ରତି ପ୍ରତିକୂଳ ଆଚରଣ ନ କରିବା ।

(୪) ଚାକର/ସେବକମାନଙ୍କ ପାଇଁ ଉଦାର ରହିବା ।

(୫) ଭୋଗ ଐଶ୍ୱର୍ଯ୍ୟର ଗର୍ବରେ ଅନ୍ଧ ନ ହେବା ।

(ଖ) ବିଭିନ୍ନ ଭାବ ପ୍ରଦର୍ଶନ, ଅହଂକାର, ଗତିବିଧି, ସୌନ୍ଦର୍ଯ୍ୟ, ସ୍ମିତ ହାସ୍ୟ, କ୍ରୋଧ, ଯୌବନ ଜନିତ ଉନ୍ମତ୍ତତା, ମଧୁର ବାଣୀ ଦ୍ୱାରା ଯେଉଁନାରୀ ରଜା, ଋଷି, ଦେବତାମାନଙ୍କୁ ଆକର୍ଷିତ କରି ପାରନ୍ତି, ସେଇ ନାରୀ ଆମପରି ସାଧାରଣ ଲୋକଙ୍କୁ କାହିଁକି ପ୍ରଭାବିତ କରି ନ ପାରେ ?

(ଗ) ପୁତ୍ରବତୀ, ପାକ କୁଶଳା (ରନ୍ଧାରନ୍ଧୀରେ ନିପୁଣା) ପବିତ୍ର ଆଚରଣ ସମ୍ପନ୍ନା, ପତିବ୍ରତା, ପଦ୍ମପରି ଆଖି (ସୁନ୍ଦରୀ)- ଏହି ପାଞ୍ଚ 'ପ'କାରଯୁକ୍ତା ନାରୀ, ଗୌରବ ଲାଭ କରିଥାଏ।

(ଘ) ଭାର୍ଯ୍ୟା/ସ୍ତ୍ରୀ/ ଧର୍ମପତ୍ନୀଙ୍କର ଛଅଟି ଗୁଣରେ ପରିପୂର୍ଣ୍ଣ ହେବା ଅତ୍ୟନ୍ତ ଦୁର୍ଲଭ।

(୧) ସକଳ କାର୍ଯ୍ୟରେ ମନ୍ତ୍ରୀପରି ମନ୍ତ୍ରଣାଦିଏ।
(୨) ଗୃହ କର୍ମ ଓ ସେବା କାର୍ଯ୍ୟରେ ଦାସୀ ପରି ଖଟେ।
(୩) ମାଆପରି ଭୋଜନ କରାଏ।
(୪) ରମ୍ଭା ଅପ୍ସରାପରି ଶୟନରେ ଆନନ୍ଦ ଦିଏ।
(୫) ଧର୍ମାଚରଣରେ ସାହାଯ୍ୟକରେ।
(୬) ସର୍ବଂସହା ଧରିତ୍ରୀ ପରି କ୍ଷମାଶୀଳା ହୁଏ।

**(୩୬) ଗୁଣବାନ୍ ବ୍ୟକ୍ତିର ପ୍ରତ୍ୟେକ ଗୁଣକୁ ଦୁର୍ଜନ ବ୍ୟକ୍ତି କଳଙ୍କିତ କରିବା ପାଇଁ ଚେଷ୍ଟା କରିଥାଏ ।**

(୧) ଲଜ୍ଜାଶୀଳତାକୁ ଜଡତା ବୋଲି କହିବା ।
(୨) ବ୍ରତପାଳନକୁ ଦାମ୍ଭିକତା ବୋଲି କହିବା।
(୩) ପବିତ୍ର ଆଚରଣକୁ କପଟ ବୋଲି କହିବା ।
(୪) ପରାକ୍ରମକୁ ନିର୍ଦ୍ଦୟତା ବୋଲି କହିବା ।
(୫) ମୌନତାକୁ ବୁଦ୍ଧିହୀନତା ବୋଲି କହିବା।
(୬) ମଧୁର ବଚନକୁ ଦୀନତା ବୋଲି କହିବା।

(୭) ତେଜସ୍ୱିତାକୁ ଅହଙ୍କାର ବୋଲି କହିବା ।

(୮) ଭାଷଣ ଶକ୍ତିକୁ ମୁଖରତା ବୋଲି କହିବା ।

(୯) ଧିରସ୍ଥିର ଭାବକୁ ଶକ୍ତିହୀନତା ବୋଲି କହିବା ।

(୩୭) **ମନୁଷ୍ୟ ରୂପଧାରୀ ପଶୁ (ଯେଉଁମାନଙ୍କର)**

(୧) ବିଦ୍ୟା ନାହିଁ (୨) ତପସ୍ୟା ନାହିଁ (୩) ଦାନ ନାହିଁ (୪) ଜ୍ଞାନ ନାହିଁ (୫) ଉତ୍ତମ ସ୍ୱଭାବ ନାହିଁ (୬) ଗୁଣ ନାହିଁ (୭) ଧର୍ମ ନାହିଁ ।

(୩୮) **ପାଞ୍ଚଟି ଲକ୍ଷଣରୁ ମୂର୍ଖର ପରିଚୟ ମିଳିଥାଏ**

(କ) (୧) ଗର୍ବ (୨) ଦୁର୍ବଚନ (୩) ଜିଦ୍ (୪) ଅପ୍ରିୟ କଥା (୫) ଅନ୍ୟର ମତ/କଥାକୁ ବେଖାତିର କରିବା ।

(ଖ) 'ମେଘ' ଲୁଣିଆ ପାଣି ପିଇ ମଧୁର ଜଳ ବର୍ଷାକରେ ।
'ସାପ' କ୍ଷୀର ପାନ କରି ଉତ୍କଟ ଗରଳ ବାନ୍ତିକରେ ।
ସଜ୍ଜନ ବ୍ୟକ୍ତି ଅନ୍ୟର ଦୋଷକୁ ଗୁଣ ରୂପରେ ବର୍ଣ୍ଣନା କରନ୍ତି ।
କିନ୍ତୁ ଦୁର୍ଜନ ବ୍ୟକ୍ତି ଅନ୍ୟର ଗୁଣକୁ ଦୋଷ ରୂପରେ ବର୍ଣ୍ଣନା କରେ ।

(୩୯) **ମହତ୍ ଲୋକମାନଙ୍କର ସ୍ୱଭାବ-ସିଦ୍ଧ ଲକ୍ଷଣ**

(କ) (୧) ଧନରେ ଅନାସ୍ଥା (୨) ଗୁଣରେ କୃପଣ (୩) ପର ଦୁଃଖରେ କାତରତା (୪) ନିଜ ଦୁଃଖରେ ଅସୀମ ଧୈର୍ଯ୍ୟ (୫) ଧର୍ମ କାର୍ଯ୍ୟରେ ତତ୍ପରତା, (୬) ଭଗବାନଙ୍କଠାରେ ଭକ୍ତି (୭) ଦାନ କରିବାରେ ଉତ୍ସାହ (୮) ଚିତ୍ତରେ ଗମ୍ଭୀରତା (୯) ଅନ୍ୟର ଗୁଣପ୍ରତି ଆଦର (୧୦) ଆଚରଣରେ ପବିତ୍ରତା (୧୧) ଶାସ୍ତ୍ରରେ ନିପୁଣ (୧୨) ରୂପରେ ସୁନ୍ଦରତା (୧୩) ଗର୍ବ ହୀନ (୧୪) କ୍ରୋଧହୀନ (୧୫) ଦୁଃଖରେ ଦୀନତା ପ୍ରକାଶ ନ କରିବା (୧୬) ଯୁଦ୍ଧରେ ବୀରତ୍ୱ (୧୭) ସଭାରେ ବାକ୍‌ପଟୁତା ।

(ଖ) ଉତ୍ତମ ବ୍ୟକ୍ତି କେବଳ ସମସ୍ତ ପ୍ରକାର ଦୁଃଖ, କ୍ଳେଶ ସହିବାରେ ସମର୍ଥ ଅଟେ, କିନ୍ତୁ ଅନ୍ୟ ବ୍ୟକ୍ତିମାନେ ନୁହଁନ୍ତି । ଯେପରି ଶାଣଯନ୍ତ୍ରର ଘର୍ଷଣ ସହିବାକୁ ମଣି ହିଁ କେବଳ ସମର୍ଥ, ମାଟି ମୁଣ୍ଡା ନୁହେଁ ।

---

(ଗ) ସକାଳେ ମୁହଁ ଧୋଇବା ପୂର୍ବରୁ ମନୁଷ୍ୟ ଯେପରି ଝାଡାଯାଇ ମଳଦ୍ୱାରକୁ ଆଗେ ଧୋଇଥାଏ, ସେହିପରି ଦୁର୍ଜନ ପ୍ରଥମେ ବନ୍ଦନୀୟ, ତାପରେ ସଜ୍ଜନ ବନ୍ଦନୀୟ ।

(୪୦) **ଧୂର୍ତ୍ତ ବ୍ୟକ୍ତିର ତିନୋଟି ଲକ୍ଷଣ**

(କ) ପଦ୍ମ ପରି ପ୍ରସନ୍ନ ମୁଖ, (ଖ) ଚନ୍ଦନ ପରି ଶୀତଳ ବାକ୍ୟ,

(ଗ) ଅଗ୍ନିପରି ଜ୍ୱଳାପୂର୍ଣ୍ଣ ହୃଦୟ । (ଘ) ବେଶ୍ୟା ବୁଢ଼ୀ ହେଲେ ତପସ୍ୱିନୀ ହୁଏ । ସ୍ତ୍ରୀ ବୁଢ଼ୀ ହେଲେ ପତିବ୍ରତା ହୁଏ ।

(୪୧) **ଯୁଗ ଆରମ୍ଭ ହେବାର ତିଥି ଓ ବାର**

(କ) ସତ୍ୟ ଯୁଗ : ବୈଶାଖ ଶୁକ୍ଳ ତୃତୀୟା ବା ଅକ୍ଷୟ ତୃତୀୟା (ରବିବାର)

(ଖ) ତ୍ରେତା ଯୁଗ : କାର୍ତ୍ତିକ ଶୁକ୍ଳ ନବମୀ ବା ଅଁଳା ନବମୀ (ସୋମବାର)

(ଗ) ଦ୍ୱାପର ଯୁଗ : ଭାଦ୍ର କୃଷ୍ଣ ତ୍ରୟୋଦଶୀ (ଗୁରୁବାର)

(ଘ) କଳି ଯୁଗ : ମାଘ ପୂର୍ଣ୍ଣିମା (ଶୁକ୍ରବାର)

(୪୨) ଯେଉଁମାନେ ସ୍ତ୍ରୀମାନଙ୍କ ଦ୍ୱାରା ନା ବହୁ ପ୍ରଭୁ/ସ୍ୱାମୀ କର୍ତ୍ତାମାନଙ୍କ ଦ୍ୱାରା ପରିଚାଳିତ ହୁଅନ୍ତି, ସେମାନଙ୍କର ସର୍ବନାଶ ଘଟେ ।

(୪୩) (କ) ନିଜ ବୁଦ୍ଧି ଦ୍ୱାରା ପରିଚାଳିତ ହେବା **ହିତକାରୀ** ।

(ଖ) ଗୁରୁବୁଦ୍ଧି ଦ୍ୱାରା ପରିଚାଳିତ ହେବା **ଅତି ଭଲ** ।

(ଗ) ପରବୁଦ୍ଧି ଦ୍ୱାରା ପରିଚାଳିତ ହେଲେ **ବିନାଶ** ଘଟେ ।

(ଘ) ସ୍ତ୍ରୀ ବୁଦ୍ଧି ଦ୍ୱାରା ପରିଚାଳିତ ହେଲେ **ସର୍ବନାଶ** ଘଟେ ।

(୪୪) ଘିଅ ନ ପଡ଼ିଥିବା ଭୋଜନ, କୁଭୋଜନ ।

(୪୫) ଅନ୍ନାଭାବ ଘଟିଲେ ଯେଉଁ ଦୁଶ୍ଚିନ୍ତା ଆସେ ତାହା ଭୟଙ୍କର । ସେହି ଦୁଃଖରେ ବିହ୍ୱଳ ବ୍ୟକ୍ତି ପକ୍ଷରେ କବିତା ରଚନା ଏକ ବିଡ଼ମ୍ବନା ।

(୪୬) କିଏ କାହାକୁ ନିମନ୍ତ୍ରଣ କଲେ ଲଜ୍ଜା ସଂକୋଚ ଛାଡି ଆହାର କରିବ, ସେହିପରି ପରିଚୟ ଜଣେଇବାରେ ଓ ବନ୍ଧୁତା କରିବାରେ ଲଜ୍ଜା ଛାଡିବା ଉଚିତ ।

(୪୭) ଋଣ କରି ଖାଇପିଇ ଆଜୀବନ ସୁଖରେ ରହ ।

(୪୮) ପ୍ରଥମେ ଉତ୍ତମ ଦ୍ରବ୍ୟ ଖାଇବା ଉଚିତ । ମନ୍ଦଖାଉଁ ଖାଉଁ ଜୀବନ ଯାଇପାରେ, ଭଲ ଜିନିଷ ଭୋଗ ହୋଇ ନପାରେ । ତେଣୁ ଲୋଭୀ ପ୍ରକୃତି ଛାଡ଼ି ପ୍ରଥମେ ଯାହା ତାହା ଜିନିଷ ଖାଇ ପଛରେ ଭଲ ଜିନିଷ ଖାଇବା ଉଚିତ ।

(୪୯) କାଳଚକ୍ରର ଆବର୍ତ୍ତନେ ଭୁଞ୍ଜନ୍ତି ସୁଖ ଦୁଃଖ ଜନେ ।
ଅର୍ଥାତ୍- ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ଲାଗିଛି ସଦା ସଂସାରେ ।

(୫୦) ସବୁ ଜଙ୍ଗଲରେ ଚନ୍ଦନଗଛ ବା ସବୁ ଗାଆଁରେ ପ୍ରତିଭାଶାଳୀ ଲୋକର ଜନ୍ମ ହୁଏ ନାହିଁ ।

(୫୧) ଆପଣାକୁ ଅର୍ଥାତ୍ ନିଜେ ନିଜକୁ ସର୍ବଦା ରକ୍ଷା କରିବା ଉଚିତ ।

(୫୨) ଦୈବୀ ଦୁର୍ବିପାକ ଉପରେ ମଣିଷର ହାତ ନାହିଁ । ଦୈବର ଗତିରୀତି ବିସ୍ମୟକର । କେତେବେଳେ କି ସମ୍ପଦ ଦେବ ବା କି ବିପଦ ଘଟାଇବ କାହାରିକୁ ଗୋଚର ନୁହେଁ ।

(୫୩) ଅତ୍ୟଧିକ ଅର୍ଥଲୋଭ; ଭୌତିକତା ପ୍ରତି ବ୍ୟଙ୍ଗ । କିନ୍ତୁ ସେହି ଦିଗରେ ହିଁ ସଂସାରର ଗତି । ବୁଝି ନ ବୁଝିଲାପରି ଲୋକେ ଚାଲନ୍ତି ।

(୫୪) ଦୁର୍ଜନ ସଙ୍ଗଦୋଷରୁ ଜୀବନହାନି ଘଟିପାରେ ।

(୫୫) ଏ ଛଅ ଜଣ ସୃଷ୍ଟି ରକ୍ଷା କରନ୍ତି ।
(୧) ଚିରରୋଗୀ - ଯମ (୨) ଦରିଦ୍ର - ଅଗ୍ନି (୩) ମୂର୍ଖ - ଜଳ
(୪) ପରସେବକ - ବାୟୁ (୫) ପରଦାର - ଇନ୍ଦ୍ର (୬)ପ୍ରବାସୀ- ସୂର୍ଯ୍ୟ

(୫୬) ଯାହାର ଚିତ୍ତ ସ୍ଥିର ନୁହେଁ ତାର ଅନୁଗ୍ରହ ବା କରୁଣା ମଧ୍ୟ ଭୟଙ୍କର ।

(୫୭) ଯେଉଁ ବିଦ୍ୱାନ ଲୋକେ ସୁଭାଷିତ ରସର ଆସ୍ୱାଦନ ହେତୁ (ଅର୍ଥାତ୍ ମଧୁର ବାର୍ତ୍ତାଳାପ ହେତୁ) ରୋମାଞ୍ଚରୂପକ କଞ୍ଚୁକ (ଆବରଣ ବସ୍ତ୍ର) ଧାରଣ କରିଥାନ୍ତି, ସେମାନେ ନାରୀ ସମ୍ଭୋଗ ବିନା ମଧ୍ୟ ସୁଖରେ ରହିଥାନ୍ତି ।

(୫୮) ସର୍ବନାଶ ପରିସ୍ଥିତି ହେଲେ ବୁଦ୍ଧିମାନ ଲୋକ ସେଥିରୁ ଅଧେ ( ୫୦ ପ୍ରତିଶତ) ଛାଡ଼ି ଦିଏ ଓ ଅନ୍ୟ ଅଧକରେ ନିଜର କାମ ଚଳାଏ:
କାରଣ ସର୍ବନାଶ ଅସହ୍ୟ ହୋଇଥାଏ ।

(୫୯) ଅଳ୍ପ ଦେଇ ଅଧିକ ରକ୍ଷା କରିବା ହେଉଛି ପାଣ୍ଡିତ୍ୟର ପରିଚାୟକ ।

(୬୦) ଲୋମୋଦ୍‌ଗମ ହେବା ପରେ "ସୋମ"; ପୟୋଧର ଜାତ ହେବାପରେ "ଗନ୍ଧର୍ବ" ଓ ରାଜୋବତୀ ହେବାପରେ "ଅଗ୍ନି" କନ୍ୟାକୁ ଉପଭୋଗ କରନ୍ତି ବୋଲି କୁହାଯାଏ ।

(୬୧) ଅନୁରକ୍ତ ପୁରୁଷ ନାରୀମାନଙ୍କର ଶାଢ଼ିଭଳି ଭୋଗ୍ୟ ହୋଇଥାଏ ।ଶାଢ଼ିର ଦଶା (ଅଞ୍ଚଳ/ପଣତ) ଥାଏ; ପୁରୁଷର ଦଶା(କାମଦଶା)ଥାଏ । ଶାଢ଼ି ନାରୀମାନଙ୍କର କଟିରେ ପରିବେଷ୍ଟିତ ହୋଇ ଯେପରି ଘର୍ଷିତ ହୁଏ; ପୁରୁଷ ସେହିପରି ନାରୀମାନଙ୍କର ନିତମ୍ବ ତଥା କଟିଦେଶକୁ ଆଶ୍ରୟ କରି ଘର୍ଷିତ ହୁଅନ୍ତି ।

(୬୨) ଯଷ୍ଟିର ପ୍ରହାର ଦ୍ୱାରା, ଶସ୍ତ୍ରର ଆଘାତ ଦ୍ୱାରା, ଦାନଦ୍ୱାରା ବା ସ୍ତୁତି ଦ୍ୱାରା କାହିଁରେ ନାରୀମାନେ ବଶ ହୁଅନ୍ତି ନାହିଁ ।

(୬୩) ସୂର୍ଯ୍ୟ ମଧ ବାରୁଣୀ ସଙ୍ଗ ଜନିତ ( ପଶ୍ଚିମ ଦିଗରେ ଅସ୍ତହେବା, ମଦ୍ୟ ପାନ କରିବା) ଅବସ୍ଥାକୁ ଅନୁଭବ କରିଥାନ୍ତି । ମଦ୍ୟପର କର କମ୍ପମାନ ହୁଏ, ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣ ମଧ କମ୍ପମାନ ହୁଏ । ମଦ୍ୟପ ଅମ୍ବର (ବସ୍ତ୍ର) ତ୍ୟାଗକରି ଫିଙ୍ଗି ଦିଏ, ସୂର୍ଯ୍ୟମଧ ଅମ୍ବର (ଆକାଶ)କୁ ତ୍ୟାଗ କରନ୍ତି । ମଦ୍ୟପର ତେଜୋହାନି ହୁଏ, ସୂର୍ଯ୍ୟଙ୍କର ମଧ ତେଜୋହାନି ଘଟେ । ମଦ୍ୟପର ମୁଖ ପରି ଅସ୍ତଗାମୀ ସୂର୍ଯ୍ୟ ମଧ ରକ୍ତବର୍ଣ୍ଣ ଧାରଣ କରନ୍ତି ।

(୬୪) **ଛଅଟି ସଦ୍ୟ ପ୍ରାଣ ହରଣକାରୀ ପଦାର୍ଥ**

୧) ଶୁଷ୍କ ମାଂସ, ୨) ବୃଦ୍ଧାସ୍ତ୍ରୀ ସମ୍ଭୋଗ, ୩) ବାଳାର୍କ, ୪) ଭଲଭାବରେ ବସିନଥିବା ଦହି, ୫) ପ୍ରଭାତ କାଳୀନ ନିଦ୍ରା, ୬) ମୈଥୁନ,

(୬୫) **ପାପକାରୀ ପୁରୁଷର ଲକ୍ଷଣ ।**

କଣ୍ଠ ସ୍ୱରର ପରିବର୍ତ୍ତନ, ମୁଖର ବିବର୍ଣ୍ଣତା, ଶଙ୍କାକୁଳ ଦୃଷ୍ଟି ଓ ତେଜୋହାନି ।

(୬୬) ଭୟ, ପ୍ରଲୋଭନ ଓ ପ୍ରୟୋଜନ- ଏ ତିନୋଟିକୁ ଛାଡିଦେଲେ ଭକ୍ତିରେ କୌଣସି ଲୋକ କାହାରି ପ୍ରିୟ କାର୍ଯ୍ୟ କରି ନଥାଏ ।

(୬୭) **ବିପତ୍ତିରୁ ରକ୍ଷାପାଇଁ**

୧) ଧନ ରଖିବା ଉଚିତ, ୨) ଧନ ବିନିମୟରେ ସ୍ତ୍ରୀକୁ ରଖିବା ଉଚିତ,
୩) ଧନ ଓ ସ୍ତ୍ରୀ ଉଭୟର ବିନିମୟରେ ନିଜକୁ ରଖିବା ଉଚିତ ।

(୬୮) ଆୟୁ, କର୍ମ, ଧର୍ମ, ବିଦ୍ୟା ଓ ମୃତ୍ୟୁ-
ଏ ପାଞ୍ଚୋଟି ଗର୍ଭସ୍ଥ ପ୍ରାଣୀଙ୍କର ସହିତ ସୃଷ୍ଟି ହୋଇଥାନ୍ତି ।

(୬୯) ଲୋକମାନଙ୍କର ଅଭିନ୍ନ ହୃଦୟ ମିତ୍ରଙ୍କ ଠାରେ ଯେପରି ବିଶ୍ୱାସ ଥାଏ, ମାତା, ପତ୍ନୀ, ଭାଇ, କିମ୍ବା ପୁତ୍ରଠାରେ ସେପରି ବିଶ୍ୱାସ ନଥାଏ ।

(୭୦) ଶାସ୍ତ୍ର ଦ୍ୱାରା ନିହତ ଶତ୍ରୁ ମରିନଥାଏ, ବୁଦ୍ଧି ଦ୍ୱାରା ନିହତ ଶତ୍ରୁହିଁ ଯଥାର୍ଥରେ ମରିଥାଏ । କାରଣ, ଶସ୍ତ୍ର କେବଳ ମନୁଷ୍ୟର ଶରୀରକୁ ନଷ୍ଟ କରିଦିଏ, କିନ୍ତୁ ବୁଦ୍ଧି ଦ୍ୱାରା ଶତ୍ରୁର କୁଳ, ଐଶ୍ୱର୍ଯ୍ୟ, ଯଶ ଆଦି ବିନଷ୍ଟ ହୋଇଥାଏ ।

(୭୧) ବିପଦ ବେଳେ ଯିଏ ଅପକାର କରିଥାଏ ଓ ଦୁରାବସ୍ଥା ଉପସ୍ଥିତ ହେଲାବେଳେ ଯିଏ ଉପହାସ କରିଥାଏ, ଏଦୁହିଁଙ୍କର ଅପକାରର ସାଧନ କରିପାରିଲେ ମନୁଷ୍ୟ ପୁନର୍ଜନ୍ମ ପାଇଲା ବୋଲି ମନେ କରେ ।

(୭୨) ଏ ଆପଣା, ଏ ପର, -ଏପରି କେବଳ ନୀଚମନା ଲୋକ କରିଥାନ୍ତି । କିନ୍ତୁ ଯେଉଁମାନଙ୍କ ମନ ଉଦାର, ସେମାନେ ସମଗ୍ର ପୃଥିବୀକୁ ନିଜର କୁଟୁମ୍ବ ବୋଲି ମନେକରିଥାନ୍ତି ।

(୭୩) **ଜଗନ୍ନାଥଙ୍କର ବଡ଼େଇ ।**
କାହାକୁ ଦିଅନ୍ତି ପାଟ ପୀତାମ୍ବରୀ (କାହାକୁ ଦିଅନ୍ତି ଖିରୀ ଖିରୀସା)
କାହାକୁ ଦିଅନ୍ତି ଗଡ଼େଇ ।

(୭୪) ଦୁଃଖ ଦୂର କରିବା ପାଇଁ ଅଧମ ଚେଷ୍ଟା ମଧ୍ୟ ଶ୍ରେୟସ୍କର ।

(୭୫) ଆପଣା ନାମ, ଗୁରୁଜନଙ୍କ ନାମ, କୃପଣ ବା ଅଦାତାର ନାମ, ବଡ଼ପୁଅର ନାମ ଓ ସ୍ତ୍ରୀର ନାମ ଉଚ୍ଚାରଣ କରିବା ଶାସ୍ତ୍ରରେ ନିଷିଦ୍ଧ ।

(୭୬) ସ୍ନେହ, ଦୟା , ସୁଖ ଏପରିକି ଧର୍ମପତ୍ନୀ ଜାନକୀଙ୍କୁ ଯଦି ଲୋକ କଲ୍ୟାଣ ପାଇଁ ତ୍ୟାଗ କରିବାକୁ ପଡ଼େ- ତେବେ ମୋର ତିଳେ ମାତ୍ର ବ୍ୟଥା ନାହିଁ । ଏହା କହି ଶାସକ ଭାବରେ ରାଜା ରାମଚନ୍ଦ୍ର ଜନ କଲ୍ୟାଣ ପାଇଁ ସୀତାଙ୍କୁ ପରିତ୍ୟାଗ କଲେ ।

(୭୭) ନିଜ ସ୍ୱାର୍ଥ ଛାଡ଼ି ପରର ମଙ୍ଗଳ ସାଧନ କରିବା- ''ସାଧୁପୁରୁଷ''
ନିଜ ସ୍ୱାର୍ଥ ଅକ୍ଷୁର୍ଣ୍ଣ ରଖି ପରର ମଙ୍ଗଳ କରିବା- ''ସାଧାରଣ ମାନବ'';

(୭୮) ନିଜ ସ୍ୱାର୍ଥ ପାଇଁ ପରର ଅମଙ୍ଗଳ ସାଧନ କରିବା- ''ରାକ୍ଷସ'' ସ୍ୱରୁପ ।

(୭୯) ଦୁର୍ଗାଙ୍କ ଉପାସନାରେ ଦଶବିଧ ବିଘ୍ନ (ବାଧା) ଦୂରୀଭୂତ ହୁଏ ।
ଆତ୍ମଗ୍ଲାନି, ଅସୂୟା, ଈର୍ଷା, ଦ୍ୱେଷ, ପରୋକ୍ଷ ବାଦ, ମିଥ୍ୟା, କ୍ରୋଧ, ଅଭିମାନ ଅହଂଭାବ ଓ ନାସ୍ତିକ ଭାବ ।

(୮୦) ଦକ୍ଷ ବ୍ୟକ୍ତି ଲକ୍ଷ୍ମୀଙ୍କୁ; ମିତାହାରୀ ଲୋକ ଆରୋଗ୍ୟକୁ; ନୀରୋଗଲୋକ ସୁଖକୁ; ଉଦ୍ୟୋଗୀ ଲୋକ ବିଦ୍ୟାକୁ; ଓ ବିନୀତ ଲୋକ ଧର୍ମ- ଅର୍ଥ- ଯଶକୁ ଲାଭ କରିଥାଏ ।

(୮୧) ନିଜର ଉନ୍ନତି ଓ ଶତ୍ରୁର ଅବନତି, ଏ ଦୁଇଟି ହେଉଛି ପ୍ରଧାନ ନୀତି । ଏହି ନୀତିକୁ ଗ୍ରହଣ କରି କୃତୀ ପୁରୁଷମାନେ ନିଜର ପାଣ୍ଡିତ୍ୟ ପ୍ରକାଶ କରିଥାନ୍ତି ।

(୮୨) ପାଞ୍ଚଟି ଅବସ୍ଥାରେ ମିଥ୍ୟା କହିଲେ ପାପ ହୁଏ ନାହିଁ,
(୧) ବିବାହ କାଳରେ, (୨) ରତି ସମ୍ବନ୍ଧେ (୩) ପ୍ରାଣ ସଂଶୟେ
(୪) ସର୍ବନାଶର ସମ୍ଭାବନାରେ (୫) ବ୍ରାହ୍ମଣର ଉପକାର ନିମନ୍ତେ ।

(୮୩) ଧନ, ମନ, ଯୌବନ ଓ ଜୀବନ ସବୁ ଅସ୍ଥିର (ଏକପ୍ରକାର ରହେ ନାହିଁ) ।

(୮୪) ମଲାର ମରଣ ନାହିଁ; ଯାହା କରା ହୋଇ ଯାଇଛି, ତାକୁ ଉପାୟ ନାହିଁ; ଯାହାଘଟି ଯାଇଛି, ସେଥିଲାଗି ଦୁଃଖ କରିବା ବୃଥା ।

(୮୫) ବାଞ୍ଝ, ବୁଢ଼ା ଓ ରାଣ୍ଡ- ସଂସାରରେ ଏ ତିନିଜଣଙ୍କର କାମନା ତୀବ୍ର ।

(୮୬) ସଂସାର ଦୁଃଖମୟ । ଏଠା ସୁଖ ଅସ୍ଥାୟୀ
ଯାହାର ଘରଣୀ ନାହିଁ, ତାହାର ଜାଣ ଘର ନାହିଁ ।

(୮୭) **ଏମାନେ ତୃପ୍ତ ହୁଅନ୍ତି ନାହିଁ**
ଅଗ୍ନିଯେତେ କାଠ ପାଇଲେ । ସମୁଦ୍ରରେ ଯେତେ ନଦୀ ମିଳିଲେ । ଯମରାଜ ଯେତେ ପ୍ରାଣୀ ଗ୍ରାସ କଲେ । ନାରୀମାନେ ଯେତେ ପୁରୁଷ ପାଇଲେ ।

(୮୮) ମେଘର ଛାୟା, ଖଳଲୋକର ପ୍ରୀତି, ସୁପକ୍ୱ ଅନ୍ନ, ରମଣୀ, ଯୌବନ ଓ ଧନ, ଏଗୁଡ଼ିକ ଅଳ୍ପ କାଳ ପାଇଁ ଭୋଗ କରିବାର ଯୋଗ୍ୟ, ଅର୍ଥାତ୍-ଏ ଗୁଡ଼ିକ ବେଶିଦିନ ଯାଏ ରହନ୍ତି ନାହିଁ।

(୮୯) (କୁଳି କରିବା ଭଳି) ଅଳ୍ପ ପାଣିରେ ଯେପରି କେରାଣ୍ଡି ମାଛ ଫର ଫର ହୁଏ। ସେହିପରି ଯତ୍‌ସାମାନ୍ୟ ପାଠ ପଢ଼ିଥିବା ଲୋକ ବାଗାଡ଼ମ୍ବର ଦେଖାଏ।

(୯୦) ଅଭ୍ୟାସ ନକରି ପଢ଼ିଲେ, ପାଠ ପାସୋରି ଯାଏ। ଅଜୀର୍ଣ୍ଣ ହୋଇଥିଲା ବେଳେ ଖାଇଲେ, ତାହା ବିଷ ପରି କାର୍ଯ୍ୟ କରେ।

(୯୧) ଗୋଟିଏ ପାଠକୁ ଭଲଭାବେ ଆୟତ୍ତ କରିଥିଲେ, କାର୍ଯ୍ୟରେ ଲାଗେ। ଅଧାପନ୍ତରିଆ ଅନେକ ପାଠର କୌଣସି ମୂଲ୍ୟ ନାହିଁ।

(୯୨) ଯାହାର ପିତା, ପିତାମହ ଦାନ କରି ନାହାନ୍ତି, ସେ ଦାନୀ ହେବ କିପରି ? ବାପର ଚେଷ୍ଟା ଅଭାବରୁ ପୁଅ ପାଠ ପଢ଼ିପାରେ ନାହିଁ।

(୯୩) ଦାନ ନ ଦେଲେ ରାଜା ନରକରେ ପଡ଼ନ୍ତି। ସ୍ୱେଚ୍ଛାଚାରିତା ଯୋଗୁଁ ଶିଳ୍ପୀ, ଗୂଢ଼ତତ୍ତ୍ୱ ପ୍ରକାଶ କରୁନଥିବା କବି/ପଣ୍ଡିତ ନରକଗାମୀ ହୁଅନ୍ତି।

(୯୪) ଉପାର୍ଜିତ ଅର୍ଥକୁ ଦାନ କରିବା ହିଁ ହେଉଛି ଅର୍ଥର ସୁରକ୍ଷା କରେ। କିନ୍ତୁ ଦାନ ନ କରି କେବଳ ସଞ୍ଚିତ ଧନ ମନୁଷ୍ୟକୁ ପାପରେ ଲିପ୍ତ କରେ। ପୁଷ୍କରିଣୀ ଗର୍ଭରେ ପୂରିଥିବା ଜଳକୁ ନାଳଦ୍ୱାରା ବାହାର କରିଦେଲେ ଜଳର ସୁରକ୍ଷା ହୁଏ। ଅପରପକ୍ଷରେ ବାହାର କରି ନ ନେଲେ ଜଳ ବିକୃତ ହୋଇ ଥାଏ,

(୯୫) ପୃଥିବୀରେ ଦାନ ତୁଲ୍ୟ ଅନ୍ୟକୌଣସି ନିଧି (ଧନ) ନାହିଁ କି ଲୋଭଠାରୁ ବଳି ଅନ୍ୟ ଶତ୍ରୁ ନାହିଁ; ସଦାଚାର ଭଳି ଅନ୍ୟ ଭୂଷଣ ନାହିଁ କି ସନ୍ତୋଷ ତୁଲ୍ୟ ଅନ୍ୟ ସମ୍ପତ୍ତି ନାହିଁ।

(୯୬) ଧନହୀନ ହେଲେ ଅତିବୁଦ୍ଧିମାନ୍ ଲୋକଙ୍କର ବୁଦ୍ଧି ମଧ୍ୟ ସର୍ବଦା ଘୃତ, ଲବଣ, ତୈଳ, ତଣ୍ଡୁଳ, ବସ୍ତ୍ର, କାଷ୍ଠ ପ୍ରଭୃତି ଚିନ୍ତାରେ ବିନାଶ ପାଇଥାଏ।

(୯୭) ଅନ୍ଧ ନିକଟରେ ଦୀପ, କାଲ ଆଗରେ ଗୀତ, ମୂର୍ଖ ଆଗରେ ଭକ୍ତିରସ ଏସବୁ ନିରର୍ଥକ।

(୯୮) ଯେ ରସ ଗ୍ରହଣ କରିବାକୁ ଅସମର୍ଥ ତା ନିକଟରେ ରସୋକ୍ତି ପ୍ରକାଶ ନିଷ୍ଫଳ । ତେଣୁ, ହେ ଭଗବାନ ! ମୋତେ ଯେତେ ଦୁଖ ଦେବ ଦିଅପଛେ ମୁଁ ସହିବାକୁ ପ୍ରସ୍ତୁତ; କିନ୍ତୁ ଅରସିକ ଠାରେ ରସର ନିବେଦନ କରିବା ଜନିତ ଦୁଃଖ ମୋ କପାଳରେ ଲେଖ ନାହିଁ ।

(୯୯) ଯେଉଁ ଘରେ ମାଇପେ ମାମଲତକାର ହୁଅନ୍ତି, ସେ ଘର ନଷ୍ଟ ହୁଏ ।

(୧୦୦) ବହୁ ବିବାହ ଅପେକ୍ଷା ଏକ ବିବାହ ଶ୍ରେୟସ୍କର । ଗୋଟିଏ ସ୍ତ୍ରୀ ବିଭା ହୋଇ ତାକୁ ଉତ୍ତମଭାବେ ଲାଳନପାଳନ ଓ ରକ୍ଷା କରିବା ଉଚିତ ।

(୧୦୧) ସୁନ୍ଦରୀ ହେଉ ବା ଅସୁନ୍ଦରୀ ହେଉ, ଗୋଟିଏ ସ୍ତ୍ରୀ ଯେ ବିଭା ହୁଏ , ସଂସାରରେ ତାର ଦାମ୍ପତ୍ୟ ଜୀବନ ସୁଖମୟ ହୁଏ ।

(୧୦୨) ଧର୍ମ କାର୍ଯ୍ୟ ବାର୍ଦ୍ଧକ୍ୟ ଯାଏ ନ ରଖି ଶୀଘ୍ର କରିବା ଉଚିତ । ଧର୍ମର ଗତି ସୂକ୍ଷ୍ମ, ସାବଧାନ ନହେଲେ ଧର୍ମନାଶ ହୋଇପାରେ । ତେଣୁ କହନ୍ତି -

'ଧର୍ମ ବୋଇଲେ ବେଗ କରି ।'

(୧୦୩) ସ୍ତ୍ରୀ ଦୁଷ୍ଟ ପ୍ରକୃତିର ହୋଇଥିଲେ, ଚାକର କଥା କଥାକେ ଜବାବ୍ ଦେଉଥିଲେ ଘରେ ଶାନ୍ତି ରହେ ନାହିଁ । ଘରେ ଯଦି ବିଷାକ୍ତ ସାପ ଥାଏ, ସେ ସାପକୁ ମାରିବ, ଅନ୍ୟଥା ମୃତ୍ୟୁ ହେବ ।

(୧୦୪) ଧର୍ମରୁ ଜୟ, ପାପରୁ କ୍ଷୟ ।

(୧୦୫) ଦାବୀ କରି ପଣ ନେଉଥିବା ଜୋଇଁ, ଏକ ଗଳଗ୍ରହ ।

(୧୦୬) ବାପ ଠକ, ପୁଅ ଠକ, ଝିଅ ଠକ, ଜୋଇଁ ଠକ,
ଯୌତୁକ ଠକାମି ଠକ ଠକକୁ ଠକାଇବା ।

(୧୦୭) ଏଠି ସେଠି ଖିଆ, ହାଟଚାଳୀରେ ଶୁଆ, ଗୋମତୀ ନଈ କୂଳରେ ମରଣ- ଏହାଠାରୁ ବଳି ଭାଗ୍ୟର ଆଉ କି ବିଡ଼ମ୍ବନା ହୋଇପାରେ ?

(୧୦୮) ଭୂପୃଷ୍ଠରେ ଯାହା କିଛି ପଦାର୍ଥ ଅଛି, ସେ ସମୁଦାୟ ହିଁ ପ୍ରଜାପତି ଜୀବନର ଖାଦ୍ୟ ରୂପେ ସୃଷ୍ଟି କରିଛନ୍ତି; ଅତଏବ ସ୍ଥାବର ଅନ୍ନ, ଶାକ, ଫଳ ପ୍ରଭୃତି ଏବଂ ଜଙ୍ଗମ ପଶୁପକ୍ଷୀ, ମତ୍ସ୍ୟ ପ୍ରଭୃତି ସମସ୍ତ ହିଁ ପ୍ରାଣୀର ଭୋଜ୍ୟ ।

(୧୦୯) ଆସ, ଯାଅ, ବସ, ଉଠ, କହ, ଚୁପ୍‌କର, ଏହିପରି ଆଦେଶ ଦେଇ ଦେଇ ଧନୀମାନେ ଆଶାଗ୍ରସ୍ତ ଯାଚକ ମାନଙ୍କ ସହିତ କ୍ରୀଡା କରୁ ଥାଆନ୍ତି ।

(୧୧୦) ୨୫ ବର୍ଷରେ ପରୁଷ, ୧୬ବର୍ଷରେ ସ୍ତ୍ରୀର ବୀର୍ଯ୍ୟ ପକ୍ୱ ହୁଏ ।ତେଣୁ ସେ ପର୍ଯ୍ୟନ୍ତ ଗର୍ଭଧାନ ସଂସ୍କାର କର୍ତ୍ତବ୍ୟ ନୁହେଁ ।

(୧୧୧) ଦାନ ଦ୍ୱାରା, ସମ୍ମାନ ଦ୍ୱାରା, ସରଳତା ଦ୍ୱାରା, ସେବାଦ୍ୱାର, ଶସ୍ତ୍ରଦ୍ୱାରା ବା ଶାସ୍ତ୍ରଦ୍ୱାରା କାହିଁରେ ସ୍ତ୍ରୀ ବଶ ହୁଅନ୍ତି ନାହିଁ । ତେଣୁ ସେମାନେ ସର୍ବଦା ବିଷମ ଅଟନ୍ତି ।

(୧୧୨) ପତି ଗୁଣବାନ୍, ଯଶସ୍ୱୀ, ରୂପବାନ, ରତିକୁଶଳ, ଧନବାନ, ଯୁବକ ହୋଇଥିଲେ ମଧ ନାରୀମାନେ ତାଙ୍କୁ ତ୍ୟାଗକରି ଗୁଣହୀନ, ଚରିତ୍ର ହୀନ ପରପୁରୁଷ ପାଖକୁ ଚାଲିଯାନ୍ତି ।

(୧୧୩) ପରପୁରୁଷ ସହିତ ତୃଣ ଆଚ୍ଛାଦିତ ଭୂମି ପରେ ଶୋଇ ନାରୀ ଯେଉଁ ଆନନ୍ଦ ଅନୁଭବ କରେ, ବିଚିତ୍ର ଶଯ୍ୟାରେ ଶୋଇ ସେହିପରି ଆନନ୍ଦ ଅନୁଭବ କରେ ନାହିଁ ।

(୧୧୪) ଅନ୍ୟ ସମୟରେ ଯେପରି 'ଲଜ୍ଜା'ନାରୀମାନଙ୍କର ଭୂଷଣ, ସେହିପରି 'କ୍ଷମା' ପୁରୁଷମାନଙ୍କର ଭୂଷଣ । କିନ୍ତୁ ରତି କାଳରେ ଯେପରି 'ଧୃଷ୍ଟତା' ନାରୀମାନଙ୍କର ଭୂଷଣ, ସେହିପରି ଅପମାନ ସମୟରେ ପରାକ୍ରମ ପୁରୁଷମାନଙ୍କର ଭୂଷଣ ।

(୧୧୫) ଲକ୍ଷ୍ମୀଙ୍କୁ ଲାଭ କରିବାକୁ ଇଚ୍ଛା କରୁନଥିବା ଲୋକ ଜଗତରେ କେହି ନାହିଁ। ଅପରର ସୁନ୍ଦରୀ ଯୁବତୀ ଭାର୍ଯ୍ୟାକୁ କିଏ ଆଦର ସହକାରେ ଅନାଏଁ ନାହିଁ ?

(୧୧୬) ନାରୀ ''ସୋମ''ଙ୍କ ଠାରୁ ପବିତ୍ରତା, ''ଗନ୍ଧର୍ବ''ଙ୍କ ଠାରୁ ମଧୁର ଓ ଚତୁର ଭାଷୀ ଏବଂ ''ଅଗ୍ନି''ଙ୍କ ଠାରୁ ସର୍ବମେଧ୍ୟତ୍ୱ ବା ପବିତ୍ରତା ଲାଭକରିଥାଏ । ତେଣୁ ନାରୀର ଶରୀର ସର୍ବଦା ଶୁଦ୍ଧଥାଏ ।

(୧୧୭) ଧନ ଅର୍ଜନ କରିବାରେ ଦୁଃଖ, ତାକୁ ରକ୍ଷା କରିବାରେ ମଧ ଦୁଃଖ, ଧନନାଶରେ ଦୁଃଖ, ଧନବ୍ୟୟରେ ମଧ ଦୁଃଖ ।
କେବଳ ଦୁଃଖ ଦାୟକ୍ ଏହି ଧନକୁ ଧିକ୍ ।

(୧୧୮) ପତ୍ନୀ ସହବାସ ନ କରିବା, ପତ୍ନୀ ବନ୍ଧ୍ୟା ହେବା, ଗର୍ଭପାତ ହେବା, କନ୍ୟା ଜନ୍ମିବା, ମୃତ ପୁତ୍ର ଜାତ ହେବା ଶ୍ରେୟସ୍କର, ମାତ୍ର- ରୂପବାନ, ଧନବାନ ଅଥଚ ବିଦ୍ୟାଶୂନ୍ୟ ପୁତ୍ର କଦାପି ଶ୍ରେୟସ୍କର ନୁହେଁ ।

**(୧୧୯) କେଉଁମାନେ ଶତ୍ରୁରୂପେ ପରିଗଣିତ ହୋଇଥାନ୍ତି**

(୧) ଋଣ କରିଥିବା ପିତା (୨) ବ୍ୟଭିଚାରିଣୀ ମାତା

(୩) ରୂପବତୀ ଭାର୍ଯ୍ୟା (୪) ମୂର୍ଖ ପୁତ୍ର

**(୧୨୦) ସଂସାରରେ ଏସବୁ ସୁଖ**

(୧) ଧନାଗମ (୨) ସର୍ବଦା ନୀରୋଗ (୩) ପ୍ରେମମୟୀ ଓ ପ୍ରିୟ ଭାଷିଣୀ ଭାର୍ଯ୍ୟା (୪) ଆଜ୍ଞାପାଳନକାରୀ ପୁତ୍ର (୫) ଅର୍ଥକାରୀ ବିଦ୍ୟା

**(୧୨୧) ବିଧାତାଙ୍କ ଦ୍ୱାରା ସୃଷ୍ଟି ପାଞ୍ଚଟି ବିଧାନ (ପ୍ରାଣୀର ଜନ୍ମ ପୂର୍ବରୁ)**

(୧) ଆୟୁ (୨) ଶୁଭାଶୁଭ କର୍ମ

(୩) ଧନ ସମ୍ପତ୍ତି (୪) ବିଦ୍ୟା (୫) ମୃତ୍ୟୁ

**(୧୨୨) ଧର୍ମର ପନ୍ଥା ଆଠ ପ୍ରକାର**

(୧) ଯଜ୍ଞ (୨) ଶାସ୍ତ୍ର ଅଧ୍ୟୟନ (୩) ଦାନ (୪) ତପଃ

(୫) ସତ୍ୟ (୬) ଧୃତି (୭) କ୍ଷମା (୮) ଅଲୋଭ

ପ୍ରଥମ ଚାରୋଟିକୁ, ଲୋକେ ଖ୍ୟାତି ବା ଯଶୋଲାଭ ଆଶାରେ ଆଚରଣ କରିଥାନ୍ତି ଶେଷୋକ୍ତ ଚାରୋଟିକୁ, ଉଦାରଚେତା ମାନବ ମାନଙ୍କଠାରେ ଦେଖିବାକୁ ମିଳେ ।

**(୧୨୩) ଛ'ଶ୍ରେଣୀର ଲୋକ ଦୁଃଖ ଭୋଗ କରିଥାନ୍ତି**

(୧) ଈର୍ଷା ପରାୟଣ (୨) ଘୃଣାକାରୀ (୩) ଅସନ୍ତୁଷ୍ଟ

(୪) କ୍ରୋଧଶୀଳ (୫) ସର୍ବଦା ଶଙ୍କାକୁଳ (୬) ପରାଧୀନ

**(୧୨୪) ଐଶ୍ୱର୍ଯ୍ୟକାମୀ ପୁରୁଷର ଛ'ଟି ଦୋଷକୁ ପରିହାର କରିବା ଉଚିତ**

(୧) ନିଦ୍ରା (୨) ତନ୍ଦ୍ରା (୩) ଭୟ (୪) କ୍ରୋଧ

(୫) ଆଳସ୍ୟ (୬) ଦୀର୍ଘସୂତ୍ରତା



# ମୟୂରଭଞ୍ଜର
# ପ୍ରାଚୀନ ଜାତୀୟ ସଙ୍ଗୀତ ଓ ଲୋକଗୀତ

(୧) ମୋର ଏହି ଭଞ୍ଜ ଭୂମି
ମୋର ମହାରାଜା,
ଜନ୍ମେ ଜନ୍ମେ କରୁଥିବି ମୁଁ
ଏ ଦୁହିଁଙ୍କୁ ପୂଜା ।
ମୋର ମହାରାଜା, ମୋର ମହାରାଜା (ଘୋଷା)
ଦମ୍ ଦମ୍ ଲାଗେ ଦମ୍ ଲାଗେ ଦମ୍
ବାଜେ ବୀର ବାଜା
ଦେଖରେ ଦେଖରେ ପୂର୍ବ ନଭେ
ଉଇଁ ଆସୁଛି ସୂର୍ଯ୍ୟ
ଦମାମ୍ ଦମାମ୍ ମାଦଳ ବାଜେ
ଗର୍ଜି ଉଠେ ତୂର୍ଯ୍ୟ
କର୍ମ ଆଗେ କର୍ମ ଆଗେ
ଆଗେଇ ଚାଲରେ ଅଗ୍ରଭାଗେ
ସେବାର ଧର୍ମ ମର୍ମେ ଜାଗେ
ରକ୍ତ ଲାଗେ ତାଜା ।
ମୋର ମହାରାଜା, ମୋର ମହାରାଜା (ଘୋଷା)

(୨) ଉଠ ବୀର ଜାଗ ବୀର
ଧ୍ୱଜା ଧରି
ଭଞ୍ଜ ପ୍ରଦୀପ ଦୃଢେ ଧରି ଚାଲ
ଦେଖାଅ ଉଜ୍ଜ୍ୱଳ ସରଣି ।
ଭଞ୍ଜର ସନ୍ତାନେ ହୁଅରେ ମହାନ
ଅତୀତ ଗୌରବ ଅତି ଗରିୟାନ
ଆଲୋକ ବିଞ୍ଚାଇ ଦେ
ଅମୃତ ସିଞ୍ଚାଇ ଦେ
ଘୁଞ୍ଚୁ ଦୁଃଖ ନାଚୁ ଧରଣୀ ।

## ମୟୂରଭଞ୍ଜ ଆଞ୍ଚଳିକ ଗୀତି

**ସ୍ଥାନୀୟ ଗୀତ :**

ଭୁଡୁରୁବାଇଁ, ଭୁଡୁରୁ ବାଇଁ
ବାଇଁ ଖେଳି ଖେଳି ଆଇଲି ଧାଇଁ
ହାଣ୍ଡିରେ ଦେଖିଲି ପଖାଳ ନାଇଁ
ଡାଟି କିଲା ମାଡ଼ ଖାଇବି ନାଇଁ
ଦଶାଦିଆ ଘରେ ରହିବି ନାଇଁ
ଭୁଡୁରୁ ବାଇଁ ।

ଭୁଡୁରୁ ମରିଚ୍ କୁଡ଼ିଏ ନବୁ, କଉଡ଼ି କୁଡ଼ିଏ
ଭୁଡୁରୁ ହେଣ୍ଡା ଗୀତ ଶୁଣିବୁ ଯଦି ରହିଯିବୁ ଘଡ଼ିଏ
ଭୁଡୁରୁ ବାଇଁ ।

★ ★ ★

ରାନୀ ତୋର କି ଖାଇତେ ମନ,
ହାଟପାଳିତେ ଚିଙ୍ଗିଡ଼ି ଶୁଖୁଆ, ଭେଲୁଆ ବାଇଗଣ,
ରାନୀ ତୋର କି ଖାଇତେ ମନ ।

★ ★ ★

ଆଇକମ ବାଇକମ ତାଡ଼ା ତୁଡ଼ି
ଯଦୁର ମାଷ୍ଟାର ଶଶୁର ବାଡ଼ି ।
ରେଲ ଚାଲେ ଧମା ଧମ
ପା ପିଛିଲେ ଆଲୁର ଦମ ।
ଆଲୁଦମ ଖାବୋନା,
ଶଶୁର ବାଡ଼ି ଯାବୋନା ।

**ସ୍ଥାନୀୟ ଗୀତ (ଝୁମର ଢଙ୍ଗରେ) :**

କଲିକତା କଠିନ ସହର ମକେ (ମୋତେ) ଲାଗେ ଡର,
କଲିକତା କଠିନ ସହର ।
ଆଗେ ଆଗେ ଘୋଡ଼ାଗାଡ଼ି; ପିଛେ ପିଛେ ମଟରଗାଡ଼ି;

ତା'ର ପିଛେ ଯୋଡ଼ା ପାସେଞ୍ଜର ମକେ (ମୋତେ) ଲାଗେ ଡର,
କଲିକତା କଠିନ ସହର ।

★ ★ ★

'କାଲିମାଟି' (ଜାମସେଦପୁର/ଟାଟା ନଗର) ବଡ଼ ଟାଣ
ଶୁଣ ହୋ ନାଗର ଶ୍ୟାମ
ଠସକି, ଠସକି, ପଡ଼େ ଘାମ (ଝାଳ) ।

★ ★ ★

ରାମ କାନ୍ଦେ ଲଖନ କାନ୍ଦେ, ଆରୋ କାନ୍ଦେ ଜମ୍ବୁବାନ
ଅଶୋକ ବନେ ସୀତା କାନ୍ଦେ, ଆରୋ କାନ୍ଦେ ହନୁମାନ
ରାବନ ଦେଖିବ ତୋରେ
ସନାର ଲଙ୍କା ରାଖିବିରେ କେମନ କରେ ।

★ ★ ★

ଚଲିତେ ଜମୁନାର ଜଲେ
ଶ୍ରୀରାଧା ସଖୀରା ମେଲେ
ରସିକ ନାଗର ହରି ଧରିଲ ଆଁଚଲେ, ଗୋ ।
ଯାମୁଁ ନାଇଁ ଜମୁନାର ଜଲେ (ଘୋଷା)
ହାତ ବାଙ୍କା, ପାଦ ବାଙ୍କା, ଚରନ ଚଲିତେ ବାଙ୍କା, ଆସେ ଗୋ;
ଦେଖା ହୋଲେ ବୋଲିବେ ଆସିତେ, ଗୋ ।
ଯାମୁଁ ନାଇଁ ଜମୁନାର ଜଲେ । (ଘୋଷା)
ଦେଖିଆଁ ଯୁବତୀ ନାରୀ   ନନ୍ଦ ବାଜାଏ ବାଂଶରୀ
ଆଖିଁଠାରି ରମଣୀ ଭୁଲାଏ, ଗୋ ।
ଯାମୁଁ ନାଇଁ ଜମୁନାର ଜଲେ ।

**ତ୍ରିପଦୀ ଝୁମର :**

ଯୋଗୀ ବେଶ ପରିହରି ନଟବର ବେଶଧରି
ରାସମଞ୍ଚେ ଦାଣ୍ଡାଇଲା ହରି
ବାମେ ରାଧା ବିନୋଦିନୀ ଚନ୍ଦ୍ରମୁଖୀ ସୁହାସିନୀ
ଚାରିପାଶେ ଯତ ସହଚରୀ ।

**ଭାଦୁରିଆ ଝୁମର :**

(୧)

କାମିନୀ କାଞ୍ଚନ ଯାର ସଂସାର ସାର ତାହାର
ରସିକ ଜନ ଜାନେ ବେଭାର
ଏ ସଂସାରେ ସାର; କେ ଜାନେ ହେ ମହିମା ତାହାର ।୧।
କାମିନୀ ଗୁନ କଥନ, ଶ୍ରବନ କି ଦରଶନ,
ଚୁମ୍ବନ ଆଲିଙ୍ଗନ ବିହାର; ଏ ସଂସାରେ ସାର ।୨।
ମରାଲ ଗଜ ଗମନ, ନିତାନ୍ତ ଦମ୍ଭଶ୍ଛେଦନ
ଭରଜ ଧରଯେ ଛାରଖାର-ଏ ସଂସାରେ ସାର ।୩।
ପୁରୁଷ ଲୁହାର ଖନି, ରମଣୀ ପରଶ ମନି
ତୁଳସୀର ଚୀର ଏ ବିଚାର, ଏ ସଂସାର ସାର ।୪।

(୨)

ମାଧବେ ବିନୟ କରି, କହେ ରାଧା ରାସେଶ୍ୱରୀ,
ତୁମି ଆମାର ଜୀବନର ଜୀବନ ।
ମନେ ହୟ ଅଙ୍ଗେ ଅଙ୍ଗ, ମିଶାୟେ ହୋଇ ଏକାଙ୍ଗ
ସଙ୍ଗଛାଡ଼ା ନ ହବ କଖନ, ହେ ପ୍ରାଣଧନ ।

**ଦରବାରୀ ଝୁମର :**

କ୍ରିଷ୍ଣ ଗେଲ ମଧୁପୁରୀ, କି କରିବ ସହଚରୀ ଗୋ
ବିଫଲ ହୋଇଲ ଆମାର ନବ ଯୌବନେ,
ଛେଲେ ଗେଲ କେମନେ, ଭୁଲେ ରଇଲ କେମନେ
ନବୀନ ପ୍ରେମର ଆଶା ଭଙ୍ଗିଲ କେନେ ?
ବରହୀର ବିରହ ବାନେ ଦହେ ଜୀବନେ ।

**ଝୁମର :**

(୧)

ଏକାକିନୀ ଶଯ୍ୟା ଲାଗେ କଣ୍ଟକ ଯେମନ
ରାତିହେଲେ ରତିପତି କରେ ଜ୍ୱାଲାତନ ।

ପ୍ରଭାତେ ଗାଛେର ପାତେ ଶିଶିର ପତନ
ଶ୍ୟାମ ବିନା ବିନୋଦିନୀ ବେଆକୁଲ ପ୍ରାନ ।

(୨)

ଆହେ ରସିକ ହରି, ତୁମି ଜାନନା ପୀରିତି କୀରିତି
ଚରାଉ ବାଛୁରୀ, ବନେ ବିହରି, ବାଜାଉ ବାଂଶରୀ
ପ୍ରେମ୍ କି ରତନ ପ୍ରେମେର ଯତନ, ଜାନେ ଭୋଲା ଶଙ୍କରୀ
ବାମେ ଗୌରୀ ଶିରେ ସୁରେଶ୍ୱରୀ ।

(୩)

ଜାନକୀ ଚଲେ ବନ ଗୋ
ଶ୍ରୀରାମ ଲଛଖଣ
ରାଜା କାନ୍ଦେ ପ୍ରଜା କାନ୍ଦେ
ଆର କାନ୍ଦେ ବାଛା ଧନ ଗୋ
ଜାନକୀ ଚଲେ ବନ ଗୋ
ଶ୍ରୀରାମ ଲଛଖଣ ।

**କରମ ଗୀତ :**

ଝିଙ୍ଗା ଫୁଲ ଗୁନ୍ଥି ଦେନା ମୋକେ
ସାଞ୍ଜେକ ବେରି ଚୁମା ଖାବଁ ତୋକେ ଗୋ ।

**ଓଡ଼ିଆଙ୍କ ପାଇଁ କବି ଗଙ୍ଗାଧରଙ୍କର ମର୍ମସ୍ପର୍ଶୀ ବାଣୀ**

'ମାତୃଭୂମି ମାତୃ- ଭାଷାର ମମତା
ଯା'ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବ ନାହିଁ ।'



# ପଶ୍ଚିମ ଓଡ଼ିଶା ପ୍ରବାଦ/ବଚନ

## ବୋଲି (କଥନିକା)

(୧) ଓସ୍ (କାକର), ନାଇଁ ମାରେ କାର୍ ଶୋଷ୍ ।

(୨) ଧୂର ମଣ୍ଡଳ ପାସ୍ ପାଏନ୍,
ପାସ୍ ମଣ୍ଡଳ ଧୂର ପାଏନ୍ ।

(୩) ଯିସ୍‌କା ବାପ୍ ଚଢ଼େ ଘୋଡ଼ା
ଉସ୍‌କା ବେଟା ଥୋଡ଼ା ଥୋଡ଼ା ।

(୪) ବାପର୍ ମରନ୍ ପୁଅର ଦଶା (ରାବଣ)
ଶତ୍ରୁ କରିଛେ ଘରେ ବସା (ଇନ୍ଦ୍ରଜିତ)
ମାଙ୍କୁ ବନ୍ଧାନ କର (ମନ୍ଦୋଦରୀ)
ଝିଯିବା ଶାଶୁଘର !! (ସୀତା)

(୫) ୬୦ ଶ୍ଳୋକ ପଢ଼େ ଶୁଆ,
ବିଲେଇ ଦେଖିଲେ ଅଟାବୁଆ (ଭୟାତୁର)

(୬) ଅସ୍‌କ ଭଦରୀ (ଅଭଦ୍ର) ଫାଲକ ସନା
ଢ଼େକା ମାରିଦେଲେ ଯା ପାଟନା ।

(୭) "ଆଁଠେ ପାନି ଗୁଟେ ଚନା
ବେଟି ବେଟି (ଗୋଟାଇ) ଖାରେ କଣା ।"
(ପରିଶ୍ରମ ବେଶୀ ମାତ୍ର ଫଳ ଅତ୍ୟନ୍ତ ଅସନ୍ତୋଷପ୍ରଦ)

(୮) କୁଠୁଲ୍ ଆଦ୍‌ରି ଦେଲେ ଗଲା,
ଟଁଟି ଚିପିଲେ ମୁନୁଷ ମଲା ।

(୯) ଗିଜ୍ ଗଲୁରେ ଗିଜ୍‌ଗଲୁ (ତରଳଝାଡ଼ା ହେବା)
ପଏସା ଚାର୍‌ନା କାଁ କଲୁ ?

(୧୦) ସଖାଲ୍ ଧର୍ମୁ କୁକୁଡ଼ା ଝୋଲ, ଝୁଡଲ୍ ଖାଏଲେ ସବୁ ଗୋଲ (ଶେଷ କରିଦେବା)
ବୋଲ୍ ହରି ହରି ବୋଲ୍ ବାବା ହରି ହରି ବୋଲ୍ !

(୧୧) ଭାଙ୍ଗ୍ ଫସ୍କା ହେଲେ ଗଲା, ମୁନୁଷ୍ ଭୁସ୍କା ହେଲେ ଗଲା ।

(୧୨) ଫସକା ଭାଙ୍ଗେ ସୁଆଦ ନାଇଁ, ଖସୁଆ ହେଲେ ଗଲା
ନିଲଜ ମୁଖେ ସରମ ନାଇଁ, ଘିଁଟି ହଲାଇ ମଲା ।

(୧୩) ଟାପରା କଲେ ଖାଇବୁ ଗାଳି, ତରକି ଥାଆ ଏଭୁ (ଏବେଠାରୁ)
ମଲମଲିଆ ହନା ବାବୁ, କଲକଲ ହେବୁ !!

(୧୪) ଏ ନାଡୁ, ପାଏନ୍ ପାଡୁ, ବର୍ଷା ମାସେ କନିଆଁ ଛାଡୁ ।

(୧୫) ଜଡାତେଲର୍ କାଁଟି
ଜାଙ୍ଗଲ ଖାଇକେ (କର୍ମକୋଢ଼ି) ଚୁଲଇ ଅଡୁଆ
ଡେଙ୍ଗାକେ ପରେନ୍ ପାଟି !

(୧୬) ମାଗିଖିଆ ବାମ୍ହନ, ଟିପି ନାକେ ଚନ୍ଦନ ।

(୧୭) ଇ ଭାଷାଟା ବଡ କଅଁଲ ବଙ୍ଗଲା କୁଶେର ବୁଟା
ବନ୍ଧୁ ଟିପିଟକ୍ ରସଭିରିଛେ ଯେନ୍ତା ଖାଏଲେ ମିଠା ।

(୧୮) ଏକଜନେ ଡୁମୁନ୍ ଗୁମୁନ୍, ଦୁଇ ଜନେ ପାଠ ।
ତିନିଜନେ କଲ୍ କାଲ୍, ଚାର୍ଜନେ ହାଟ୍ ।

(୧୯) ଡାକ୍ ଦୁଲ୍ ଦୁଲ୍ କୁଲଟା ବିହା, ଭାତର୍ ଉପରେ ତୁନ୍‌ଦିଆ ।

(୨୦) ଫୁଟ୍‌ଲା ତୁଁଡେ ଦାଁତ୍‌ରୀ ଖଜା,
(ମୋଟା ମୋଟା ନିମିକିକୁ ଗୁଡ଼ ପାଗରେ ତିଆରି ଖଜା)
ଖାଏଲା ବେଲ୍‌କେ କେନ୍ତା ମଜା ।

(୨୧) ପୁରୁନୀ ପତର୍ (ପଦ୍ମପତ୍ର) ପାଁଲିଲା, (ପଲ୍ଲବିତ ହେବା)
ଗୁରୀନାନୀର ମନ୍ ଆକାଶେ ଜନ୍ (ଜହ୍ନ) ଉକିଆ (ଆଲୋକ) କଅଁଲିଲା

(୨୨) ରେଁତି ରେଁତି (ଘଷି ଘଷି) କରି ଠେଁଦ୍‌ଲି ମାତ୍ରଲେ
ସୁନା ହେବା କାଏଁ ପିତଲ୍ ଗୁନା ?

(୨୩) ଶେଁର୍‌ରାର୍ (ନିର୍ଲଜ୍ଜ) ପିଠି ଖଡା ଗଛେ, ଶେଁର୍‌ରା ବଲ୍‌ସି ଛାଏଁ ହେଉଛେ ।

(୨୪) ପାଏନ୍ ପଡୁଛେ ରଝୋ ରଝୋ
ଡାକୁଛେ ସର୍‌ଲା ପଥର୍ ମତେ । (ହରିଶଙ୍କରଠାରେ ଏହି ପଥର ରହିଛି)

(୨୫) ଗୁନ୍ ଯାହଁ, ଖୁନ୍ ତାହିଁ ।
(ଯେଉଁଠାରେ ଗୁଣ ଥାଏ ସେଠାରେ ଖୁଣିବା ପାଇଁ ମଧ୍ୟ କିଛି ରହିଥାଏ)

(୨୬) ଜୀବନ ଥିଲେ ଜୀବ୍‌କା ।

(୨୭) ଦୁଆଁ ଛିଡ଼ା, ଚାରି ଦଉଡ଼ି କଟା, ହେଟା ଦୁଆଛିଡ଼ାଟା !

## ବଖାନି/ଭେକାନି

(୧) ହାତୁ ଖାଇ ଘୁଡ଼ାଇ ପଛେ ନର୍‌ଦିବାର୍‌ଟା
(ହାତୁ ଖାଇ ଘୋଡ଼ା ଆଗରେ ଡେଇଁବା)

(୨) ହାତେ ନାଇନ୍ ପଏସା, ଦହି ମାରୁଛେ ଅଏଁସା ।

(୩) ଦେଖେନ ସୁନ୍ଦର ଫଲ୍‌ସା ଫୁଲ୍

(୪) ଭୁକର ଗାଏ ବେନା ଖାଏ ।
(ଭୋକିଲା ଗାଈ ବେଣାଚେରକୁ ମଧ୍ୟ ଖାଇଥାଏ)

(୫) ଭୁର୍ଭୁସ୍ କରି ଦେବାରଟା । (ସର୍ବସ୍ୱାନ୍ତ କରିଦେବା)

(୬) ଫୁଇ ବୁଡେଇ ଦେବାର୍‌ଟା । (ମୂଳଧନ ବୁଡିଯିବା)

(୭) ପାର୍ ଛିଡାବାର୍‌ଟା । (ଅକାରଣରେ ଦଣ୍ଡ ବିଧାନ କରିବା)

## ନାଁଦିଆ

(୧) ସେଁ କଲା ସେଣ୍ଡାଟା, ପଣିଗଲା ଗୁଟାଟା,
ବାହାରି ଆସ୍‌ଲୋ ଛୁଲାଟା, ଦେଖ୍‌ଲା ବେଲ୍‌କେ ପୁଲାଟା (ପେଙ୍ଗନଙ୍କୀ/
ଫୁଟ୍‌କେଲ)

(୨) ଅଁପରି ଭଁଟା ସମ୍ଲା ଲମ୍ଟା
ଟାର୍ ବରେ ଜାନ୍‌ବ ଯେ ରାକ୍ ଚିରିକରି ମାର୍ ସେ । -(ରଫା/କୋଡି)

(୩) ଆଏଲା ଭେଁଡିଆ ଥୁଇଲା, ଉଠ୍‌ଲା ଭେଁଡିଆ ମାଏଲା -(ଯୋଟା)

(୪) ବଛର୍‌କେ ଥରେ ଖାଏସି । -(ନଡାଘର)

(୫) କୁଟୁମ୍ ଯାକର୍ ଗୁଟେ ଗିଲ୍- (ଲେସୁନ୍)

(୬) କାଟି ଦେଲେ ବଢ଼ୁସି (ଘାଇ)

(୭) ଏଡିକି ଟିକେ ସିପେଇ ପିଲା, ପରବତର୍ ସାଙ୍ଗେ ଲଢ଼େଇ କଲା -(ଟାଙ୍ଗିଆ)

(୮) ଏଡ଼ିକି ଟିକେ ଝାଁଟି, ତହିଁ ପୁର୍‌ଗେ ଚାଁଟି- (ରାଶି)

(୯) ଉପର ଚିକନ୍ ଭିତର ବାଲ୍- (ତାଳ)

(୧୦) କାଣା ଦେଖୁଛୁ ମୋତେ, ଲାଁଡୁ କରମି ତତେ । (ଆମ୍)

(୧୧) ଇ'ପରବତେ କଲା ଦହନା, ଖୁଁଟି ଦେଲେ ଖିର ବୁହିସି
ପରର୍ ପୁଓକେ ଦିନେ ଦେଇଥିଲେ କଥା ଯୁଗେ ଯୁଗେ ରହେସି । -(ଦୁଧ୍‌ଭୁଁଡି)

(୧୨) (କ) ସଢ୍ ଅଛେ ସଢ୍ ନାଇଁ, ଆଏଁଖ୍ ଅଛେ ଡିମ୍ବା ନାଇଁ,
ଦେଖୁଅଛେ ଖାଏ ନାଇଁ - (ସାଁପ୍ ଯୋଗ୍)
(ଖ) ଲାଞ୍ଜ ଅଛେ ମଞ୍ଜ ନାହିଁ, ଆଖି ଅଛେ ଡିମା ନାହିଁ
ଧରିଲେ ଚାବେ ନାହିଁ -(ସାପର କାତି ଛାଡିବା ଅବସ୍ଥା)

(୧୩) ଶିଲ ଶିଲ୍ ଶିକ୍‌ଲି, ରାଜା ଘରେ ଚୋର ସମ୍ପିଛେ, ନାଇଁ
ପାରୁଛେ ମୁକ୍‌ଲି (ଗରୀ କଁଟା)

(୧୪) ଆମର ଘରେ ବୁକା ପଟେ ଅଛେ ଯେ ବାଁଧୁଛୁଁ ହେଲେ
ଦୁଆଁ ଚରି ଯାଇଛେ । (ମାଖନ, ଡିର)

(୧୫) କୁରୁଲି ଗଛକେ ମାଇଲି ବିଧା
ହାତ ନାଇନ ଶିକାର ଗଦା (ଜୋକ ବାଜିଆ)

(୧୬) ଗାଁ ବେରାଥି ବିରୁନି ଛତି
କେନ୍ ଜନ୍ତୁର ଶୁଡ଼େ ମୁଅଁତି (ଚିଙ୍ଗୁଡ଼ି)

(୧୭) ଏହୁକି ଟିକେ ଠେକି
ଲଙ୍କା ଗଲା ଫାଟି (ଟସର ପୋକ)

(୧୮) ଲାଲ ଲାଲ ଲାଲ ସାହେବ
ତୁଙ୍କି ଦେଖିଲେ ମାଡ଼ ଖାଏବ (ବିରୁଡି)

(୧୯) ପାନିଥାଛେ ଖରସି ଚୁତା (କଇଁଛ)

(୨୦) ଆ ତାଲା ତାଲା ପାନି ଖରସି ଚୁତି (କଇଁଛ)

(୨୧) ଏନ୍ତା ସୁନ୍ଦର୍ ଜୀବନ ଗୁଟେ, ପୋ'କେ ଦୟା ନାଇଁ
ଜନମ କରି ଦି ଯେସି ପଲେଇ, ଜୀ ଯେସନ ସେହି (କଇଁଛ)

(୨୨) ପରର ପୋକେ ପୋ କର୍‌ସି, ନିଜର ରୂପ ଧରାଇ
ନିଜର ଜାତିନେ ମିଶାଇ ଦେଇ, ବଂଶ ରଖସି ସେହି -(କୁମ୍ଭାରିଆ ପୋକ)

(୨୩) ଗଛ ମହାଗୁରୁ ପତର ସରୁ
ତା ଫଳଟା ଗଠିଆ ଗରୁ (ତେନ୍ତୁଳି)

(୨୪) ଗଛ ସଲଙ୍ଗା ପତର ସରୁ
ତା'ର ପିଲାର ନାଁ ଗଠିଆ ଗରୁ (ତେନ୍ତୁଳି)

(୨୫) ଦୂରକୁ ଦୂର ମାକର ମୁରା
ଚମ୍‌ବହଲ ମଝି କଅଁଲ (ନଡିଆ)

(୨୬) ମା ଚାବରୀ, ଝି' ସୁନ୍ଦରୀ (ବରକାଳି)

(୨୭) ନାଥେ, ଭୂଇଁରୁ ବାହାରିଲେ ହାତେ ।
ପୁଅର ବାଲ ପାଚିଗଲାନ
ବାପର ବୟସ କେତେ । (ମକା)

(୨୮) ମା ଯାଉଛେ ଲହଙ୍ଗ ପହଙ୍ଗ
ଝି' ବସିଛେ ଗଦଦ୍ ଘମ୍ (କଖାରୁ)

(୨୯) ଗଛ ସଲଙ୍ଗା ପତର ଲମ୍ବ
ତାର ପିଲାର ନା କାଲିଆଡ଼ମ୍ (ତାଳ)

(୩୦) ଗଛର ନା ପିଲକି ଟେରେ
ଆଁଖ ବାଟେ ଛୁଆ ଜନମ କରେ । (ଆଖୁ)

(୩୧) ବାଲୁତ କାଳରେ ମୁଣ୍ଡରେ ଟୋପି
କୃଷ୍ଣ ଅବତାରେ ମୋହିଲେ ଗୋପୀ
ରାମ ଅବତାରେ ରାବଣ ମାରି
ଆଜ୍ ହୋଇଅଛି ସେହି ତର୍କାରି ।
(କଅଁଳ ବାଉଁଶରୁ ତିଆରି କରଡ଼ି ତରକାରି)

(୩୨) ପର୍ବତ ଶିଖରେ ଆମ୍ବ ଗଛଟିଏ, ବାଆ ସୁଲୁ ସୁଲ ବହୁଛି
କୁଆଡୁ ଆସିଲା ବୁଢ଼ା ବଇଷବ, ନିତି ଦରଶନ କରୁଚି । (ତୁଳସୀ ଗଛ)

(୩୩) ତଳେ ଷୋଳ ଉପରେ ଷୋଳ, ମଝି ବିଚରା ଥିସି
ଏନ୍ତା ସୁନ୍ଦର ନାଟ କରି ଦି ସବ୍କେ, ସବ ଚିହ୍ନାସି । (ଜିଭ)

(୩୪) ବଗ ବସିଚି ଧାଡ଼ିକି ଧାଡ଼ି
ଅର୍ଜୁନ ବିନ୍ଧୁଛି ଲାଖ (ଦାନ୍ତ ଓ ଜିଭ)

(୩୫) ଇଡ଼ଙ୍ଗରୁ ଆସିଲି, ସେଡ଼ଙ୍ଗରୁ ଆସିଲି
ମଝିର ଡଙ୍ଗରେ ଶିଷା
ତୋତେ ଛାଡ଼ି ତୋର ଗୁରୁକୁ ପଚାର
ଚିତାକୁ ଛେକିବେ ମୂଷା (ଆଖୁତଳ ପତା)

(୩୬) ଝମ ଝମ ଝମ
ଯେତିକି କୁଟଲେ ନାଇଁ ଛିଡ଼େ ଚମ୍ (ଛାୟା)

(୩୭) ଉପରୁ ଆସିଲା ଭିଟି
ସବ୍କେ ନେଲା ପିଟି (ନିଦ୍ରା)

(୩୮) ଏତିକି ଟକେ ଠେକି
ନାଇ ପାରୁଛେ ଟେକି (କୂଅ)

(୩୯) ଏଡ଼ିକି ଟିକେ ପିଲା
ଡଙ୍ଗରେ ଯାଇ ଲଢ଼େଇ କଲା (କୁରାଢ଼ୀ)

(୪୦) ଚାଲ ବେଳେ ଚାଲେ ନାହିଁ, ଉଠେଇ ନେଲେ ଯାଏସି
ତା'ର ଗିଳ୍‌କେ ଚିମ୍‌ଟି ଦେଲେ, ଲକ୍ଷେ ଜୀବନ ଖାଏସି । (ବନ୍ଧୁକ)

(୪୧) ସବୁ ପର୍ବତ ବୁଲି ଆସ୍‌ଲି, ମଝି ପର୍ବତେ ପାସା,
ବାପାକେ ଛେକିଛେ, ଏଡ୍‌କି ଟିକେ ମୂଷା । (ଶଗଡ ଚକ ଖିଲ)

(୪୨) ନଦୀର ପାଏନ ଡବକୁଛେ,
ଘୁରିଆ ବଛା ଡମକୁଛେ । (ପିଠାଛଣା ଚଟୁ)

(୪୩) ଛୋଟକେ ଟୁକେଲ,
ସକାଲ ପାଏଲେ ଉଣ୍ଡଲୁଥିସି । (ସରକା ଘର ଲିପା କନା)

(୪୪) ପୀରତି ଶେଷେ,
ବୋହୂ ମନ୍‌କଲା ଶଶୁର ପାଶେ । (ଦ୍ରୌପଦୀ, ଭୀମ, ବାୟୁ)

(୪୫) ଲାଲ ଗଲ ଗଲ ପାର୍ଏଁଲା ମାଲି,
ପୁଅର କନିଆଁ ବାପର ଶାଲୀ । (ରାଧା-କୃଷ୍ଣ-ନନ୍ଦରାଜା)

(୪୬) ଶହେ ସୁପାରୀ ବଙ୍ଗଲା ପାନ୍,
ମାହେଝି ମନୁଷର ବାଇଶଟା କାନ । (ରାବଣ ଓ ମନ୍ଦୋଦରୀ)

(୪୭) ଶ୍ୟାମସୁନ୍ଦର,
ମୁହଁ ଆଠ୍‌ଟା, ଜିଭ ପନ୍ଦର । (କୃଷ୍ଣ ଓ ସପ୍ତଫେଣୀ)

(୪୮) ହାଟ ଗଲେ ବାଟ ନେଇ
ଫୁଟି ଅଛେ କିଆ ଫୁଲ, ତୁଲିବାକୁ ଲୋକ ନାହିଁ (ଚନ୍ଦ୍ର)

(୪୯) ସକାଳୁ ଉଠ, ବୁଢ଼ୀକେ ଘିଚ (ସକାଳୁ କବାଟ ଖୋଲିବା)

(୫୦) ଗଛର ନାଁ ହାରାବତୀ,
ଫୁଲ ଫୁଟିବେ ବାରଜାତି । (ହାଟ)

(୫୧) ଦେଖ ସଖୀ ବନମାଳିକୀ,
ଦଶଚରଣ, ଷଡ଼ ନୟନ, ବେନିଭୁଜ ମୁଖ ଚାରିକି ।
(ଗଉଡ଼ର ପାତ୍ରରେ ଦୁଗ୍‌ଧ ଦୋହନ)

(୫୨) ଗାଈ ତିନିଶହ ବଛରା ଷାଠେ, ତହିଁ ମିଶଲା ଷଣ୍ଢ ପଟକେ -
କେତେ ଯୋଡା ? (୧୮୧ ଯୋଡା, ଗାଈ ଜଗୁଆଳକୁ ମିଶାଇ)

## ପଶ୍ଚିମ ଓଡ଼ିଶା ଗୀତି

(୧) ''ଚାଇଁ ଚାଇଁ ମୁଠି, ରଜାଘର ଝୁଁଟୀ,
ଆ ଶିରିଆ ପାଏନ୍ କେ ଯିମା, ତୋର ମୋର କେନ୍ଦୁ ଖାଏମା,
ତୋର କେନ୍ଦୁଟା ପାଚ୍‌ଲା, ମୋର କେନ୍ଦୁଟା କଁଚା,
ଟିକେ ଟିକେ ଭାଗ୍ ବଁଟା କରି ଖାଏମା କି ନାଇଁ ? ଉତ୍ତର-ଖାଏମା ।
ପ୍ରଶ୍ନ-ହାତୀ କି ଘୁଡ଼ା ?
ଉତ୍ତର-ହାତୀ ମାର ତାର ଛାତି/ଘୁଡ଼ା ମାର ତାର ଥୁଡ଼ା ।''

(୨) 'ଇଚ୍‌ନି ବିଚ୍‌ନି ଧୋବ୍ ଚିନି ଚିନି, ଖଇର କାଠ୍, ବାଠ ନାଟ୍,
ବୁଢ଼ା ସିଂଗାର ଝୋଲ,
ହାଡ୍ ଫୁଟେ ଫୁଟେ ମାଉଁସ ଫୁଟେ, ଘୁଡ଼ା ଖାଇ ବୁଢ଼ୀ ଚମ୍‌କି ଉଠେ,
ହାଡ୍ ଖଁକାରି ଫୁସ୍‌କି ପାଡ୍, ଆଏଁଖ୍ ଫୁଟୁତୋର ।

(୩) 'ଖୁମ୍ ଖୁମାଲୋ, ବାଏଙ୍ଗନ୍ ମାଲୋ, ମଝାର ଖୁମ୍‌କେ ଛାଡ଼ିଦେ, ଛାଡ଼ିଦେ ।'

(୪) 'ହିର୍‌ରେ ହିଟା, ତୋର୍ ଦାଦି କିନା ଝୁମ୍‌କା ପିଟା ।'

(୫) 'ଘୋ ଘୋ ରାନୀ, ପାଦେ ପାଦେ ପାନି,
ଘୋ ଘୋ ରାନୀ, ଆଁଠେ ଆଁଠେ ପାନି,
ଘୋ ଘୋ ରାନୀ, ଜଂଘେ ଜଂଘେ ପାନି,
ଘୋ ଘୋ ରାନୀ, ଅଁଟେ ଅଁଟେ ପାନି,
ଘୋ ଘୋ ରାନୀ, ଛାତେ ଛାତେ ପାନି,
ଘୋ ଘୋ ରାନୀ, ବେଁକେ ବେଁକେ ପାନି,
ଘୋ ଘୋ ରାନୀ, ତୁଁଡ଼େ ତୁଁଡ଼େ ପାନି,
ଘୋ ଘୋ ରାନୀ, ମୁଁଡ଼େ ମୁଁଡ଼େ ପାନି ।'

(୬) 'ଛିଲୋ ଲାଇ ଆ ଖେଲ୍‌ମା ବାଈ,
ବାଈ ଗଲେ ରୁଷି, ଆଗୋ ମାଁ ପିଉସୀ ।
କଲା କଲା ବାଇଗନ ରୁଇ ଦେଲି ଧାରେ,
କଲା ମୁଖା ସାନ୍ ଦିଅର୍ ମାରିଦେଲା ବାରେ ।
ଘୁଁଚି ଯା ରେ ଘୁଁଚି ଯା ମଁଚା ତଲକୁ,
ମଁଚା ତଲର· ସିଂ ପାନିଆ ଭୁରସି ମୁଡ଼କୁ ।'

(୭) ''ଡାଲ୍ ଖାଇଲେ ଡାଲଖାଇରେ,
ପିପଲ ଗଛରେ ବସିଛେ କୁଆ,
ମାଁ ମାଁ ବୋଲି ଡାକୁଛେ ଛୁଆ,
ମାଁ ଯାଇଥିଲା ମହୁଲ ବେଟି,
ଝାର ପତରାରେ ଭାଙ୍ଗିଲା କାଠି,
ସଖାଲ ବେଲ, ଉଡୁଛେ ଚିଲ,
ଢଲି ଢଲି ଆସେ ନାଗରୀ, ମୋର ନିଆଲୀ ଫୁଲ,
ନିଆଲୀ ଫୁଲ କାଏଁ ଡାଲଖାଇରେ ।''

(୮) ''ଝୁପୁର୍ ଝୁପୁର୍ ପାଏନ୍ ବରଷେ
ପଲ୍‌ହା ରୁଇ ଚାଲ୍‌ରେ ବହେନ୍
ପଲ୍‌ହା ରୁଇ ଚାଲ୍ (ଘୋଷା)
କେତେନି କେତେ ଟୁକେଲ୍‌ମାନେ କୁକ୍‌ରାଡ଼କା ବେଲୁଁ,
ପଧାନ୍ ବୁଢ଼ାର ମାଈ ତୁଲିକେ ଗଲେନ କାଦୋ ଖେଲି,
ଖେଲି ହେଉଥିବ ଲାଡ଼-
ଦେଖ୍ ତ ବହେନ୍ କେନ୍ତା ଅଏନ୍ କଦମ୍ ଫୁଲ୍ ଦିଶେ,
ମାଲ୍‌ତୀ ତୁନୀର ଖୁସା ତଳେ ଜନ୍ ବାଗିର୍ ମିଶେ ।
ହଲିଆ ପିଲାର ଥିପି ପଡ଼େ ଲାଲ ।''

(୯) ''ଗାଡ଼୍‌ଶୁଆ ଗାଢ଼ପଶା ଆରେ ଯୋଗ୍ମୀଖିଆ,
ମୋର ଭଲିଆ ମାଇକିନା ପାଇ ସବୁ କଲୁ ମାହାଲିଆ ।
ଦେମି ବାହ୍ନି ଖୁଁଟା, ଗୁଟାଟା କରିଦେଲୁ ଫଟା,
ଦେମି ବାହ୍ନି ଖୁଁଟା ।''

(୧୦) ''ମା ବଳିକରି କରୁଛେଁ ଅର୍ଦ୍ଧଳି ଇ'ମାଟିରୁ ଛୁଆ ମୁଇଁ
ସଂସାରଯାକର ମାଁ ଗୁହାରି ଶୁନୁଛୁ
ମୋର ବେଲେ ଯିବୁ କାହିଁ ଗୋ ।
ମାତା ସମଲେଶ୍ୱରୀ,
ତୋର ହାତେ ଦେବୁ ଧୂଳି ଝାରି ଗୋ
ମାତା ସମଲେଶ୍ୱରୀ ।''

★ ★ ★

''ଝି ଝି ବୋଲି କେତେ କାନ୍ଦୁଥିବ ଝିଅକେ କର ବାହାର ଗୋ
ବେଲ ହେଲା ଉଛୁର, ଝିଅର ଲୁହ ବୁହେ ଝର ଝର ଗୋ
ବେଲ ହେଲା ଉଛୁର ।
ଝି ଝି ବୋଲି କାନ୍ଦ୍‌ଲେ କାଁ ହେବା ଝିଅ ତ ହେଲାନ ପର
ଘଷି ମାଜି କରିଗୋ ସାଏତି ରଖ୍‌ଲ, ଇଛନି ବାହାର କରଗୋ,
ବେଲ ହେଲା ଉଛୁର, ଝିଅର ଶାଶୁଘର ବଡ଼ା ଧୂର ଗୋ
ବେଲ ହେଲା ଉଛୁର ।
ଝିଅର ଲୁହୁ ବୁହେ ଝର ଝର ଗୋ ବେଲ ହେଲା ଉଛୁର !
ଝିଅର ଲାଗି କେତେ ବର ନୁରୁଥିଲ,ଇହାଦେ ବାହାର କର ଗୋ,
ବେଲ ହେଲା ଉଛୁର ।''

(୧୧) ଇଟାମାଟି ଗୁଲୁଗୁଲା ବୋରିଆରେ ଇଟାମାଟି ଗୁଲୁଗୁଲା,
ଘରେ ନାଇଁ ତୋର ମାଏଝି ପିଲା, ବାରିଆଡ଼େ ମନବୁଲା ।।

★ ★ ★

ଅରଖ ପତର ଖଲି ବୋରିଆରେ ଅରଖ ପତର ଖଲି
ମୁଇଁ ବସିଥିଲି ରେହେଟି ଦୁଲି, କିଏ ଦେଲା ମତେ ଗାଲି ।।

★ ★ ★

ଅଁଟାରେ ଖୁସିଲି ଚାବି ବୋରିଆରେ ଅଁଟାରେ ଖୁସିଲି ଚାବି,
ସକାଲ ପାଇଲେ ଗାଁକେ ଯିବି, ତତେ ବାଟ ଦେଖୁଥିବି ।।

(୧୨) ''ଶାଶ୍ ଘରେ ଜୁଏଁ ରହେଲେ,
ଗୁଡ଼େ ଖସୁ ମୁଡ଼େ ତଷୁ ଲାଜ୍ ଲାଗ୍‌ସି କହେଲେ ।

ଜଙ୍ଗଲ୍ ତଲର୍ କରଡ଼ି,
କେତେ ଚାଖି ହେସୁ ସାଙ୍ଗ ଦେଖ୍ ପଡ଼୍‌ବୁ ସରଡ଼ି ।
ବିନୋ ତଲର୍ ଗୁଏ,
ଗଞ୍ଜେଇଖିଆ ଲଲ୍‌ହା ଝୁଲା କାହାଲି ପିଆର ଯୁଏ ।
କୁଶେର୍ ବାରିର୍ ବତା,
ନୂଆଁ ପଏସା କରାଟ୍ ଖୁସା ଲଭ୍‌ନିଆ କଥା ।
ତତେ ଖେଦି ମାରୁଛେ ଟିଟାହି,
ତତେ ଖେଦି ମାରୁଛେ ଟିଟାହି ରେ ସାହି ଗଞ୍ଜେଇ ଖାଇ ।

(୧୩) ଘରକୁ ଘର ଲାଗିଛି, ମଝିର ଢବାର ମାଆ କାନ୍ଦୁଛି,
ଝିଅର ଭାର ଲମ୍ଫୁଛି, ସଜନୀରେ !
ପଟାରେ ଦୁଇଗୋଟି ଗାର, ଦେଲୁଁ ବଲି ଠୁକୁଣା କଇ,
ଦେଇଛ ଦୁଇଟି ଭାର, ସଜନୀରେ !
ଉଦା ଲୁଗା ସରସର, ଆଘୋ ଯାଉ ମୋର ଚଉଠୀଭାର ଯେ,
ପଛେ ଯିମି ଶାଶୁଘର, ସଜନୀରେ !
ପର୍ବତ ତଳିଆ ଘାସ, ରାଜା ବିଜେକଲେ ରାଣୀ ଉଆସ,
ମୁଁ ଯିବି ବୈଶାଖ ମାସ, ସଜନୀରେ !

★ ★ ★

ଯା', ଯା'ରେ ଭାଇତୁ କୁଞ୍ଜବନକୁ, ଆଣିବୁ ଜୀବର୍ ଧନକୁ,
ଜୀବର୍ ଧନ ଭାଇ ଭାଲା, କୁଡ଼ରେ ବସାଇ ମଣ୍ଡଳି କଲା,
ମହାନଦୀ ବଢ଼ାଇଲା, ସଜନୀ ଗୋ !
ଡଙ୍ଗା ପଟୁଆର ମଙ୍ଗ, ଦେଖହେ ବିଦେଶୀ ଚାଲିବା ଢଙ୍ଗ,
ସ୍ୱର୍ଣ୍ଣମେରୁ ଏଡ଼େ ଡେଙ୍ଗ, ସଜନୀଗୋ !
ପଟାତଳେ ଗଲା ଚିତି, ଝିଲିମିଲି ହୋଇ ଦିଶି ପଡୁଛି,
ମୋ ଭାଇ ଅଣ୍ଡାର ଧୃତି, ସଜନୀଗୋ !
ଗିନାରେ ରଖିଲି ମହୁ, କାହିଁକି ଗୋ ଦାଦା ଚନ୍ଦରା ହଉ,
ବୈଶାଖେ ଆଣିମା ବହୁ, ସଜନୀଗୋ !
କରାଟେ ରଖିଲି କାଠି, ମୋ ଦାଦା ଯାଇଛି ଦଲମ କାଟି,
ଆସିଲେ ଖୁଲିମା ତାଟି, ସଜନୀଗୋ !

ଗିନାରେ ରଖିଲି ଦହି, ନକାନ୍ଦ ନକାନ୍ଦ ଛେଦ୍‌ଲି ବୁଇ,
ଛାଡ଼ିଯିବେ ପାଞ୍ଚଭାଇ, ସଜନୀଗୋ !
ଖଟତଳେ ପଟଲିତା, ସୁବର୍ଣ୍ଣ ଥାଳିରେ ଗଜ ମୁକୁତା,
ଅନ୍ନ ପଖାଳିଲେ ସୀତା, ସଜନୀଗୋ !
ଦୁଆରେ ରୁହିଲି ଜହ୍ନି, ଇଆଡ଼େ ଗଲେ ମୋ ମାଝିଆଁ ନାନୀ,
ଦିଶିଗଲା ପାଟ କାନି, ସଜନୀଗୋ !
ଦୁଆରେ ରୁହିଲି ମକା, ଇଆଡ଼େ ଗଲେ ମୋ ମଝିଆଁ କାକା,
ଦିଶିଗଲା ପାଟ ଛତା, ସଜନୀଗୋ !
ଦୁଆରେ ବିଛିଲି ଭାତ, କାକାକୁ ମାଗିଲି ପଟା ଛପଟ,
ଖୁଡ଼ୀ ଗାଲେ ଦେଲେ ହାତ, ସଜନୀଗୋ !
ଦୁଆରେ ବିଛିଲି ମୁଢ଼ୀ, କାକାକୁ ମାଗିଲି ଚାଉଁରୀ ମୁଡ଼,
ଖୁଡ଼ୀ ଦେଲେ କାନ ମୁଡ଼ି, ସଜନୀଗୋ !
ସଜନା ଶାଗ କେରାକ, ବାହାରେ ବସିଛି କଳା ମାଣିକ ।
ଉଡୁଛି ବାଳ କେରାକ, ସଜନୀଗୋ !
କୁଆଁରେ ପକାଲି ଗିଲ, କୁଆଁ ଚାରହିଁ ଡରା ମନ୍ଦାରଫୁଲ,
ମାରିନେଲା ଶଂଖ ଚିଲ, ସଜନୀଗୋ !
ରଙ୍ଗ ମାଟି ଢାଉ ଢାଉ, ରଙ୍ଗ ମାଟି ତଳେ କରାଟ ଥାଉ,
ଦିଶୁଥାଉ ଦାଉ ଦାଉ, ସଜନୀଗୋ !
ମଲ୍ଲୀଫୁଲ ନଳୀ କିଳୀ, କି ବଲି ଡାକିବି ହା କୃଷ୍ଣ ବଲି,
କଅଣେ ଆସୁଥିବେ ଢଳି ଢଳି, ସଜନୀଗୋ !
କୁଇଲି କୁ କୁ କଲା, ଖରାଦିନେ ବହୁ ପାଣିକି ଗଲା,
ନାଗସାପ ଖେଳୁଥିଲା, ସଜନୀଗୋ !
କୁଇଲି ଗୁଗାଏ ରଂଗେ, କହରେ କୁଇଲି ଶୁଭବାରତା,
ମୋଧନ ଆସିବ କେଭେ, ସଜନୀଗୋ !
ବୁରୋଗଛ ଝାଁପୁରାଇ, ସତ୍ୟଭାମା ଗଲେ ଅର୍ଘ୍ୟ ବନ୍ଧାଇଯେ,
ଯଶୋଦା ପୁଅ କହ୍ନାଇ, ସଜନୀଗୋ !
ବାଟର୍ ବୁରୋଗଛ ମଲା, ଚଁପା ନାନୀ ଘରେ ଚୁର ପଶିଲା;
ସମଲାଇ ଡାକ ଦେଲା, ସଜନୀଗୋ !

★ ★ ★

‘‘ଆମ୍ବ ବଉଳ କେରା କେରା, ଶଶୁର ଗାଆଁର ବେହେରା ।
ଶାଶୁଯେ ଗୁଟି ନାଇକ୍ୟାଣୀ, ଦେଖିଲେ ନମିଳେ ତୋରାଣି ।’’

★ ★ ★

‘‘ପର୍ବତ ତଳିଆ ଘାସ,
ରାଜା ବିଜେ କଲେ ରାଣୀ ଉଆସ, ଶକଟା ଖେଳିଆ ଆସ ।
ଶକଟା ଖେଳିଲେ କି କାର୍ଯ୍ୟ ହେବ, ଭାଙ୍ଗିରୁଙ୍ଗି ଗଲେ ଯିବ,
ବନାଇ ଦେବି ମୁଁ ଶୁଣିଆ ଲୁଳ, ଯୁଗେ ଯୁଗେ କଥା ଥିବ ।’’

★ ★ ★

‘‘ଫକରେ ଭାଜିଲି ବିର୍‌ହି, ମୋ ଦାଦା ଯାଇଛି ଗହମ ଚୁରି
କକାଇ ଏତେକ କଲେ, ଦାଢ଼ି ଠୁକା ଘରେ ଦେଲେ
ଦାଢ଼ି ଠୁକୁ ଠୁକୁ ନସରେ ଦିନ, ରେହେଁଟା ଜୁଡ଼ିଏ ଆଣ
ରେହେଁଟାରେ ନାଇଁ ଶାଳ ଦଉଡ଼ି, ରଥଯାଏ ଘଡ଼ି ଘଡ଼ି ।’’

★ ★ ★

ଏକ ତାରା ମାନୁଷ ମାରା,
ଦୁଇ ତାରା ନାରା ଖାରା ।
ତିନି ତାରା ନାହିଁ ଦୋଷ,
ଚାରି ତାରା ଘରେ ପଶ ।

★ ★ ★

ପୌଷ ଉତ୍ସବ ବା ପୁଷ୍‌ ପୁନି (ଛେର ଛେରା ପର୍ବ) ଗୀତ
ଛେର୍ ଛେରା ଛେରା
ଇ ଘରବୁଢ଼ୀ କାହିଁଗଲା
କୁଡା ପିଠା ଖାଇ ଛେରେଇ ଦେଲା
ଛେର୍ ଛେର୍ ଛେରା
ଛେର୍ ବୁଢ଼ୀ ଛେର ଛେରା
ଛେରି ଗଲି ବଡ୍ ପରା
ବଡ଼ ପରାଥ ଅଏଲିନ୍
କୁଁଡା ପିଠା ଖାଏଲିନ୍
ଆଏର୍ ପୁନି କାଏନ୍ ପୁନି
ଛିଡା ପିଟା ତୁନା ତୁନୀ
ଦିଅ ଗୋ, ମାଆ ଦିଅ

## ଧନୁଯାତ୍ରାର ଗୀତ

ଡାଲ ଖାଇରେ,
ଚାଲ ଦେଖିଯିମା ଧନୁ ଯାତରା
ବରଗଡ଼ର୍ ବଜାରେଁ ଯୁଆ ପହରା
ଘିନିମା ଖଜାରେ ମାରିବା ମଜା
ଜରିମାନା କରବା ସେ କଂସରାଜା....
କେତେ ଗହ ଗହ ଡାଲ୍ ଖାଇ ପୋଓପରଜା.... ସଜ ହୋଇଯା
ମାରିମା ମାଜା କାଏଁ ଡାଲ୍ ଖାଇରେ ।

## କରମା ଗୀତ

ଶୁନ ଶୁନ ସାଧୁଜନ କରମା ସାନୀର ବିଧାନ,
ଯାହା ବିହି କରିଛେ ବିଧାନ, ଯାହା ବିହି କରିଛେ ଭିଆନ୍
ଏ-ଏ ଏକ ଚୁଟେ ଡାଲି ହାନି ଉପରୁ ତଲ୍‌କେ ଆନି ।
ଆସ ଆସ ଦେବୀ ଠାକୁରାନୀ ମାଁ
ବାକ୍ୟ ଦେବୀ ଶଙ୍କର କାମିନୀ
ଏ-ଏ ଦୁଇ ଥିଲୁ ଗଙ୍ଗା କୂଲରେ ତୋତେ ଗୋ ବରି ଆନିଲେ
ନୂଜା କରି ଜାଗର ଜାଲିଲେ ଗୋ ମାଁ କରମ୍‌ସାନୀ
ପୂଜା କରି ଜାଗର୍ ଜାଲିଲେ ।

★ ★ ★

ଜୁହାର ଗୋ କରମସାନୀ ଅପୁତ୍ରିକେ ପୁତ୍ର ଦାନୀ
ଦୟା କରିଥିବୁ ମାଁ ଗୋ ମତେ,
ଶଏ ପୁତ୍ର ଧନ୍ ଦେବୁ ମାଁ ଗୁହଲକେ ଧେନୁ ଦେବୁ
ବାନା ତୋର ଉଡ଼ିବା ଜଗତେ ଗୋ ମା
କରମସାନୀ, ବିପତ୍ତି ପାଲରେ ଡାକେଁ ତତେ ।

★ ★ ★

ଗାଇମି କରମା ଗୀତ ମୂଳ ନାହିଁ ଆସେ
ଜୁହାର୍ ଜୁହାର୍ କରମାସାନୀ ତୋତେ ହୋ
ପରସନ୍ ହୁଅ ମୋତେ ।

★ ★ ★

ନାଲି ସୂତା କେରି କେରି ବଜାରେ ବାଂଶରୀ
ବନ୍ଧୁ ଗଲେ ପରବାସ ନ ଆସିଲେ ଫେରି ।

ଆଜି ଗୁରୁବାର ଆଏ ରେ କାଲି ଶୁକ୍ର୍‌ବାର
ସମ୍ଧି ଘର ଦେଇ ଗଲେ ଖଜା ଖିଆ ଭାର ।
ଭୋକ୍ କଲେ ଘିନି ଦେମି ଖଜା ଦୁଇ ପୈସାର ।
ଶୋପ୍ କଲେ ଘିନି ଦେମି ନବାରେ ପାନି
ଆଉ ଡରେ ଦୂରେ ଅଛେ ଦିଅର
ନକର ଭାଲୁନି ।
ନକର ଭାଲୁନି କାନ୍ତ ଧୀରେ ଧୀରେ ତ ।

★ ★ ★

ତୁଲି ଗଲି ଯୂଇ ଫୁଲ୍, ଗୁରୀ ହସୁଛେ ମୁଲ ମୁଲ ।
ଅଏନ୍ କରି ମୁଡେ ଦେଇଥା ଖୁସିରେ, ନନିର୍ ମା ।

★ ★ ★

ଅଏନ୍ କରି ମୁଡେ ଦେଇଥା ଖୁସି ।
ସେଇତ ଗୁରୀ, ସେଇତ ଗୁରୀ,
ଦିଶେ ଧାଜ୍ ଗୁରୀରେ
ଚିକନ୍ ଚାକନ୍ ବଡେ ଲାଜ୍‌କୁରୀ
କରମାର ଡାଲେ ରେ-
ଚଟିଆ ନେଲା ଫାଲେରେ ।

**ଲୀଳାବତୀ କାହାଣୀ**

ତୋତେ କି ବୋଲଇଁ ଗଉରୀ, ବୋଲେ ହୁଁଟି ।
ଆଣି ଦେବି ସୁନା-ଚଉଁରୀ, ବୋଲେ ହୁଁଟି ।
ଲୀଳାବତୀ ତେତେ ଲାଗିଲା, ବୋଲେ ହୁଁଟି ।

**ନୂଆଖାଇ ଗୀତ :**

ଆଝିର ନୂଆଖାଇ
ତୁମର ତାଙ୍କର ଆମର ଆଏ
ହାଟ ପିଠରତା ଝାଏଁ ରେ ଝାଏଁ
ଶୁଭେ ସାଏତେ ଅଉନ୍ତ ସଭେ
ଶତୁର ମିତର ସବକେ ସଭେଁ
ରସର କେଲିରଉ ବରଜ ବାଟିର ଭାଇ
ଆଝିର ନୂଆଖାଇ ।



# ଦକ୍ଷିଣ ଓଡିଶାର ପ୍ରବାଦ/ବଚନ ଓ ଲୋକଗୀତ

(୧) ମୋରି ବୋଲରେ ଥା,
ମୋରି ବୋଲରୁ ବାହାର ହେଲେ, ହାଡ଼ି ପେଜ ଖାଇ ଯା ।

(୨) ଆଶାକୁ ପାରସା କନ୍ଧା,
ଷାଠିଏ ଟଙ୍କାକୁ ପନିକି ବନ୍ଧା ।

(୩) ବାଙ୍ଗିଣ ପରିବା,
ଦି ସଉତୁଣୀ କଥା.ହେଉଛନ୍ତି, ଘଇତାକୁ ମାରିବା ।

(୪) ଚାଉଳ ପଛକେ ଅଧୁଆ ହେଉ, ପେଜ ହେଉ ବହଳିଆ ।
ଘଇତା ପଛକେ ସନ୍ତିଆ ହେଉ, ଲୁଗା ହେଉ ତଉଁରିଆ ।

(୫) ଘଇତା ମାରଇ ରାଗେ,
କାନମଲ୍ଲିକ୍କୁଡ଼ି ପକାଇ ନ୍ଦେଉଛି, ଦିଅର ଶଶୁର ଆଗେ ।

(୬) ଆଣି•ମାଣି ଠାଣି,
ବିଭା ଘଇତାର ନାଁ ନ ଜାଣି ।

(୭) କା'କୁ କୋ ଚିନ୍ତା,
ମାଧିଆ ମା'କୁ ଘଇତା ଚିନ୍ତା ।

(୮) ମନସଦ ଖାଇ ମରଇ ନାଇ,
ଘଇତା ମାଡ଼କୁ ଡରଇ ନାଇ ।

(୯) ସାଙ୍କୁଡୁ ପାଙ୍କୁଡୁ ପୁଞ୍ଜାଏ,
ଶୁଖୁ ଠୋ ଠୋ ପୁଞ୍ଜାଏ,
ସାଲୁରୁ ବାଲୁରୁ ପୁଞ୍ଜାଏ
(ବର୍ଷରେ, ଶୀତ ଋତୁ ଚାରିମାସ, ଗ୍ରୀଷ୍ମ ଋତୁ ଚାରିମାସ,ବର୍ଷା ଋତୁ ଚାରିମାସ)

(୧୦) ଘୁଅମୁତର ମାଉସୀ,
ଲୁଗା ପିନ୍ଧିବ ପିଇସୀ ।

(୧୧) ବାପା ମରିଗଲେ ପିଇସୀ ଥିବ,
ମା ମରିଗଲେ ମାଉସୀ ଥିବ ।

(୧୨) ଚାଲାକି ଜାଣିଲେ ମା' ଘର ଝିଅ,
ଘଇତାକୁ କଇବ ଓଳନାଳ ହୁଅ ।

(୧୩) ଯେବେ ପୁରିବ ଢୋଲ, ତେବେ ସୁସାର ବଚନ ବୋଲ,
ଯେବେ ନ ପୁରିବ ଡୋଲ, ତେବେ ତୋ ତୋ କରିବୋଲ ।

(୧୪) ପାରିବୁ ଲୋ ମା ପାରିବୁ,
ପର ଘଇତାକୁ ଶିକାରେ ରଖି, ଘର ଘଇତାକୁ ସାରିବୁ ।

(୧୫) ନଡ଼ିଆ ରସ,
ଦେଖିବ ସିନା କରିବ କିସ ।

(୧୬) ରସିକବର,
ପାନ ଖାଉଥିବ ଗର ଗର ।

(୧୭) ରାନ୍ଧଣା ବାଡ଼ଣା ବଡ଼ ଗଞ୍ଜଣା, ଧାନ କୁଟା ବଡ଼ ଦୁଃଖ,
ଆସୁଣୁ ଯାଉଣୁ ମୁରୁକି ହସା, ପାଣି ଅଣା ବଡ଼ ସୁଖ ।

(୧୮) ବୈଶାଖ ମାସର କେନ୍ଦୁ,
ଆଷାଢ଼ ମାସରେ ଘଇତା ମଲେ, ଶ୍ରାବଣ ମାସରେ କାନ୍ଦୁ ।

(୧୯) ଶାଶୁତୋ-ଡକୁଣି ତୋଡ଼କୁ ଥିଲା,
ବୋହୂ ତୋ-ଡକୁଣି ଦୋହଡା ଦେଲା ।

(୨୦) ଖାଉଣିକି ଖା'ବଲେ ଖାଇବନି,
ଗାଉଣିକିଂ ଗା' ବଲେ ଗାଇବନି ।

(୨୧) ଆ ଲୋ ଲଛି, ଅଢ଼େ ମୁଗକୁ ବୁଢ଼େ ମାଛି,
ମୋ ଦେହରେ ସବୁ ଗୁଣ ଯାକ ଅଛି ।

(୨୨) ଅତିଶି ଗୁଣରେ ବତିଶି ଲକ୍ଷଣ,
କି ଲୋଡ଼ା ତୋର ସୁନ୍ଦର ପଣ ।

(୨୩) ମନ ଥାଇ, ମନ ନାଇ ବଲୁ ଥାଇ ।

(୨୪) ବଇକି କଇଲେ ବତା ଚମକୁଛି ।

(୨୫) ଯାଚିଲା ମଣ୍ଡା ରୁଚେନି,
ନ ଯାଚିବା ମଣ୍ଡା ଗଳଗଳ ।

(୨୬) ପିଲା ନାଇ ପେଟରେ,
ପିଲାର ବାପା ଖଡ଼ି ପକାଉଛି, ନାରସେନା ପେଟାରେ ।

(୨୭) ଲାଜଲାଗୁନି ଲାଜେଇକି,
କୁଲା ଡବ ଡବ ବଜେଇକି ।

(୨୮) ନିସ୍ତୁକ ନାତି ଘଇତା,
ପେଲାଗୁଞ୍ଜାରେ ଦିନ ନେଉଥା ।

(୨୯) ରାଧେ କୃଷ୍ଣ, ଅଣ୍ଡିରା ପିଲାକୁ ଏ କି କଷ୍ଟ ।
ରାମ, ରାମ, ରାତି ପାଇଲେ ବେଶି କାମ ।

(୩୦) ଦାରୀକି ପାଣିଢ଼ାଳ ସାକ୍ଷୀ ।

(୩୧) ଘର କଥା, ହରି କଥା,
ଭାତ ଲୁଗା ଚାରି କଥା,
ହାତକୁ ହାତ ଜଗନ୍ନାଥ ।

(୩୨) ବାପା ଓଳି ଝିଅ ଚଲେ ଦୋଳି,
ମାଆ ଓଳି ଝିଅ ବେକେ କୋଳି ।
ବାପା ଓଳି ପୁଅ ଖାଏ ଖଡ଼ା,
ମାଆ ଓଳି ପୁଅ ଚଢ଼େ ଘୋଡ଼ା ।

(୩୩) ଆଣିଥିଲି ଭଙ୍ଗା ପେଣ୍ଡିଲୋ, ନାହି ହଳଦି ସେରେ,
ବାଜୁଥିଲା ଜୁଡ଼ା ଶଙ୍ଖଲୋ, ପେଲି ପଶିଲି ଘରେ ।

(୩୪) ନିମୂଳି ଚେଡି, ହଳଦି ନ ଥାଉଣୁ କାଡୁଛି ପେଡ଼ି ।

(୩୫) ଅଣଯୁଆଣି, ବଣ ଯୁଆଣି,
ଆଗରେ ପେଟ, ପଛେ ପୁଆଣି ।

(୩୬) ଦୁଃଖର ସୁଖର ମଣି,
ଦୁଖୁରୁ ସୁଖୁରୁ ଆସିଲା ବେଳକୁ, ଧ୍ୟାନ ଦେଉଥିବ ପଣି ।

(୩୭) କେଉଁ ରାନ୍ଧଣା କେଉଁ ବାଢ଼ଣା
ଚୁଲି ମୁଣ୍ଡିଆଙ୍କ ତସୁ ।
କୋ ଘଇତାକୁ ତୁ କି ମାଇପ
ରାତିଯାକ ଗୋଡ଼ ଘସୁ ।

(୩୮) ମାଁ ଲୋ ବଢ଼ିଆ,
ଇଛାପୁରୁ ନଡ଼ିଆ, ଇଛା ଥିଲେ ପଳିଆ ।

(୩୯) ଦେଇ ନାନୀ ଛି ଛି,
ପିଠା ଖଣ୍ଡକ ଦେଇଥିଲୁ, ଅଧା କାଛିରେ ଅଛି ।

(୪୦) ଚିତା କୁଟାଇଲି ଦେହରେ
ଯାହା ଲାଗି ଚିତା କୁଟାଇଲି ମୁହିଁ, ସେତ ନାହିଁ ଗାଁରେ ।

(୪୧) କଦଳୀ କାଟିଲି, ତିନି କେରା କଲି
ମଝି ଗଡ଼ କଲି ରାଇତା ।
ସମସ୍ତଙ୍କୁ ଦେଲି, ଟିକିଏ ଟିକିଏ
ରୁଷି ବସିଛି ମୋ ଘଇତା ।

(୪୨) ଗୁଣମଣି ଗୁଣ ସାଗର,
ଗୁଣ ରଖିଦେଲ ଅଖା ଭିତର ।
ଗୁଣ ଗାଉଥା, ଅଖା ଧୋଉଥା ।

(୪୩) ଘାଟ ଢଗିଲେ ପାଣି ପିଇବ ।

(୪୪) ଖାଇବାକୁ ଦେଲି କୁକୁରକୁ,
କୁକୁର ମୁତିଲା ଉପରକୁ ।

(୪୫) ଭଡ଼ଭଡ଼ିଆ ହୁଅଇ ଲାଜ,
ତୁନି ମୁନିଆ କରଇ କାର୍ଯ୍ୟ ।

(୪୬) ନ ବୁଝିଲେ ନବାତ ପଣା,
ବୁଝିଲେ ତର ପଖାଟି କଣା ।

(୪୭) ଗଞ୍ଜାର ହାଡି, ବୁଲାନ୍ତି ବାଡ଼ି ।
ଚଢ଼ନ୍ତି ଗଧ, ପିଅନ୍ତି ମଦ ।
ବୁଣନ୍ତି କୁଲା,
ପଚାରିଲେ କହନ୍ତି, ବାମ୍ଭଣ ପିଲା ।

(୪୮) ବାହାରେ ସାରୁ ଭିତରେ ମାରୁ ।

(୪୯) ଦିଆକୁ ଦିଆ, ଅଦିଆକୁ ଦୁଆର ଦିଆ ।

(୫୦) ଝିଅ ବେଧେଇ ମାଇପ ଚଣ୍ଡ,
ପୁଅ ଅପାଣ୍ଡକୁ ବାପର ଦଣ୍ଡ ।

(୫୧) ଆଗତ କୁହା ପରଗାଇ ଦୁଆଁ ।

(୫୨) ଉଇପି ସୁଇପି, ବାଇତଙ୍କ ବିନ୍ଧୁଆତି ।

(୫୩) କମା ବାମ୍ଭଣି ଲୋ, କମା ବାମ୍ଭଣି, ରାନ୍ଧି ଖାଇବୁ କାହିଁ?
କୁମ୍ଭାର ପୁଅ ହାଣ୍ଡି ଗଢ଼ିଛି, ଛେପ ଲଗାଇ ।

(୫୪) ଖେଣ୍ଡେଇକି ଦବ ବଡ଼ ଭାଗ,
ନହେଲେ ଖେଣ୍ଡେଇ କହିଦବ ।

(୫୫) କୋଶେ ଗଲେ ପୋଶେ ମିଳିବ ।
ଖଣ୍ଡିଆ ଦାନ୍ତି ମୁଗ ପଇତି ଚାଉଳ ସେରକ ଉଆ ।

(୫୬) ପିଲାର ଅଜା, ଖନ୍ଦାଶାଳେ ବସି ବାଣ୍ଟିବ ଖଜା ।
ପିଲାର ଆଇ, ଅନ୍ତୁଡି ଶାଳରେ କାଟିଲା ଲାହି ।
ପିଲାର ମାମୁଁ, ବେଦିକି ଯିବ ଦୁମୁ ଦୁମୁ ।
ପିଲାର ମାଇଁ, ବଡ଼ ଭିଖ ରାନ୍ଧିବ ଧାଇଁ ଦାଇଁ ।
ପିଲାର ମାଉସୀ, ତେଲ ହଳଦିରେ ଥିଲା ଆଉଁସି ।
ପିଲାର ପିଇସୀ, ସାତ ପିଲା ଧରି ଖାଇବ ବସି ।

## ପିଲାର ଦାନ୍ତ ଉଠାରୁ ଶୁଭାଶୁଭ ନିର୍ଣ୍ଣୟ :

ଦାନ୍ତ ଥାଇ ଜନ୍ମ ହେଲେ- ମା'ର ଅଳ୍ପ ଦିନେ ମୃତ୍ୟୁ ଘଟେ ।
ପ୍ରଥମ ମାସରେ ଦାନ୍ତ ଉଠିଲେ- ବାପାର ଆୟୁଷ ହାନୀ ଘଟେ ।
ଦ୍ୱିତୀୟ ମାସରେ ଦାନ୍ତ ଉଠିଲେ- ମା'ର ପ୍ରାଣରେ ସଂଶୟ ଜାତ ହୁଏ ।
ତୃତୀୟ ମାସରେ ଦାନ୍ତ ଉଠିଲେ- ଭାଇ-ଭଉଣୀର ଆୟୁ ନାଶ ହୁଏ ।
ଚତୁର୍ଥ ମାସରେ ଦାନ୍ତ ଉଠିଲେ- ଶୁଭଦାୟକ ହୁଏ ।
ପଞ୍ଚମ ମାସରେ ଦାନ୍ତ ଉଠିଲେ- ସୌଭାଗ୍ୟବାନ୍ ଓ ମିଷ୍ଟାନ୍ନ ଭୋଜୀ ହୁଏ ।
ଷଷ୍ଠ ମାସରେ ଦାନ୍ତ ଉଠିଲେ- ତୀକ୍ଷ୍ଣ ବୁଦ୍ଧିଯୁକ୍ତ ସୁପଣ୍ଡିତ ଓ ସୁଖୀ ହୁଏ ।
ସପ୍ତମ ମାସରେ ଦାନ୍ତ ଉଠିଲେ- ଗୁଣବାନ୍ ଓ ବଳବାନ୍ ହୁଏ ।
ଅଷ୍ଟମ ମାସରେ ଦାନ୍ତ ଉଠିଲେ- ଧନହାନୀ ଓ ଅସୁଖୀ କରାଏ ।
ନବମ ମାସରେ ଦାନ୍ତ ଉଠିଲେ- ବହୁ ପ୍ରତାପୀ ହୁଏ ।
ଦଶମ ମାସରେ ଦାନ୍ତ ଉଠିଲେ- ଅଳ୍ପାୟୁ ହୁଏ ।
ଏକାଦଶ ମାସରେ ଦାନ୍ତ ଉଠିଲେ- ଗୁଣବାନ୍ ଓ ସୁଖୀ ହୁଏ ।
ଦ୍ୱାଦଶ ମାସରେ ଦାନ୍ତ ଉଠିଲେ- ସର୍ବଶୁଭ ଲାଭ ହୁଏ ।
(ଶିବଙ୍କର ପାଦୋଦକ କୁଣ୍ଡରେ ପିଲାକୁ ସ୍ନାନ କରାଇଲେ ଅଶୁଭ ଦୂର ହୁଏ ।)

## ଦକ୍ଷିଣ ଓଡ଼ିଶାର ଦେଶିଆ ବୋଲି

(୧) ତେନ୍ତୁଳି ପତର ସରୁ, କେମନେ କଲେ ଦାରୁ,
ଘରଇ ଘରଣି ହର୍କାର କଲେ, ତର ରାନ୍ଧିଦିଆ ସରୁ ।

(୨) ଆମେ ପିଲା- ରାଶି ଏକ ହେଲୁ,
ମୁଦି ମାଗ୍ତା ବଲି ଯୁ' ବଇଲୁ ।
ଇଠି ଠିଆ ସିଠି ଠିଆ,
ତମର ହାତରେ ରତନ ମୁଦି, ହସାଇ ଖେଲାଇ ଦିଆ ।

(୩) ଅଦା ମୁଣ୍ଡି ମୁଣ୍ଡି ରସନ ମୁଣ୍ଡି,
ନବରଙ୍ଗପୁର କଳାହାଣ୍ଡି,
ଆଇଲେ ଆ'ତୁ ପଇସା ମୁଣ୍ଡି,
ମୁଁ ଦେଖାଇବି ରୁପିଆ କଣ୍ଡି ।

(୪) ସରଗି ପତରେ କିର୍ଲି ଖଲି, କାମତା ବଜାର ଗଲି,
ତେଣୁ ଆଣିଲି ମୁଗୁନି କଦଲି, ଧରାଇ ଧରାଇ ଥାକିଗଲି ।

(୫) ଶ୍ରିଖ ପରବତେ ନନି ଗଟେ ଅଛି,
ହସିଲେ କି ଲାଭ ଅଛି ।

(୬) ରଙ୍ଗ କୁମୁଡା ଭିତରେ ରଙ୍ଗ,
ସତେକି ଗୁଲାବି ହୋଇବ ସାଙ୍ଗ ।

(୭) ମଲ୍ଲିଫୁଲ ବନା-ବନା
ସେବତି ଫୁଲ ବଡ଼ ବାସନା, ଚାଖିଲେ ଜାଣିବ ସିନା ।

(୮) ମାଙ୍କଡ଼ ଖାଇଲା କାକୁଡି କସି
ଡେଗ ପକନାରେ ବସି
କାଣା ଛୋଟା କଲି ନ ଛାଡିଯା' ନନି
ଖାଇବିସ ହୁଲାର ମାଟି ।

(୯) ଗାଇକେ ଗଉଡ଼, ଛେଳିକେ ଛେଳିଆ, କଉଁ ବନେ ନେଲା ରାଶି,
ଗାଇ ବାଚି ହଜିଗଲେ, ଭାଣ୍ଡି ପେଜ ଦେଇସି ବାସି ।

(୧୦) ବଉଁସ ମାରିଲୁ ଝୁଲି କି ଝୁଲି, କୁଞ୍ଜବନେ ବୁଲି ବୁଲି
ସଙ୍ଗର ଲୋକ୍ ବଲି ଗଡ଼ାଇ ହେଲି, ଅଧିକ ଯାଉଛୁ ଫୁଲି ।

(୧୧) କାଳିଆ ବଇଦ ଲାଲା କୁଆଇ, କଥାବାର୍ତ୍ତାକେ ବଡ଼ ସୁଆଇ
ଦେବା କାଜେ ବଡ଼ ଲୋଭ ।
ଥୁକା ପକାଇବା ଗୁଣ୍ଡା ଧୁଙ୍ଗିଆକେ, ଦେବାକେ ଲାଗ୍‌ସି ଲୋଭ ।

(୧୨) ନିତି କାନ୍ଦା କାଟା ନିତି ମାଛମାରା, ପଡିଲ୍ ଦୁଖର ଘରେ,
ନଯିବା ଜୀବନକେ ବଛେ ବାନ୍ଦିନେବାର,ଯମର ସିଂହ ଦୁଆରେ ।

(୧୩) ଗଦାବରୀ ପାନି ଦେହକୁ ବଥା, ଗୁମାନେ ନ କର କଥା ।
ସମୁଦର ପାନି ଛେନା ସାକର, ଆତ୍‌ମା ଶିତଲ୍ ଖର ।

(୧୪) ଆମେ ଆସିଅଛୁ ପରବାସିଆ କାଠପତ୍ର ଧରି ବଡ଼େ ଭାତିଆ
ଜାଗା ଖଣ୍ଡେ ପରା ଦିଆ ।
ସେମିଲି ଗଛକେ ପୁତ୍‌ଲା ବଇଲେ
କନେଇ ବଲ୍ ସି ବୁଥା ।

(୧୫) ଅସନା ଗୁଆଲି ବଡ଼ ବାସଲି,
ଗଉଲ୍ ମାପିବା ସୋଲି,
ତେଲ ମାରିକିରି ଚାଲାକି ସିଖବାସ୍,
ଦଣ୍ଡେ ଗଲେ କେନେ ବୁଲି ।

(୧୬) ମାଛ ମାଉସକୁ ବଳିଲା ମନ
ମୁଇଁ ରାନ୍ଧିଦେବି ଜୀବରତନ
ଚୂଲି ନିଆ ଜାଲିନ୍,
ମରିବା କାଲରେ ମୁଠେ ଭାତ ଦେବ
ମୁଇ ସିନା ଜୀବର ଧନ ।

(୧୭) ଆଚ୍ଛାକଲୁ ଧନ ଭଲ କଲୁ
ଲୋକର ପୁରୁଷକୁ ଡାକି ଆନ୍‌ଲୁ
ମୋତେ କରିଦେଲୁ ଦୂର୍,
କନ୍‌ତିର ତୁଇ ଭରସା ପାଇ
ମୋତେ କରିଲୁସ ଦୂର ।

(୧୮) ଆଅ ନିନା ଧନ ଆପଣା ଧନ
ବନେ ପଶି ମୁଇ କଲି ନାସନ
ପାଞ୍ଚ ରାତି ଛଅ ଦିନ,
ଖରା ସୁଖୁଛି ପରେ ପରେ
ସପଖା ଝୁରୁଛି ମନ ।

(୧୯) ତୁଇ ଗଲେ ମର ଅଣ୍‌ଟି ରତନ
ମାଲପୁରି କଥା ରଖୁଛି ଧନ
ତୁ ପଞ୍ଜୁରି ମଧ୍ୟରେ ଶାରୀ,
(ତୁ) ଘଡ଼ିକେ ମ'ପାଖେ ଅନ୍ତର ହେଲେ
ନିତି ଦେବି ପାନହାରି ।

(୨୦) ରାଜଡ଼ା ଚୁର୍ଚୁଣ୍ଡା ପାକେ ଅଛେ ଅମ୍ବାଦଲା,
କାଇ ନିମାନ କରି ଚୁମ୍ବନ ଦେବି
ଥମ୍‌ନା ମୁହଁ ନା ବୁଲା ।

(୨୧) କଅଁଳି ବଉଁସ ଢାପି ଝୁଲ୍‌ନା, ଛିଡ଼ାଇଲ ଯେବେ ନଖେ,
ଦଣ୍ଡଗଲା କସ୍‌ଟି ଗଲା, ଏବେ ମିଳାଇଲି ତୋକେ ।

(୨୨) ବାଟର ପନସ କାଉ କଲା ନାଶ
ଘରେ ଗଲା ପୀତବାସ,
ଏଡ଼ିକି ଧରମ କରବାସ୍ ଥାଲେ
ମୁଣ୍ଡେ ଦୁଧ ରଖେଇବାସ୍ ।

(୨୩) ବାଟ ଛାଡ଼ିଦିଅ ଝପନା ଯିବି
ସିରିମା ପେଣ୍ଡାଲ ଦେଖି ଆଇବି
(ଚନ୍ଦ୍ରମା ସୁରୁଜ ମୁଖେ)
ଆଠଦିନ ହେଲା ବନ୍ଧୁର ମୁଖ ନାଇଁ
ମରିଗଲି କାନ୍ଦ କାନ୍ଦେ ।

## ଦକ୍ଷିଣ ଓଡ଼ିଶାର ରେଲୀ ଭାଷାର ଗୀତ

''ବାଗବଲଦ ମୁଇଁ ବାନ୍ଧୁଲି ହଲେ
ଡାସକଲି ମଇଁଦର ମାଲେସି ରାଇଲେ ଯେ
ଡାସକଲି ମଇଁଦର ମାଲେ । (ଘୋଷା)

ମଇଁଦରମାଲେ ମୋର କି କି କି ପାଚ
ହିରାଦେଇ ମାନିକର ପାଚ ସେ ରାଇଲ ଯେ
ହିରାଦେଇ ମାନିକର ପାଚ,
କାଳି ଗାଇ କାଳି ଗାଇ ମୋରେ କାର ଗାଇ
ହିରାଦେଇ ମାନିକାର ପାଚନ୍ତି ରଇଲ ଯେ
ହିରାଦେଇ ମାନିକାର ପାଚ,
ଖାଇଗଲ ରନେ ବନେ ସୁଆ ମା ତମର ଯେ
ଖାଇଗଲେ ରନେ ବନେ ସୁଆ
ଏ ପାଚ ବାଉଡ଼ାଇ ଦିଆଡ଼ି ରାଇଲ ଯେ
ଏ ପାଚ ବାଉଡାଇ ଦିଆ.
ଏ ଗଡ଼ ଗଦିରେ ବସତି ରାଇଲ ମା

ଏ ଜଲି ହାତି ଦୁଆରେ ବସତି ରାଇଲ ମା
ସୁଣ୍ଡିନାନୀ ସୁଣ୍ଡିନାନୀ ମୋର ସୁନାର ନାନୀ
ଅଡକେ ମଦରେ ପାଞ୍ଚମାନ ପାନି
ଧାଇଁତିଲେ ପିଣ୍ଡାରେ ବସୁଗ ସୁଣ୍ଡିନାନୀ
ଗଡଧୁଇ ଗଦିରେ ସେ ପସୁମା ରାଇଲ ଯେ
ଗଡ଼ଧୁଇ ଗଦିରେ ରେ ସେ ପସୁ ।''

## ଗୀତର ଅର୍ଥ

ରେଲୀମାନେ ମହେନ୍ଦ୍ର ପର୍ବତର ମାଳ ଅଞ୍ଚଳଗୁଡ଼ିକରେ ଚାଷ କରି ସେଠାର ଆଦିବାସୀମାନଙ୍କ ସହ ମିଶି ଶସ୍ୟ ଓ ଫଳମୂଳ ଉତ୍ପାଦନ କରୁଥିଲେ । ସେହି ଘଞ୍ଚ ଜଙ୍ଗଲରେ ବାଘ ସହ ବଳଦକୁ ମିଶାଇ ଚାଷ କରିବା ଅର୍ଥ ବିପଦପୂର୍ଣ୍ଣ ସ୍ଥାନରେ ମଧ୍ୟ ଦେବୀ (ରାଇଲ)ଙ୍କ କୃପାରୁ ସେମାନେ ହିରା ମାଣିକ ପରି ଅତି ମୂଲ୍ୟବାନ ଫଳମୂଳ ଉତ୍ପାଦନ କରିବାକୁ ସମର୍ଥ ହେଉଥିଲେ । ସେଠାରେ କାଳିଗାଈ ପୋଷିଥିଲେ ମଧ୍ୟ ଦେବୀଙ୍କ କରୁଣାରୁ ବାଘ ତାକୁ ଖାଏ ନାହିଁ । ତେଣୁ ସେମାନେ ପ୍ରାର୍ଥନା କରି ଦେବୀଙ୍କୁ କହନ୍ତି- ଅରଣ୍ୟରେ ଯେଉଁ ଫଳ ହୁଏ, ତାହା ଶୁଆ ପରି ପକ୍ଷୀମାନେ କେବଳ ଖାଇଯାଉଛନ୍ତି । କାରଣ ସେମାନେ ତମରି (ଦେବୀଙ୍କର) ନିଜର ପକ୍ଷୀ । ତଥାପି ସେହି ଫଳ ଓ ଶସ୍ୟ ସମ୍ପଦ ସୁରକ୍ଷିତ କରିବା ପାଇଁ ପକ୍ଷୀମାନଙ୍କୁ ଉଡ଼ାଇଦେଉଛୁ । ମା ରାଇଲା ତୁମ ପାଇଁ ଏ ଗଡ଼ରେ ଗୋଟିଏ ବଡ଼ ଗଦି (ଆସନ) ପଡ଼ିଛି । ସେଥିରେ ତୁମେ ବସ । ହାତୀ ଝୁଲିଲା ପରି ଝୁଲି ଝୁଲି ତୁମେ ସେ ଦ୍ୱାରଦେଇ ଭିତରେ ପଶ । ଆମେ ମଦଦେଇ ପୂଜାକରିବୁ ।

ହେ ଶୁଣ୍ଡିନାନୀ ତୁ ଯେଉଁ ମଦ ଦେଉଛୁ ସେଥିରେ ପାଣି ମିଶାଇ ଦେଉଛୁ, ଆଢ଼େ ମଦରେ ପାଞ୍ଚମାଣ ପାଣି ତୁ ମିଶାଉଛୁ । ପଇସା ପାଇଁ ତୁ ମୋ ପଛେ ପଛେ ଧାଉଁଛୁ ସିନା; କିନ୍ତୁ ଗୋଡ଼ ଧୋଇ ଦେବୀଙ୍କ ଗଦି ନିକଟକୁ ଆସ ।



**ପରବର୍ତ୍ତୀ ୨ୟ ଖଣ୍ଡରେ ଢ଼ଗ, ଢ଼ମାଳି ପ୍ରଭୃତି**

# ଶାରଳା ରତ୍ନଭଣ୍ଡାର ରସ ସାଗର
## (ପ୍ରଥମ ଖଣ୍ଡ)

❉ ଭାରତ ସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ପ୍ରଧାନମନ୍ତ୍ରୀ ପଣ୍ଡିତ ଚାଣକ୍ୟଙ୍କ ଦ୍ୱାରା ପ୍ରଣୀତ ଅର୍ଥଶାସ୍ତ୍ରର ଜନକଲ୍ୟାଣକର ନିୟମାବଳୀ ଏବଂ ବିଭିନ୍ନ ସଂଶୟ ଓ ଜିଜ୍ଞାସାର ସମାଧାନ ସରଳ ଓ ସଂକ୍ଷିପ୍ତ ଭାବରେ ସନ୍ନିବେଶିତ।

❉ ପ୍ରାଚୀନ ଓଡ଼ିଶାର ପାରମ୍ପରିକ ରୀତି-ନୀତି ଓ ବିଧିବିଧାନରୁ ଉଦ୍ଭୂତ ଏବଂ ଯୁଗ ଯୁଗ ଧରି ଲୋକମୁଖରେ ପ୍ରଚଳିତ ଲୁପ୍ତପ୍ରାୟ ଦଣ୍ଡାର ବଚନ, ନାଥ ବଚନ, କୁଂଜବନ ବଚନ, ଡାକରଷି ବଚନ, ଖନା ବଚନ, କୃଷି ବଚନ ଇତ୍ୟାଦି ରସାଳ ବଚନମାଳା ସର୍ବଜନବୋଧ୍ୟ ଭାଷା ଓ ଶୈଳୀରେ ସଂଯୋଜିତ।

❉ ଲୋକପ୍ରିୟ ସଂସ୍କୃତ ପ୍ରବଚନଗୁଡ଼ିକ ସରଳ ଓଡ଼ିଆ ଭାଷାରେ ପରିବେଷିତ।

❉ ମୟୂରଭଞ୍ଜର ପ୍ରାଚୀନ ଜାତୀୟ ସଂଗୀତ ମନମୁଗ୍ଧକର ଝୁମର ଗୀତ, ପଶ୍ଚିମ ଓଡ଼ିଶା ବୋଲି ଓ ରସସିକ୍ତ ଲୋକଗୀତ, ଦକ୍ଷିଣ ଓଡ଼ିଶା ବୋଲି ଓ ଲୋକଗୀତରେ ଅନୁରଂଜିତ।

❉ ଜ୍ୟୋତିଷୀ ଗଣନା ସଂପର୍କିତ ପ୍ରବାଦ ଓ ବିଭିନ୍ନ ପ୍ରାଚୀନ ପ୍ରବାଦରେ ପରିପୁଷ୍ଟ।

ସଙ୍କଳୟିତା
ବିନୋଦ ବିହାରୀ ଦାସ